# ଗଳ୍ପ ମାନସ



ସଂପାଦନା ...

ରବିନାରାୟଣ ବରାଳ

# ଗଳ୍ପମାନସ

[ କ୍ଷୁଦ୍ରଗଳ୍ପ ସଂକଳନ ]

ସଂକଳନ ଓ ସମ୍ପାଦନା

ଅଧ୍ୟାପକ ରବିନାରାୟଣ ବରାଳ
ରେଭେନ୍ସା ମହାବିଦ୍ୟାଳୟ,
କଟକ

କିତାବ ମହଲ
କଲେଜସ୍କୋୟାର,
କଟକ-୩

# ଗଳ୍ପମାନସ
(କ୍ଷୁଦ୍ରଗଳ୍ପ ସଂକଳନ)

ପ୍ରଥମ ପ୍ରକାଶ :

ଶ୍ରାବଣ ପୂର୍ଣ୍ଣିମା,
୧୯୭୭

ପ୍ରକାଶକ :

କିତାବ ମହଲ
କଲେଜସ୍କୋୟାର, କଟକ-୩

ମୁଦ୍ରଣ

ଚିନ୍ମୟୀ ପ୍ରିଣ୍ଟର୍ସ
କଲେଜସ୍କୋୟାର, କଟକ-୩

ମୂଲ୍ୟ—ଛଅଟଙ୍କା ପଚାଶ ପଇସା ମାତ୍ର

# ସୂଚୀ



* * *

# ଭୂମିକା

ମଣିଷର କଥା କହିବାର ପ୍ରବୃତ୍ତି, ଆପଣାକୁ ଅପର ନିକଟରେ ଉପସ୍ଥାପନ କରିବାର ପ୍ରୟାସ, ଆଖି, କାନ, ମନକୁ ରସସିକ୍ତ କରିବାର ସାଧନା ଏବଂ ଜୀବନର ବ୍ୟାପକତାକୁ ନାନା ବାଟରେ ମାପି ଲୋଭନୀୟ କେତୋଟି ଗାର ଟାଣିବାର ଆଗ୍ରହ ଭିତରୁ ସାହିତ୍ୟ-ଶିଳ୍ପର ସୃଷ୍ଟି । କ୍ରମିକସାଧନାରେ ଆରଣ୍ୟକ ନଗ୍ନ ମଣିଷ ବିଜ୍ଞାନସମ୍ମତ ଚନ୍ଦ୍ରଜୟୀ ମଣିଷରେ ଆଜି ପରିଣତ ହେଲା ପରି ସାହିତ୍ୟକ୍ଷେତ୍ରରେ ମଣିଷ ଆପଣାର ସଫଳତାର ବିଭିନ୍ନ ମୁଦ୍ରାଙ୍କ ଥୋଇ ନିଜକୁ କାଳଜୟୀ କରାଇଛି କି ନାହିଁ କେଜାଣି, ଚିତ୍ତଜୟୀ କରାଇଛି । 'ଗଳ୍ପ' ଏହି ସାହିତ୍ୟର ଗୋଟିଏ ସ୍ୱତନ୍ତ୍ର, ସ୍ୱୟଂସମ୍ପୂର୍ଣ୍ଣ କ୍ଷୁଦ୍ର ଅଥଚ ଲଳିତ ବିଭାଗ । 'ଗାଳ୍ପ କଥା' ଏହାର ପ୍ରରୋଚନା ହୋଇପାରେ, କଳ୍ପନା 'ଆଧାର' ହୋଇପାରେ, 'ସଂକ୍ଷିପ୍ତତା' ବିଭବ ହୋଇପାରେ; ମାତ୍ର ପୂର୍ଣ୍ଣତା ଏହାର ପ୍ରାଣ । ଅତି ସାମାନ୍ୟ, ତୁଚ୍ଛ କଥାଟାଏ ଗଳ୍ପକାରଙ୍କର ବର୍ଣ୍ଣନାବିନ୍ୟାସରେ ସ୍ୱାଦ୍ୟ ଏକ ମହାର୍ଘ ସଂପଦରେ ପରିଣତ ହୁଏ । ଏଇଥିଲାଗି ବୋଧହୁଏ, ଆଖି ଆଗରେ ବାରମ୍ବାର ପଡ଼ୁଥିବା 'ବାସ୍ତବ' ମନକୁ ଯେତିକି ପରିମାଣରେ ଛୁଇଁପାରେ ନାହିଁ, ସେତିକି ଗଳ୍ପର ଭାବରେ ଛୁଏଁ, କଳ୍ପନାର ରଙ୍ଗରେ ଝଲମଲ ହେଉଥିବା ଚିତ୍ରଟିଏ—କାହାଣୀଟିଏ । ଗଳ୍ପର ସମାପ୍ତିରେ ଗଳ୍ପ ଯେମିତି ସରେ ନାହିଁ—ମନେହୁଏ, ଆହୁରି କିଛି ରହିଗଲା ବୋଲି । ଗଳ୍ପ ବୋଧହୁଏ କୌଣସି ଗୋଟିଏ ଆବେଗ, ଘଟଣା ବା ତାର ଖଣ୍ଡିତାଂଶର ଉପସ୍ଥାପନାରେ ଗାଳ୍ପିକର ରଙ୍ଗରଞ୍ଜିତ ଶୈଳ୍ପିକ ଅଭିବ୍ୟକ୍ତି । ଗଳ୍ପର ପ୍ରାଣ କାହାଣୀ—ମାତ୍ର ଖାଲି କାହାଣୀ ଯେମିତି ଗଳ୍ପ ନୁହେଁ । ଆଜି ତ ନୁହେଁ, ପୁରାଣ ଯୁଗରେ, ଅଥବା ତା'ର ଆହୁରି ଅନେକ ପୂର୍ବରୁ ଗଳ୍ପର ଏଇ ବୀଜଟି ବଞ୍ଚିତ ହୋଇଛି—ନାନା ଦେଶର ନାନା ଅଭିବ୍ୟକ୍ତି ଭିତରେ ଏହା ରୂପଲାଭ କରି ମାନବ ପ୍ରାଣକୁ ଛୁଇଁ ଛୁଇଁ ରସସିକ୍ତ କରିଛି ବୋଲି ଆଜି ଅନୁକୂଳ-ପ୍ରତିକୂଳତା ଭିତରେ ଏହା ହଜି ନ ଯାଇ ନାନା ରୂପରେ ଉପସ୍ଥାପିତ ହେଉଛି । ପରିସ୍ଥିତି ଓ ପରିବେଶର ବାହକ ଗଳ୍ପ ବୃଦ୍ଧୀମାର ମୁହାଁରେ ଘୁମନ୍ତ ଶିଶୁମାନଙ୍କୁ ମାଦକତା ଦେବା ଉଦ୍ଦେଶ୍ୟରେ ଉପସ୍ଥାପିତ ହେଉଥିଲା ବେଳେ ହୁଏତ କାହାଣୀ—କିଛିଟା ଅତିରଞ୍ଜନର ଅଭିବ୍ୟକ୍ତି—ପୁଣି ପୁରାଣର ପୃଷ୍ଠାରେ ସମାଜକୁ ସଚେତନ କରୁଥିଲାବେଳେ ନୀତିଧର୍ମୀ-ଉପଦେଶାତ୍ମକ—ଆଉ ଆଜି ଜୀବନର ଅଜସ୍ର ବାଦବିସମ୍ବାଦ ବିପର୍ଯ୍ୟସ୍ତ ମନୁଷ୍ୟର ବୁଦ୍ଧିଦୀପ୍ତ ଚେତନାକୁ ସ୍ପର୍ଶ କରିବା ପାଇଁ କେତେବେଳେ ଯୌନ ଧର୍ମୀ, ମନୋବୈଜ୍ଞାନିକ, ରାଜନୀତିକ, ମାନବତାବାଦୀ—ଆହୁରି କେତେ କ'ଣ । ଚଳିତ କାଳର ଆଞ୍ଚଳିକ ଗଳ୍ପ, ମିନିଗଳ୍ପ, ଉଦ୍ଭଟଗଳ୍ପ, ସାଙ୍କେତିକ ଗଳ୍ପ ଇତ୍ୟାଦି ଅନୁଶୀଳନ କଲାବେଳେ ବୋଧହୁଏ ଏତିକି ସ୍ପଷ୍ଟ ଉପଲବ୍ଧି ହୁଏ ଯେ, ଜୀବନର ପ୍ରତ୍ୟକ୍ଷୀଭୂତ ଅନୁଭୂତିର ଉପସ୍ଥାପନରେ, ନୂତନତାର ସଂସ୍ଥାପନର ପ୍ରଚେଷ୍ଟାରେ,

ବିଶେଷତଃ ବ୍ୟକ୍ତିଜୀବନର ଆଶା-ନିରାଶାର ସଂଘାତଜର୍ଜର ଚିତ୍ରଟିକୁ ଚିତ୍ରଣ କଲାବେଳେ ଗାଳ୍ପିକ ଯେପରି ଅକୁଣ୍ଠ ପ୍ରୟାସ ଅନୁଭବ କରେ । ଚଳିତ କାଳର ଗଳ୍ପ ବହୁବର୍ଣ୍ଣୀ—ଚିତ୍ର ବିଚିତ୍ର, ପ୍ରକାଶ-ସ୍ପୃଷ୍ଟ । ପର୍ବତସୃଷ୍ଟା ପାର୍ବତୀ ନାନା ଅବବାହିକାର ମଧ୍ୟ ଦେଇ ଗଡ଼ିକରି ନାନାସ୍ଥାନରୁ ଆନୀତ ଜଳରେ ପୁଷ୍ଟ ହୋଇ ନିମ୍ନତଳରେ ଗଡ଼ିକରୁଥିଲାବେଳେ ଗୋଟାଏ ଧାରାରେ ନ ଅଟକି ନାନା ଭାବରେ ବିଖଣ୍ଡିତ ହୋଇ ଧାଇଁଲାଭଳି ଜୀବନଯୁଦ୍ଧରେ କ୍ଷତବିକ୍ଷତ, କ୍ଳାନ୍ତ ଓ ବିଫଳତାରେ ବିପର୍ଯ୍ୟସ୍ତ, ବେଦନା ଓ ଆଘାତବୋଧରେ ନିରୁକ୍ତ ମାନବର ଅନ୍ତର୍ବେଦନାର ରୂପାୟନ କରିବା ପାଇଁ ଗାଳ୍ପିକ ଯେପରି ସଚେତନ ହୋଇଉଠିଥିଲା, ସେହିପରି ପ୍ରଣୟମଧୁର ସ୍ୱାଦ, ସାଧାରଣ ପାରିବାରିକ ହର୍ଷ-ବିଷାଦ, ସ୍ୱାଭାବିକ ଜୀବନଧାରାର ବୈଚିତ୍ର୍ୟ ଅଙ୍କନ କରିବା ପାଇଁ କୁଣ୍ଠାନୁଭବ କରିନାହିଁ । କାନ୍ତକବି, ଲକ୍ଷ୍ମୀକାନ୍ତ, ବାଞ୍ଛାନିଧି, ଦିବ୍ୟସିଂହ ଗୋଦାବରୀଶ ମହାପାତ୍ର, ନିତ୍ୟାନନ୍ଦ, ରାଜକିଶୋର ପଟ୍ଟନାୟକ ଓ ରାୟ, କାହ୍ନୁଚରଣ, ସଚ୍ଚି ରାଉତରାୟ, ଗୋପୀନାଥ, ଅନନ୍ତ ପ୍ରସାଦ, ମନୋଜ ଦାସ ଓ ଅଚ୍ୟୁତାନନ୍ଦ ଆଦି ବହୁ ପ୍ରତିଷ୍ଠିତ ଲେଖକ, ଆପଣା ଆପଣାର ଅମ୍ଳାନ ସାଧନାରେ, ସ୍ୱକୀୟ ଉନ୍ନତ ଚିନ୍ତାଧାରାରେ ନାନା ବିଚିତ୍ର ରସପୂର ବର୍ଣ୍ଣନା ମାଧ୍ୟମରେ ଏହାର ପରିବେଷଣ କରିଯାଇଛନ୍ତି । ଦ୍ୱିତୀୟ ମହାଯୁଦ୍ଧୋତ୍ତର ଜୀବନଧାରା ମନୁଷ୍ୟର ରୁଚିବୋଧକୁ ଯେପରି ସମୟ ବିଶେଷରେ ମାର୍ଜିତ କରି ଥୋଇଛି, ସେହିପରି କ୍ଷେତ୍ରବିଶେଷରେ ଚରମ ଅସଂଯମ ଭିତରକୁ ଟାଣି ନେଇଛି । ହୁଏତ ଜୀବନଯୁଦ୍ଧର ତଥାକଥିତ ଭୟାବହତା ସନ୍ଧାନ୍ତରେ ବିଶେଷ ସଚେତ ହୋଇ ପଡ଼ିନଥିବା ମଣିଷ ଆବଶ୍ୟକତା ସ୍ଥଳରେ ଈଶ୍ୱର ବିଶ୍ୱାସ ଉପରେ ପ୍ରତୀତି ସ୍ଥାପନ କରି ନିଜକୁ ତାହାଙ୍କ ନିକଟରେ ସମର୍ପଣ କରି ନିଜ ସୁଖ-ଦୁଃଖର ବିସ୍ମରଣ କରୁଥିଲା । ମାତ୍ର ଆଜିକାର ବିପର୍ଯ୍ୟୟପରର ସମାଜରେ କ୍ରମଶଃ ମାନବବାଦ ଅଧିକରୁ ଅଧିକ ପ୍ରତିଷ୍ଠିତ ହେବାକୁ ଯାଉଛି । ମଣିଷର ଚେତନା ଆଜି ସଂପ୍ରସାରିତ, ବୁଦ୍ଧିଦୀପ୍ତ, ଜୀବନ କ୍ଷତବିକ୍ଷତ, ଏଣୁ ତା'ର ଜୀବନରେ ଆଲୋଡ଼ନ ଅପରିହାର୍ଯ୍ୟ । ଏକ ଏକ ଲେଖକଙ୍କର କୌଣସି କୌଣସି ସ୍ୱତନ୍ତ୍ର ଗଳ୍ପର ଅବତାରଣା ନ କରି ପ୍ରସଙ୍ଗତଃ କୁହାଯାଇପାରେ ଯେ ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳର ଗଳ୍ପ ଗୁଡ଼ିକର ନବୀନତା, ଆବେଗମଣ୍ଡିତା, ଜୀବନ ଧର୍ମର ବିଶ୍ଳେଷଣବୋଧ ଏବଂ ଜୀବନସ୍ୱାଦ ଚିତ୍ରିତ ପ୍ରେମର ବିଚିତ୍ର ଭାବରେ ରୂପଲାଭ କରିଛି । ପୁଣି କେତେକ ବିଶିଷ୍ଟ ଲେଖକ ଜୀବନର ଧର୍ମ ଉପସ୍ଥାପନ କରିବାକୁଯାଇ ତୁଚ୍ଛାଦପିତୁଚ୍ଛ ବସ୍ତୁ ବା ଘଟଣା ବିଶେଷକୁ ନେଇ ଏକ ସ୍ୱତନ୍ତ୍ର ମାର୍ମିକ ଅଭିବ୍ୟକ୍ତି ମାଧ୍ୟମରେ ଯେପରି ପ୍ରତିପାଦନ କରିଛନ୍ତି ସେ କାହାଣୀ ରଧାଳି ଅଭିବ୍ୟକ୍ତ ନୁହେଁ, ଘଟଣା ବା ଅବସ୍ଥା ବିଶେଷର ଚମତ୍କାର ପରିବେଷଣ ହିଁ ଗଳ୍ପକଳା ।

ଗତିଶୀଳ ଜୀବନର ସଙ୍କେତ ବହନ କରିଥିବା ସାହିତ୍ୟ ପ୍ରତ୍ୟେକ ମୁହୂର୍ତ୍ତରେ ନୂତନତର ଜୀବନାଦର୍ଶ ଓ ବିଶ୍ଳେଷଣ ବିଭବର ସ୍ୱାତନ୍ତ୍ର୍ୟ ପରିବେଷଣ କରୁଥିଲେ ହେଁ କୌଣସି ନିର୍ଦ୍ଦିଷ୍ଟ ସମୟ ବିଶେଷରେ ସଂଜ୍ଞା ବିଶେଷର ସତ୍ୟ ହୋଇ ରହିପାରେ ନାହିଁ । ଏଇ ଚଳନ୍ତି

ବର୍ତ୍ତମାନରେ ଆମେ ଯାହାକୁ ଗଳ୍ପ ରଚନାର ସଂଜ୍ଞା, ସ୍ୱରୂପ ବୋଲି ନିର୍ଣ୍ଣୟ କରିବାପାଇଁ ଯାଉଛୁ, ଆସନ୍ତାକାଲି ସମ୍ଭବତଃ ତାହା ଅପାଂକ୍ତେୟ ହୋଇ ସାରିଥିବ ଏବଂ ସାହିତ୍ୟସାଧକମାନେ ଅନ୍ୟ କେଉଁ ଏଯାବତ୍ ଅପରିଦୃଷ୍ଟବାଦର ଅନ୍ଧାନୁଧାବନ ଅଥବା ଯଥୋଚିତାନୁଧାବନ କରୁଥିବେ । କ୍ଷୁଦ୍ରଗଳ୍ପର ବିବର୍ତ୍ତିତ ଧାରାର ରୂପାନ୍ତର ଏକ ସ୍ୱୀକାର୍ଯ୍ୟ ସତ୍ୟ । ନିହାତି ଆଧୁନିକ କାଳରେ ଗଳ୍ପଟିଏ ଲେଖିବା ପାଇଁ ଯେପରି ହଟ୍‌ଚମକ ସୃଷ୍ଟି କରୁଥିବା କଥାବସ୍ତୁର ପ୍ରୟୋଜନୀୟତା ଅନୁଭୂତ ହେଉନାହିଁ । ସମଗ୍ର ବିଶ୍ୱର ଆଧୁନିକ ଗଳ୍ପ ସାହିତ୍ୟ ଉପରେ ଦୃକ୍‌ପାତ କଲେ ଜଣାଯାଏ ଯେ ଗଳ୍ପର ଗଳ୍ପହୀନତା ଯେପରି ମୂଳଧର୍ମ ହୋଇଉଠିଛି । ଦୀର୍ଘକାଳ ଫ୍ରଂୟେଡ଼ୀୟ ମତବାଦକୁ ଲୋକେ ଅବଧାରିତ ସତ୍ୟରୂପେ ଗ୍ରହଣ କରିଥିଲେ ମଧ୍ୟ ଆଜି ପାର୍ଲୋଭଙ୍କର ବଳିଷ୍ଠ ଯୁକ୍ତିଧାରା ତାହାକୁ ଖଣ୍ଡନ କରୁଛି । ହେଇ ଗତକାଲି ମନସ୍ତତ୍ତ୍ୱମୂଳକ ଲେଖା ବୋଲି କହିଲେ ଆଗ୍ରହୀ ଲୋକେ ଉତ୍କଣ୍ଠିତ ହୋଇ ପଢ଼ୁଥିଲେ—ଉଗ୍ରବାସ୍ତବବାଦ ଆଜି ବୋଧହୁଏ ମଣିଷକୁ ତା ଭିତରୁ ସୂକ୍ଷ୍ମ ମନଚିନ୍ତନକୁ ଅପସାରଣ କରିବାକୁ ଉନ୍ମୁଖ ହୋଇ ସାରିଲଣି । ଏଇ ମାତ୍ର ଆଜି ସକାଳର କଥା—ପ୍ରତୀକ ଧର୍ମ ବା Symbolism ଗଳ୍ପର ନିଶ୍ଚିତ ପ୍ରାଣଥିଲା । ମାତ୍ର କାହିଁ, ଏତେବେଳେ ତାର ଯେପରି ଅବସାନ ଘଟି ସାରିଲଣି । ଆଜିକାର ଗାଳ୍ପିକ ହୁଏତ ଗୋଟାଏ ମୁହୂର୍ତ୍ତର ଅସ୍ଥିର ଆଲୋଡ଼ନକୁ ହିଁ ରୂପାୟନ କରିବାକୁ ଯାଇ ଗଳ୍ପ ରଚନା କରୁଛି । ପ୍ରକାଶତଃ ଏ ଗଳ୍ପକୁ ଆଉ ଆଜି ବୁଢ଼ୀମାର କୋଳରେ ଶୋଇ କିମ୍ବା ବସ୍‌ଷ୍ଟାଣ୍ଡରେ ଗୃହା କପେ ପିଇ ପିଇ ପତ୍ର ଓଲଟାରେ ଅନୁଶୀଳନ କରି ହେଉନାହିଁ । ନିହାତି ତୁଚ୍ଛ ବୈଚିତ୍ର୍ୟହୀନ ଘଟଣାଟିଏ, ଏପରିକି ବସ୍ତୁଟିଏ ମଧ୍ୟ ଆଜି ଗଳ୍ପର ଆଧାର ହୋଇ ପ୍ରାଣବନ୍ତ ଗଳ୍ପ ରୂପରେ ପରିଗଣିତ ହେଉଛି । ଏହି ଯେ ବ୍ୟକ୍ତିକୈନ୍ଦ୍ରିକ ଗଳ୍ପରଚନା ଶୈଳୀ କିମ୍ବା ଆତ୍ମକୈନ୍ଦ୍ରିକ ଚିନ୍ତାଧାରା, ତାହା ଯେପରି ଭାବରେ ପରିଲକ୍ଷଣୀୟ ସେହିପରି ଭାବରେ ଏ ଯୁଗୀୟ ବିବାଦମାନ ଧର୍ମଧାରଣାର ସୂଚକ । ମୁକ୍ତୋତ୍ତର ଜୀବନ ଆଜି ସ୍ୱପ୍ନମଗ୍ନ ମଦମତ୍ତତା ନୁହେଁ । ଜୀବନଯୁଦ୍ଧ ନିୟୋଜିତ ମନୁଷ୍ୟ ଆଜି ପ୍ରତ୍ୟେକ ମୁହୂର୍ତ୍ତରେ ଆସନ୍ତାକାଲି ପାଇଁ ଆଶଙ୍କାକୁଳ ହୃଦୟରେ ଆଶାୟୀ । ଅସଂଖ୍ୟ ବାଦ (ism)ର ଆବର୍ତ୍ତନ ଭିତରେ ମନୁଷ୍ୟର ବ୍ୟକ୍ତିଚେତନା ମୁହୁର୍ମୁହୁ ପରିବର୍ତ୍ତନଶୀଳ ହେଲାବେଳେ ସାହିତ୍ୟ ନୁହେଁ, ସାହିତ୍ୟର ସୂଚକ ଜୀବନ ମଧ୍ୟ ଅସଂଖ୍ୟ ବାଦ-ବିସମ୍ବାଦରେ ବିପର୍ଯ୍ୟସ୍ତ—ଏଣୁ ଆଜିର ଗାଳ୍ପିକ ବୋଧହୁଏ ଏହି ପରିବେଶର ବାଣ୍ଡିବନ୍ଧ ହୋଇଥିବାରୁ ସମସ୍ୟା ବିଶେଷରେ କଥାବସ୍ତୁ ଚମତ୍କାରିତା ପ୍ରତି ଦୃକ୍‌ପାତ କରୁଥିଲେ ହେଁ ମୂଳତଃ କୌଣସି ଏକ ନିର୍ଦ୍ଦିଷ୍ଟ ସମସ୍ୟା, ଘଟଣା ଏପରିକି ଅତି ସାଧାରଣ ସଂକେତ ସଂକ୍ରାନ୍ତରେ ଅଧିକ ସଚେତ ।

ସମ୍ପ୍ରତି ଏ ବିଚିତ୍ର ପରିସର ଭିତରେ ଗଳ୍ପ ବାସ୍ତବିକ୍ ଏକାନ୍ତ ଭାବରେ ଲୋଭନୀୟ । ପୃଥିବୀର ପ୍ରତ୍ୟେକ ସାହିତ୍ୟ ଗଳ୍ପବିଭବରେ ଭାସ୍ୱର । ପ୍ରାଚୀନ କାଳଠାରୁ ଆଜିପର୍ଯ୍ୟନ୍ତ ସକଳ ଅବସ୍ଥାରେ ଗଳ୍ପର ସତ୍ତା ଲକ୍ଷ୍ୟ କରାଯାଇପାରେ । ସମ୍ଭବତଃ

କଳେବରରେ ସୀମିତତା ଦୃଷ୍ଟିରୁ ଗଳ୍ପ ଅଧିକସଂଖ୍ୟକ ପାଠକଙ୍କୁ ସ୍ୱଳ୍ପସମୟ ଭିତରେ ଆନନ୍ଦ ପରିବେଷଣ କରୁଥିବାରୁ ଏହା ଚଳନ୍ତି କାଳର ପରମଲୋଭନୀୟ ସଂପଦ ।

ବହୁ ଗଳ୍ପ, ଗଳ୍ପସଂକଳନ, ସାମୟିକ ଏକତ୍ର ପ୍ରକାଶନରେ ଋଦ୍ଧିମନ୍ତ ଓଡ଼ିଆ ସାହିତ୍ୟରେ ହୁଏତ ଏଇ ନବୀନତର ପ୍ରୟାସର ଉପସ୍ଥାପନା ପ୍ରୟୋଜନୀୟତା-ସମ୍ଭୂତ ନୁହେଁ । ତଥାପି କେତୋଟି ଗଳ୍ପର ପ୍ରାଣସ୍ପର୍ଶୀ ଚେତନା କେଉଁ ଦିନରୁ ଆଜିପର୍ଯ୍ୟନ୍ତ ପାଠକ ପ୍ରାଣରେ ଆବେଗ ସଂଜାତ କରୁଥିବାରୁ ଆଜି ପୁଣିଥରେ ସେ ସମସ୍ତଙ୍କୁ ଉପସ୍ଥାପନ କରିବାର ଲୋଭ ସମ୍ବରଣ କରି ହେଲାନାହିଁ । ବହୁ ବଶିଷ୍ଟ ଗାଳ୍ପିକଙ୍କର ସୃଷ୍ଟିସମ୍ଭାରରେ ଓଡ଼ିଆ ଗଳ୍ପବିଭାଗ ସମୃଦ୍ଧ ହେଲେ ବି ଏ ସଂକଳନଟିର କଳେବରର ସୀମିତତା ଦୃଷ୍ଟିରୁ ସମସ୍ତଙ୍କର ରଚନାକୁ ସ୍ଥାନ ଦେବା ହୁଏତ ସମ୍ଭବ ହୋଇ ପାରିନାହିଁ । ତେଣୁ ସମସ୍ତ 'ଗଳ୍ପ-ମାନସ' ଏଥିରେ ପରିସ୍ଫୁଟ ହୋଇ ପାରିନାହିଁ । ମାତ୍ର ସମାବିଷ୍ଟ ଗଳ୍ପଗୁଡ଼ିକର କଳାତ୍ମକ ମୂଲ୍ୟବୋଧରେ, ଉଜ୍ଜ୍ୱଳ ଅଭିବ୍ୟକ୍ତିରେ, ଜୀବନ-ଚିତ୍ର ଅଙ୍କନ କରିବାର ସ୍ୱତନ୍ତ୍ର ପ୍ରୟାସରେ ଏ ସଂକଳନଟି ଯେ ସମୃଦ୍ଧ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଯେଉଁ ଉଦାରହୃଦୟ ସ୍ରଷ୍ଟାମାନେ ସେମାନଙ୍କର ସୃଷ୍ଟିକୁ ଏହି ସଞ୍ଚୟନରେ ସମାବିଷ୍ଟ କରିବାପାଇଁ ସଦୟ ସ୍ୱୀକୃତି ପ୍ରଦାନ କରିଅଛନ୍ତି ଏବଂ ସ୍ୱର୍ଗତ ସ୍ରଷ୍ଟାମାନଙ୍କର ମହାନୁଭବ ସ୍ୱତ୍ତ୍ୱାଧିକାରୀମାନଙ୍କ ନିକଟରେ ଆମେ ଏହି ଅବକାଶରେ କୃତଜ୍ଞତା ଜ୍ଞାପନ କରୁଛୁ ।

**ଶ୍ରୀ ରବିନାରାୟଣ ବରାଳ**
ସଙ୍କଳକ

# ରାଣ୍ଡିପୁଅ ଅନନ୍ତା

—ଫକୀରମୋହନ ସେନାପତି

ସୁବଳ ମହାକୁଡ଼ ଓରେଫ ସୁବଳ ସିଂହର ବାପ ଅମଳରୁ ଗୋଟିଏ ମଇଁଷିପଲ ଥିଲା । ମହାକୁଡ଼ ହରଶପୁରର ବଣ ଭିତରେ ପଲରେ ସବୁବେଳେ ଥାଏ । ଘରକୁ ଆସେ ନାହିଁ । ଶୀତ, ବର୍ଷା, ଖରା ସବୁ ତା ପକ୍ଷରେ ସମାନ । ହେଲେ, ବର୍ଷାଦିନଟା ବଡ଼ ଆନନ୍ଦର ଦିନ । ଚରା ଢେର ମିଳେ, ମଇଁଷିଗୁଡ଼ାକ ବଡ଼ ଦୁଧିଆଳୀ ହୁଅନ୍ତି । ତାଳପତ୍ର ଟୋପରଟିଏ ମୁଣ୍ଡରେ ଦେଇ ଚଢେ ଉଞ୍ଚା ବାଉଁଶ ଠେଙ୍ଗାଟାଏ କାନ୍ଧରେ ପକାଇ ଦିନଯାକ ମଇଁଷିଙ୍କ ପଛେ ପଛେ ଧାଇଁଥାଏ । କାହିଁ ଆଣ୍ଠୁଏ, କାହିଁ ଅଣ୍ଟେ ପାଣି, ଦେହଯାକ କାଦୁଅ ଲଟପଟ, ଏଟା ତାର ଖୁବ ଆନନ୍ଦ । ମହାକୁଡ଼ର ଆଉ ଏ ଦିନେ ଘର ଦରକାର ନାହିଁ । ରନ୍ଧାବଢ଼ା ଲାଗି ବର୍ଷା ଦିନେ ଗୋଟିଏ ପଲ ଦରକାର । କେତେଟା ଡାଳ ପୋତି ତାହା ଉପରେ ବାଡ଼ା କେତେ ବେଣାଘାସ ପକାଇଦେଇ ଗୋଟିଏ ପଲ ତିଆରି କରେ । ପଲଟା ଜହାଢି ନୁଆଁଣ । ବସି ବସି ଭିତରକୁ ଯାଏ । ବସି ବସି ଭାତ ରାନ୍ଧେ । ଠିଆ ହେଲେ ପଲ ମୁଣ୍ଡରେ ବାଜିବ । ପଲ ଗୁହାଳପାଖ ବାଡ଼ ନାହିଁ; କାରଣ ରାତିରେ ପଲ ଭିତରେ ଶୋଇଥିଲେ ବାହାରୁ ଯଦି କେନ୍ଦୁଆ ଆସି ମଇଁଷିବାଛୁରୀ ଘେନିଯାଏ, ଜାଣିବ ନାହିଁ । ରାତିରେ ପଲ ଭିତରେ କେମନେ ଉଞ୍ଚା କଠୋଉ ଯୋଡ଼ାକ ମୁଣ୍ଡତଳେ ଦେଇ ଟୋପରଟାରେ ମୁହଁ ଢାଙ୍କି ଦିଏ । ମୁହଁଟାରେ ପାଣି ନ ପଡ଼ିଲେ ହେଲା । ତା' ଗୁହାଳପାଖେ ମଇଁଷିଛୁଆଗୁଡ଼ିଙ୍କୁ ଗୋଡ଼ରେ ଦଉଡ଼ି ଲଗାଇ ଝଟାଇ ଢକାଏ । ବର୍ଷା ହେଲେ ମଇଁଷିଛୁଆର ମଇଳା ଓ ମୂତ ଧୋଇ ଆସି ପଲ ଭିତରେ ଲହଡ଼ି ଖେଳୁଥାଏ । ମହାକୁଡ଼ ତାହାରି ଉପରେ ଚେଙ୍ଗ ମାଛ ପରି ଲଟପଟ ହେଉଥାଏ । ମଇଁଷିଗୁଡ଼ାକ ବସା ଗୁହାଳପାଖେ ବଣ ଆଡ଼କୁ ମୁହଁକରି ଶୋଇଥାନ୍ତି । ରାତି ତିନିପହରର ସରକ ମଇଁଷିଗୁଡ଼ାକ ଉଠି ବଣକୁ ଚରିଯାନ୍ତି । ତେତେବେଳୁ ମହାକୁଡ଼ ଜାଗ୍ରତ ଥାଏ । ଠେଙ୍ଗାଟି ତା' ପାଖରେ ପଡ଼ିଥାଏ; କାରଣ ତେତିକବେଳେ ନେକଡ଼ିଆ ଆସି ବାଛୁରୀଟା ଘେନି ପଳାଇପାରେ । ବଣ ଭିତରେ ମଇଁଷି ଗୋଟାଏ ନାକସିଙ୍ଘାଟା ଦେଲେ, ବାଘ ଆସିଛି ବୋଲି ମହାକୁଡ଼ ଜାଣିପାରେ । ଆରେ ରେ-ରେ କୁହାଟଟା ମାରି ଦେଲେ ଯେଉଁଠି ବାଘ ହେଉ ଛାଡ଼ି ପଳାନ୍ତି । ବାଘଗୁଡ଼ାକ ମହାକୁଡ଼ ଡାକ ବାରି ପାରନ୍ତି । ବଣରେ ଯିମିତି କୁକୁଡ଼ାଗୁଡ଼ାକ କୁକୁ କୁକୁ କରିବେ ମଇଁଷିପଲ ବଥାକୁ ନେଉଟି ଆସନ୍ତି । ସେତିକବେଳେ ମହାକୁଡ଼ ଦୁହାଁଳୀ ମଇଁଷିଗୁଡ଼ାକୁ ଦୁହିଁ ପକାଏ । ଦିନ ଘଡ଼ିକ ସରକ ମହାକୁଡ଼ାଣୀ ଦେବକୀ କାଣ୍ଡିଆ କୁଣ୍ଡା ମିଶା ସେରେ ଗୁଡ଼ଉଳର ଗୋଟିଏ ପୋଡ଼ାପିଠା, ପାଞ୍ଚସେର ଅକାଣ୍ଡିଆ ବଗଡ଼ା ଚାଉଳ ଆଉ ଧୂଆଁପତ୍ର ବଡ଼େ ଧରି ଗୋଠରେ ହାଜର । ମହାକୁଡ଼ର ସେତିକ ମାତ୍ର ଦୈନିକ ଖାଦ୍ୟ । ସକାଳୁ ପିଠାଟି ଖାଇ ଦେଇ ସେରେ ନବୁତା ମଇଁଷିଦୁଧ ପିଇଦିଏ । ଦିନ ଦୁଇପହର ସରକ

ଅଢ଼େଇସେର ଗୁଣ୍ଡଲ ଟିକିଏ ଫୁଟାଫୁଟି କରିଦିଏ । ବଣରୁ ଯାହା କିଛି କାଙ୍କଡ଼, ଡଙ୍କ, ମଟକା, ମିଳିଥାଏ, ତାକୁ ସେଇ ଗୁଣ୍ଡଲରେ ପକାଇ ଦେଇଥାଏ । ତରକାରି ପାଇଁ ଶୋଚନା ନ ଥାଏ । ବଖତରେ ୨୫ସେର ଗୁଣ୍ଡଲ, ଦୁଇସେର ହରୁଡା ମଇଁଷିଦୁଧ ମୂଳ ଖାଦ୍ୟ ।

ବୋଇଲା ।

'ମଇଁଷି ମଣେ ନୁହା ଚଣାଖିଆ,
ଗୁଷୁଗୁ ମଣେ ଧାଇ ।'

ମହାକୁଡ଼ାଣୀ ଗୁଣ୍ଡଲ ପିଠା ତେଣ୍ଟକା ଦେଇ ଘରର ଦୁଃଖ ସୁଖ, ଗାଁର ହାଲଚାଲ, ବନ୍ଧୁବାନ୍ଧବ ଖବରାଖବର କହି କହି ଦୁଧ କଳସଟି ମୁଣ୍ଡରେ ମୁଣ୍ଡେଇ ଘରକୁ ବାହୁଡ଼ି ଆସେ । ଗ୍ରୀଷ୍ମକାଳରେ ମହାକୁଡ଼କୁ କିଛି ହରବରରେ ପଡ଼ିବାକୁ ହୁଏ । ବଣରେ ନାହିଁ ପାଣି, ଏଣେ ମଇଁଷିଗୁଡ଼ାକ ଦୁଇପହର ଯାଏ ଜଳଜନ୍ତୁ ପରି କାଦୁଅ ପାଣିରେ ଡୁବିବେ, ନାକଟି ଖାଲି ଦିଶୁଥାଏ । କ'ଣ କରିବେ ? ବଣରୁ ବାହାରି ପାଟକୂଳରେ ଆସି ପଡ଼ନ୍ତି । ସେଠାରେ ପାଣି ଆଉ ଚରାର ଅଭାବ ଥାଏ ନାହିଁ । ମହାକୁଡ଼ ବଡ଼ ଗୋଟିଏ ତାଳପତ୍ର ଛତା ପାଟ କୂଳରେ ପୋତିଦେଇ ତାହାରି ଭିତରେ ବୋଷେଇବାସ କରେ ଓ ରାତିରେ କଠୋଉ ଯୋଡ଼ାକ ମୁଣ୍ଡରେ ଦେଇ ତେଲଗୁଣି ପୋକ ପରି ମୋଡ଼ିମାଡ଼ି ଶୁଏ । ଶୋଇବା ପାଖରେ ଦୁଇ ତିନି ଗଦା ମଇଁଷି ଗୋବର ଘସରେ ଧୂଆଁ ଜଳୁଥାଏ । ତେବେ ସୁଦ୍ଧା ପାଟ କୂଳରେ କାଳିଆ କାଳିଆ ଟେଙ୍ଗା ଗୋଡ଼ିଆ ବଡ଼ ବଡ଼ ଏତେ ମଶା ଯେ ସମ୍ଭାଳି ହୁଏ ନାହିଁ । ମହାକୁଡ଼ କଣ କରେକି, ପାଟ ଭିତରୁ ଖଣ୍ଡିଏ ପଙ୍କ ଆଣି ଗୋଡ଼ ଆଙ୍ଗୁଠି ଠାରୁ ଅଣ୍ଟା ଯାଏ ଲେପିଦେଇ—'ଯା ଗିହାଳୁ ଖାଇଏ ମଶା' କହି ଶୋଇପଡ଼େ । ପିଠି, ହାତ ପୋଡ଼ି ଉଠିଲେ ଗୃପଡ଼ା ଗୃପଡ଼ାକେ ଦୁଇ ତିନି ପୁଷ୍ଟା ମଶା ଦଳି ହୋଇଯାଏ । ଟିକିଏ ନିଦ ଭାଙ୍ଗିଗଲେ, "ଆଲୋ ମାଳତୀ ! ଆଲୋ ଶୁକ୍ରୀ ! ଆଲୋ କାଳୀ !" କୁହାଟି ଦିଏ । ମଇଁଷିଗୁଡ଼ାକ ମହାକୁଡ଼ କଥା ବୁଝନ୍ତି, ଦୂରରେ ଥିଲେ ପାଖକୁ ଆସନ୍ତି ! ଓଲିଆ ମଇଁଷି ବେକରେ କାଠଘଣ୍ଟି ବନ୍ଧା ଥାଏ, ଫାଶ ଫନ୍ଦା ଡାଳୁଅ ଚାଲରେ ପଡ଼ିଲେ ଧାଇଁଯାଇ ବାଡ଼େଇ ଆଣେ ।

ବର୍ଷେ କଣ ହେଲା କି, ଅଗ୍ରହଣ କାହୁଁ ଠାକୁରାଣୀ ଆସି ପଲରେ ପଶିଗଲା । ଦିନ ଆଠଟା ଭିତରେ ଅଢ଼େଇ ବୋଡ଼ିଆ ପଲଟା ଏକାବେଳେକେ ପଟାରୁଟ୍ । ମହାକୁଡ଼ର ତ ଅଣ୍ଟା ବସିଗଲାଣି । ଗାଲରେ ହାତ ଦେଇ ବସିଥାଏ । ମହାକୁଡ଼ାଣୀ ଆସି କହିଲା, "କି ରେ ମହାକୁଡ଼ ! ତୁ ଇମିତି ବସି କ'ଣ ଭାବୁଛୁ କିଁଆ ? ଅଣ୍ଟା ବସିଗଲାଣି ! ଓହୋ ! ଏ ଲାଗି ଗୋଟାଏ ଭାବନା ? ଯା ହେବାର ହେଲା । ଆରେ, ମୋ ଭାଇ ଗୋଠରୁ ବୁଢ଼ା ବାଣିକ ଗୋଠରୁ ଦୁଧ କାଟ ଆଣି ଲଗାଇଦେବା ବେପାର । ବର୍ଷ ଦି'ଟା ଭିତରେ ଯେ ପଲକୁ ସେ ପଲ ଗୋଟି ଗୋଟି, ଗଣି ନେ ।"

ମହାକୁଡ଼ କଣ କଲା କି, ଠାକୁରାଣୀ ଦାଢ଼ବାହୁଡ଼ା ପିଲପିଢ଼କା ଯେ ଦୁଇ ସ୍ୱତଖଣ୍ଡ ଲଙ୍ଗୁଡ଼ ଥିଲା, ବକବାକ ପକାଇ ଜମିଦାରର ଗୃହ ପଲରେ ସେଠ ହେଲା । ଏଡ଼େବଡ଼ ଗୃହକର ହେବାରୁ ମହାକୁଡ଼ାଣୀ ତ ବଡ଼ ଖୁସି । ଗାଁରେ ତାକୁ କେହି ହେଠାଣୀ ନ କହିଲେ ଘର କଳି କରେ; ମାଇକିନିଆ ହେଉ, ମିଣିପ ହେଉ, ବାଡ଼େଇବାକୁ ଧାଏଁ ।

ଶୀତଦିନଟା । ପୁଲିସ ସାହେବ ମହାମପୁର ଫାଣ୍ଡି ତଦାରଖ କରିବାକୁ ଯାଇଥିଲେ । ଫାଣ୍ଡି ପାଖ ତୋଟାରେ ଡେରା ପଡ଼ିଥାଏ । ଡେରା ପାଖକୁ ଅଧକୋଶ ଦୂରରେ ପାଟ । ସରାଳି, କାଜ, ମାଣିକଯୋଡ଼ି, ଜଳଫିମ୍ପି, ପାଣିହଂସ, ଚକୁଆ, ଦା-ବେଣ୍ଡିଆ, ବଗ ଚଢ଼େଇ ଭର୍ତ୍ତି । ସାହେବଙ୍କ ନଜର ସିମିତ ପଡ଼ିଗଲା, ବନ୍ଧୁକ କାନ୍ଧରେ ପକାଇ ଶିକାରକୁ ବାହାରିଲେ । ପଛରେ ଜଣ ଗୃହ କନେଷ୍ଟବଲ, ଆଠ ଦଶ ଜଣ ଚୌକିଦାର ମୁଣ୍ଡରେ ଲାଲ, କଳା, ହଳଦିଆ ଛିଣ୍ଡା ପାଗ ଝଣ୍ଡେ ଝଣ୍ଡେ ଗୁଡ଼ାଇ ଚଟେ ଚଟେ ବାଉଁଶଠେଙ୍ଗା କାନ୍ଧରେ ପକାଇ ଧାଇଁଛନ୍ତି । ସାହେବ ପାଟକୂଳରେ ପହଞ୍ଚି ସିମିତ ବନ୍ଧୁକଟା ଦୁମ୍ କରି ଆଓ୍ୱାଜ କଲେ, ହଜାର ହଜାର ଚଢ଼େଇ ତ କେଁ-କଟର କରି ଆକାଶରେ ଉଡ଼ି ଚକର ଦେଇ ଘୂରିଲେ । ବୋଧହୁଏ ସେମାନେ ତଳକୁ ଅନାଇ ବିଚାର କରୁଥିଲେ, "କାଲେ ଦେଖା ନାହିଁ, ଶୁଣା ନାହିଁ, ଆଜି ଏଟା କଣ ? ଏଟା ତ ଧଳା ମଣିଷ ପରି ଦିଶୁଛି, ଏଟା କଣ ?" ସେମାନେ ଆପଣା ଆପଣା ଭିତରେ ଯେଉଁ କଥାବାର୍ତ୍ତା ହେଉଥିଲେ, ସେଇଟାକୁ କହୁଛୁ "କେଁ-କଟର ।"

ଯୋଡ଼ାଏ କାଜ ଦେହରେ ଛିଟା ବାଜି ଡେଣା ଓ ଗୋଡ଼ ଭାଙ୍ଗିଗଲା । ହେଲେ, କଣ ହେଲା ଠା ନ ପଡ଼ି ଖଣ୍ଡି ଉଡ଼ା ଦେଇ ଯାଇ ପାଟ ମଝିରେ ପଡ଼ିଲା । ଯାଉଛି କିଏ ? ସାହେବ ତ ସମସ୍ତଙ୍କ ମୁହଁକୁ ଅନାଉଛନ୍ତି । ଜଣାଅଛି ପାଟ ମଝିଟା ଭାଲେ ଗହୀର । ମଣିଷଖିଆ କୁମ୍ଭୀର ଯୋଡ଼ାଏ ଥିବାର ବି ଶୁଣା ଅଛି । କନେଷ୍ଟବଲମାନଙ୍କର ତ କ୍ରେସ ଭିଜିଯିବ । ଚଉକିଆଗୁଡ଼ାକ ଗାଉଁଲିଆ, ପହଁରି ଜାଣନ୍ତି ନାହିଁ । ଅସଲ କଥା, କାହାରି ମନକୁ ଭରସା ଖଣ୍ଟୁନାହିଁ ଯେ ଯିବ । ସାହେବ କୋହିଲେ ଜରିମାନା କରିବ, ନ ହେଲେ ଚାକିରି ଛଡ଼ାଇଦେବ, ଜାଣି ଶୁଣି ଗୋମୁହାଁ କୁମ୍ଭୀର ମୁହଁକୁ କିଏ ଯିବ ? ସେତିକିବେଳେ କ'ଣ ହେଲା କି, ଆମ୍ଭମାନଙ୍କ ସେଠେ ପଲ ତନଖ କରିବାକୁ ଯାଇ ସେଠି ପାରିଧି ଦେଖୁଥିଲେ । କୁହା ନାହିଁ ବୋଲା ନାହିଁ, କ'ଣ ମନକୁ ଆସିଲା ହୁଡ଼ ହୁଡ଼ କରି ପାଣିରେ ପଶିଗଲେ । ଦଣ୍ଡିକ ଭିତରେ କାଜ ଦୁଇଟାକୁ ଆଣି ସାହେବ ଆଗରେ ଥୋଇଦେଲେ । ସାହେବ ତ ମହାଖୁସି । ଗୋଡ଼ରୁ ମୁଣ୍ଡଯାଏ ତିନିଥର ଅନାଇଲେ, ପାଞ୍ଚହାତ ମର୍ଦ୍ଦ—ବାହୁ ଟିପିଗୁଡ଼ାକ ଗୋଲଗାଲ ମୋଟା ମୋଟା, ଦୁଇ ହାତରେ ବେଢ଼ା ପାଇବ ନାହିଁ, ମୁଠିଣିଏ ଚଉଡ଼ା ଛାତି, ଚକା ମୁହଁ, ଚଉଡ଼ା ନାକ, ଜଙ୍ଘଗୁଡ଼ାକ ସଳଖ ମୋଟା ଶାଳଗଜା ପରି । ସାହେବ ଭାରି ଖୁସି ହୋଇ ପଚାରିଲେ, 'ତୁମ୍ କୋନ୍ ହେ ?" "ମଣିମା, ମୁଁ ଜମିଦାର ପଲର ସୁବଲ

ସେଠ ।'' ସାହେବ—"ତୁମ୍ କନେଷ୍ଟବଲ ନୌକ୍‌ରୀ କରେଗା ?'' ସେଠିଏ ଟିକିଏ ଘୁମ୍-ମାର ରହିଲେ । ଦଣ୍ଡକ ବାଦ କହିଲେ, "ମୁଁ ଘରଆଡ଼େ ନ ବୁଝି କହି ପାରୁନାହିଁ ।'' ସାହେବ ବୁଝିପାରଲେ ନାହିଁ । ଜମାଦାର ମୁହଁକୁ ଚାହିଁଲେ, ଜମାଦାର ଇଂରେଜୀ ପଢ଼ୁଆ ବୋଲି ଚୌକିଦାରମାନଙ୍କ ଜଣେ । ଆମ୍ଭେମାନେ ଜାଣୁ ସେ ଫାଷ୍ଟବୁକ୍ ଖଣ୍ଡିକ ବଲ୍‌କଲ୍ ପଢ଼ିଥିଲେ, ଆଜି କାଗଜରେ ଇଂରେଜୀରେ ଦସ୍ତଖତ କରନ୍ତି । ସେ ମହାକୁଡ଼ କଥା ଇଂରେଜୀରେ ସାହେବଙ୍କୁ ବୁଝାଇଦେଲେ । "Sir, this guala Mahakur says, he ask his wife, if she says, he will constable.'' ସାହେବ ମନ ମଧ୍ୟରେ ଟିକିଏ ହସିଲେ । ଅସଲ କଥାଟାକୁ ବୁଝିବାକୁ ଦି ମିନଟ୍ ଡେରି ହେଲା । ପକେଟରୁ ନୋଟବୁକ୍ ବାହାର କରି ଲେଖିଲେ..."Subal Singh is fit to be a constable. He seems to be a clever man and knows how to show respect to the fair sex''. ହୁକୁମ୍ ଦେଲେ, "ତୁମ୍ କାଲ୍ ଫଜର ଡେରାକା ପାଶ୍ ହାଜର ହୋ ।''

ସୁବଳ ସିଂହ ସାହେବଙ୍କ ଅର୍ଦ୍ଦଳି । ସାହେବ ତ ଭାରି ଶିକାରପ୍ରିୟ । ଶିକାର ସରଞ୍ଜାମ ତାହା ଜିମା ଥାଏ । ସୁବଳ ସିଂହ ନ ଥିଲେ ସାହେବ ଶିକାରକୁ ବାହାରି ପାରନ୍ତି ନାହିଁ । ସୁବଳ ଉପରେ ସାହେବଙ୍କ ଅନୁଗ୍ରହ ଦେଖି ଭଲ ଭଲ ଲୋକମାନେ ତାହାର ଅନୁସରଣ କରିଥାଆନ୍ତି । ସେଥିରେ ତାର ଦରମା ମାସିକ ୯ ଟଙ୍କା ଛଡ଼ା ଉପୁରି ଦି ଚାରି ପଇସା ବେଶ୍ ରୋଜଗାର ହୁଏ । ହେଲେ ସବୁ ଦେବକୀ ହିସାବ କରି ନିଏ । କେବେ କାଳେ ସିଂହର ଟଙ୍କେ ମଣ୍ଡେ ବେକାୟି ଖରଚ ଧରା ପଡ଼ିଲେ, ଦେବକୀ ଖପା ହୋଇ ଗାଳି-ଦିଏ, "କାଠଖିଆ, ତୁ ତ ଟଙ୍କା ଏଇ ରକମ ଉଡ଼େଇବୁ, ପରଘରେ ଗୋଲାମି କରୁଁକରୁଁ କିଁଆ ?'' ଆଉ ଗୋଟାଏ କଥା, ମହାକୁଡ଼ ସିଂହ ହେଲାରୁ ଦେବକୀ ନାମ ହେଲା ସିଂହାଣୀ, ସେ ଆପେ ଗାଁ ସାକେ ଏହି ନାମ କହି ଆସିଲା । ସିଂହଙ୍କର ଦି ଚାରି ବରଷ ଚାକିରି ବାଦେ ଥରେ ପୁଲିସ ସାହେବ, ମେଜେଷ୍ଟର ସାହେବ ମିଶି ଡୋମାପଡ଼ା ବଣକୁ ଶିକାର କରି ଯାଇଥିଲେ । ମେଜେଷ୍ଟର ସାହେବ ଗୋଟେ କେନ୍ଦୁଆକୁ ଚିମିଡ଼ା ଗୁଳି କରିଛନ୍ତି, ହେଲା ଅଣ୍ଟାଗୁଳି, କେନ୍ଦୁଆଟା ଗୋଟାଏ ଝମ୍ପ ଡାଳଟା ଭିତରେ ପଶି ଗର୍ଜନ କରୁଥାଏ । ସାହେବ ସଙ୍ଗରେ ଶ'କଡ଼ା ବେଠିଆ, ଯୋଡ଼ାଏ ହାତୀ, ଘାଉଲା କେନ୍ଦୁଆ ପାଖକୁ ଯାଉଛି କିଏ ? ଘାଉଲା ବାଘ, ଧରିଲା ଯମ ଏକା କଥା । ପୁଲିସ ସାହେବ ସୁବଳ ସିଂହ ମୁହଁକୁ ଚାହିଁଲେ । ସିଂହେ ଊଁ କି ଚୁଁ ନ କରି ପଶିଲେ ବଣରେ । ସିଂହେ ସେଇ ମଞ୍ଜିମଣା ଠେଙ୍ଗା ଆକରାଏ ଚୁଡ଼ି ନାହାନ୍ତି । ବାଘ ମୁଣ୍ଡରେ ଚାରିପାହାର କଷି ଦେଇ ଲାଞ୍ଜ ଧରି ଭିଡ଼ି ଆଣି ମେଜେଷ୍ଟର ସାହେବ ଆଗରେ ଥୋଇଦେଲେ । ସଙ୍ଗେ ସଙ୍ଗେ ନଗଦ ୫୦ ଟଙ୍କା ବକ୍‌ସିସ୍, ଆଉ ୧୫ ଟଙ୍କା ଦରମା ଜମାଦାରୀ । ଏତେ ହେଲା ହିଁ, ହେଲେ, ସିଂହଙ୍କ କାଳ ସହିଲା ନାହିଁ । କାର୍ତ୍ତିକ ମାସିଆ ଛୁଟି ନେଇ ଘରକୁ ଆସିଛନ୍ତି, କାହିଁ ଗୋଟାଏ କାଳ-ଜର ଆସି ମାଡ଼ି ବସିଲା । ଜର ସଙ୍ଗେ ସଙ୍ଗେ ସନ୍ନିପାତ । ଦିନ ଚାରିଟାରେ ଶେଷ ।

ଏଣେ ସିଂହାଣୀଙ୍କର ଦେହରେ ଯେମିତିକା ବଳ, ମନରେ ବି ସେହିପରି ସାହସ; ଘୋର ବିପଦରେ ପଡ଼ି ହଟିବାର ନୁହଁନ୍ତି । ସ୍ୱାମୀର ଶୁଦ୍ଧି କାର୍ଯ୍ୟ ସାରି ଆପଣା ବେଉସାରେ ଲାଗିଗଲେ । ସିଂହେ, ସିଂହାଣୀ ରୂପରେ ଗୁଣରେ ସମାନ । ବିଧାତା ଯେମନ୍ତ ଗୋଟିଏ ଚକରେ ଦୁଇଜଣଙ୍କୁ ଗଢ଼ିଛନ୍ତି, ତେବେ ସିଂହାଣୀ ଉଁଚ୍ଚରେ ଅଧଚୌକେ ବେଶି ହେବେ । ନାହି ତଳକୁ ଲୁଗା ପିନ୍ଧିଥିଲେ ପେଟଟି ଛ ନଉତିଆ ଧାନଉମ୍ବୁଆଁ କଳାହାଣ୍ଡି ପରି ବାହାରି ପଡ଼ିଥାଏ । ସିଂହାଣୀ ଅଳଙ୍କାରକୁ ବୋଧହୁଏ ବଡ଼ ଭଲ ପାଆନ୍ତି । ପ୍ରଥମେ ବିଧବା ଦିନ ଦେହରୁ ସବୁ ଅଳଙ୍କାର କାଢ଼ି ପକାଇଥିଲେ । ଶୁଦ୍ଧି ବାସିଦିନ ଷେର ହାତଗଣ୍ଠିଠାରୁ କହୁଣୀ ଯାଏ ଦଶବିଶାର ପିତ୍ତଳବାହୁ ବଳା ଦୁଇ ହାତରେ ଲଗାଇଦେଲେ । ନାକରେ ତୋଳାଏ ଓଜନର ସୁନାଚୁଣା ଚେପଟା ବିଶାଳ ନାକକୁ କାମୁଡ଼ି ଧରିଥାଏ । ବେକରେ ଦଶ ଗଣ୍ଡା ଗୋଡ଼ଲଗା ଟଙ୍କାମାଳ ନାହିଯାଏ ଲମ୍ବି ପଡ଼ିଥାଏ । ଦୁଇ ହାତରେ ଦପୁଞ୍ଜା ଗେଣ୍ଡା ପରି ରୁପା ମୁଦି । ସିଂହାଣୀଙ୍କ ସାହସ ଊଣା ନୁହେଁ । ଗାଁ ମୁଣ୍ଡ ନଈତୁଠିଆରେ ଘର । ଛୁଆଟାକୁ ଧରି ଏକୁଟିଆ ପଡ଼ିଥାଏ । ସିଂହାଣୀ ହାତରେ ଢେର ଟଙ୍କା, ଏକଥା ଗାଁ ଲୋକେ ଜାଣନ୍ତି; ଚୋରବୁଢ଼ାକ ସନ୍ଧାନ ପାଇ ଦିନେ ଅନ୍ଧାର ରାତିଆ ସିନ୍ଧିକାଟି ତିନିଜଣ ଚୋର ଘର ଭିତରେ ପଶିଲେ; ସିଂହାଣୀ ଶୋଇଥିଲେ, ତାକୁ ଯିମିତି ମାଡ଼ି ବସିଛନ୍ତି ସେ ତ ହାଉଳି ଖାଇ ହାତ ଯୋଡ଼ାକ ଛାଟିଆଡ଼ିଦେଲା । ଚୋରବୁଢ଼ାକ ଗୁରି ଗୁରି ହାତ ଦୂରରେ ପଡ଼ିଗଲେ । ଯୋଡ଼ାଏ ଚୋର ତ ପଳାଇଲେ; ଗୋଟାକୁ ମାଡ଼ି ବସିଲା, ଗାଈ ପଘାରେ ଘର ମଝି ଖମ୍ବରେ ଭିଡ଼ି ବାନ୍ଧିଦେଲା । ସକାଳକୁ ଗାଁ ଲୋକେ ଦେଖି ଧାଇଁଲେ, ଏ ଚୋରଟା କିଏ ମ ? ମଲା ମଲା ମଲା ! ଏ ତ ଗାଁ ଚଉକିଆ ବାଉରି ଝପଟ ସିଂ । ସମସ୍ତେ ପରାମର୍ଶ କଲେ ଚୋରକୁ ଚାଲାଣ ଦେବେ । ସିଂହାଣୀ କହିଲା, "ଆଚ୍ଛା, ମୁଁ ଚାଲାଣ ଦେବି ।" ଦୁଇ ଗାଲରେ କଷି ଲଗାଇଲା ଦୁଇ ଚାପୁଡ଼ା । ଭୁଆଁଇଫାଡ଼ା ପରି ଗାଲ ଫୁଲିଗଲା । ଚଉକିଆପୁଅ ପନ୍ଦର ଦିନ ଘରୁ ବାହାରି ନାହିଁ । ବିଛଣାରେ ପଡ଼ିଗଲା । ସିଂହେ ବିଯୋଗ ବେଳକୁ ପୁଅ ଅନନ୍ତାର ହୋଇଥିଲା ଚାରିବରଷ ବୟସ । ଟୋକା ବେଳେ ପୁଅଟିଏ ହେବାରୁ କୋଟିନିଧି ପାଇଥିଲେ । ପୁଅଟିର ଆକାର ବାପ ମା ପରି, ସେହିପରି ଦେହର ବର୍ଣ୍ଣ । ସିଂହାଣୀ ସଞ୍ଜବେଳେ କାମ ପାଇଟି ସାରି ପୁଅଟିକୁ ଘଡ଼ିଏ କୋଳରେ ବସାଇ ଗେଲ କରନ୍ତି, ଗେଲ କଲାବେଳେ ଗୀତ ଗାଉଥାନ୍ତି—

"ହାତୀ ଝୁଲୁଥାଏ ଲସର ପସର କଆଁକନ୍ଦା ଖାଇବାକୁ,<br>
ଅନନ୍ତ ଝୁଲୁଛି ଲସରପସର ମାଆ ଦୁଧ ଖାଇବାକୁ ।<br>
ଆକାଶେ ବୁଲୁଛି ଚନ୍ଦ୍ର ଉଦଆରେ ସଙ୍ଗରେ ବହୁତ ତାରା,<br>
ଅନନ୍ତ ଝୁଲୁଛି ମାଆକୋଳେ ବସି ଦୁଧ ସେ ଖାଇବ ସରା ।<br>
ବାପା ତ ଯାଇଛି ମଇଁଷିଗୋଠକୁ ମାଆ ତ ଦୁହିଁବ ଗାଈ,<br>
ରାଜାଙ୍କ ଦୁଆରେ ପାଟହାତୀ ବନ୍ଧା ଅନନ୍ତ ଚଢ଼ିବ ଯାଇ ।"

ଏହିପରି ଖେଳି କରି ପୁଅକୁ ବସି ଝୁଲଉଥାନ୍ତି । ହାତୁଣୀ କୋଳରେ ହାତ ପିଲା ପରି ପିଲାଟି ଝୁଲିଲେ ବଡ଼ ମାନେ । ରୋଜ ବଡ଼ିସକାଳୁ ଉଠି ପୁଅକୁ ତେଲ ହଳଦୀ ଟିକିଏ ମାଖି ଦେଇ କାଠପାଣିଆରେ ମୁଣ୍ଡ କୁଣ୍ଡାଇ ମୁଣ୍ଡରେ ଗୋଟିଏ ସାନ ଜଟ ବାନ୍ଧି ଦିଏ । ଘଣ୍ଟାଏଯାଏ ପୁଅ ମୁହଁକୁ ଚାହେଁ—ତା ବାଦ୍ ଆପେ ଜିଭ କାମୁଡ଼ି ପକାଇ କୁହେ, "ମା ଡାହାଣୀ ! ସୁନ୍ଦର ପୁଅଟିକୁ ମୁଁ ଚାହିଁବ ।" ତାହା ବାଦେ ତୁଳସୀମୂଳରୁ ଟିକିଏ ମାଟି ଆଣି ମୁଣ୍ଡରେ ଚିତା କରିଦିଏ । ଜଟ ଉପରେ ଟିକିଏ ଗୋବର ଲଗାଇଦିଏ । ତାହା ବାଦେ ପୁଅ ଉପରକୁ ଟିକିଏ ଛେପ ପକାଇ ଦିଏ । ଗାଁରେ କେତେ ରକମ ମାଇକିନିଆ ଅଛନ୍ତି, କାହା ନଜର କେମିତି । ପୁଅକୁ ହାନ୍ଦ୍ରି କରିଦେବେ । ଏହିଲାଗି ପୁଅ ବେକରେ ଖଣ୍ଡିଏ ଘୁଷୁରି ଥୋମଣି, ଗୋଟିଏ ତମ୍ବା ତେଉଁରିଆ ଭିତରେ ମହାଦେବ ବେଲପତ୍ରୀ, ଦି' କଡ଼ା କାଣୀକଉଡ଼ି, ଚାରିଟା ରୂପାତେଉଁରିଆ ମୂଲିମୂଳିକା ହାର କରି ପୁଅ ବେକରେ ଲଗାଇ ଦେଇଛି । ବାରଲୋକର ନଜର କଟିଯିବ ବୋଲି ଆପଣା ଗୋଡ଼ର ଟିକିଏ ଧୂଳି ନେଇ ପୁଅ ମୁଣ୍ଡରେ ଲଗାଇଦିଏ । ରାତିରେ ସେରେ ଚାଉଳରେ ଗୋଟିଏ ପୋଡ଼ପିଠା କରି ରଖିଥାଏ, ସେ'ଟି ପୁଅ ହାତରେ ଦେଇ ଦହି ମୁହାଁଇ ବସେ । ତାହା ବାଦେ ପସରା ଉପରେ ଦୁଇ ତିନିଟା କଳସୀରେ ଚହଲା ପୂରାଇ ଗାଁକୁ ଦହି ବିକିଯାଏ । ମୁଣ୍ଡ ଉପରେ ପସରାରେ ଦୁଇ ତିନି କଳସୀ ଦହି, ତାକୁ ନ ଧରି ଦୁଇବାହୁ ଝୁଲାଇ ଗୋହିରୀଦାଣ୍ଡରେ ଚାଲିଯିବାବେଳେ ଲୋକମାନେ ଚାହିଁ ରହନ୍ତି । କୁହନ୍ତି, 'ନନ୍ଦଘୋଷ ରଥ !' ସିଂହାଣୀର କେତେଗୁଡ଼ାଏ ନାମ— ଏକ—ଦେବକୀ ଗଉଡ଼ୁଣୀ, ଦୁଇ—ମହାକୁଡ଼ାଣୀ, ତିନି— ତାଡ଼କା ଅସୁରୀ, ଚାରି—ନନ୍ଦଘୋଷ ରଥ; ହେଲେ, ସିଂହାଣୀର ଅଜଣାରେ ଲୋକମାନେ ଏହିସବୁ ନାମ ଦେଇଛନ୍ତି । ସିଂହାଣୀ ବୋଲି ଡାକିଲେ ସେ ବଡ଼ ଖୁସି ହୋଇଯାଏ । ଗାଁରେ କେତେଗୁଡ଼ାଏ ଅଟିଆଲି ମଣିଷ ଉଚ୍ଚାଟରେ 'ଏ ସିଂହାଣୀ ! ଦହି ଦେଇ ଯା ବୋଲି ଡାକନ୍ତି । ଦହି କିଣିବାବେଳେ ତାକୁ ଦୁଇ ଚାରିଥର ସିଂହାଣୀ ସିଂହାଣୀ କହିଲେ ସେ ବଡ଼ ଖୁସି ହୋଇ ଦୁଇ ଚାରି ସଢ଼େଇ ଦହି ଲାଭ ବୋଲି ଢାଳିଦିଏ ।

ସୁବଳ ସିଂହ ବିଯୋଗବେଳେ ଅନନ୍ତାର ଚାରିବରଷ ପୂରି ଯାଇଥିଲା । ଦିନ କାହାରି ଲାଗି ବସି ରହେ ନାହିଁ । ଅନନ୍ତାର ଚାହୁଁ ଚାହୁଁ ହେଲାଣି ଦଶବରଷ । ହେଲେ କ'ଣ ହେଲା, ଲୋକେ ତାକୁ କୋଡ଼ିଏ ବରଷର ଭେଣ୍ଡିଆ ବୋଲି ଠଉରିବେ । ରୋଜ ସିଂହାଣୀ ଦହି ବିକି ଆସି ମୋଟାବରଗଡ଼ା ଚାଉଳ ପାଞ୍ଚସେର ଚୁଲିରେ ବସାଇଦିଏ । ସୁବଳସିଂହର ଯେଉଁ ଫରମାସୀ ପିତଳ ବାସନଟା ଥିଲା, ସେଥିରେ ତିନିସେର ଅନ୍ଦାଜ ଦରଫୁଟା ପେଜୁଆ ଅନ୍ନ ସେ ପିତଳରେ ଢାଳି ପୁଅ ପାଖରେ ପରଷି ଦିଏ । ଅନନ୍ତାର ତରକାରୀପତ୍ର ଲୋଡ଼ା ନାହିଁ, ହେଲେ, ମା ମନ କେତେକେ ମାନେ । ଗୋଟାପାମିଶା ବରଡ଼ାଲି କଂସାଏ, ନୋହିଲେ ଶାଗ ମାଛଡ଼ି ସିଜାସିଝି କରି ପୁଅ ପାଖରେ କଂସାଏ ବଢ଼ାଇଦିଏ ।

ଅନନ୍ତା ଭାତ ଖାଇସାରେ ଡାଲି ତେତକ ପିଇଦିଏ । ସିଂହାଣୀ ପୁଅ ଲାଗି ଗୋଟିଏ ଗାଈ ବାନ୍ଧିଛି । ଦିନକୁ ଚାରିସେର ଦୁଧ ଦିଏ । ଅନନ୍ତା ଭାତ ଖାଇସାରି ସେ କଂସା ଦୁଧତକ ପିଇଦିଏ ।)

ଏବେ ସିଂହାଣୀ କିଛି ପୁଅ ଲାଗି ହରବରରେ ପଡ଼ିଲେଣି । ଅସହୁଣୀ ଲୋକଗୁଡ଼ା ଅନନ୍ତାକୁ ଦେଖିପାରନ୍ତି ନାହିଁ । କିଏ କହିଲା—'ମୋ ବାଡ଼ିରୁ କାକୁଡ଼ି ଖାଇଗଲା' । କିଏ କହିଲା—'ମକା ଭାଙ୍ଗି ନେଲା,' 'ଆମ୍ବ, କଣ୍ଟା, କୋଳିଗଛରେ ଚଢ଼ି ଅନନ୍ତା ଖାଇଗଲା' ବୋଲି ଗାଁଲୋକମାନେ ରୋଜ ସିଂହାଣୀ ପାଖରେ ଗୁହାରି କଲେ । ସିଂହାଣୀ ମନ ମଧ୍ୟରେ ଗୁହାରିଆମାନଙ୍କ ଉପରେ ରାଗେ; ହେଲେ, ପୁଅକୁ କିଛି କୁହେ ନାହିଁ । ଆଜିକାଲି ବି ସଞ୍ଜ-ବେଳେ ପଡ଼ିଏ ବସି ପୁଅକୁ ଗେଲକରେ । ଶେଷରେ ସିଂହାଣୀ ବଡ଼ ଦିକ୍‌ଦାର ହୋଇ ଗାଁରୁ ଆସୁଛି, ବାଟରେ ଦେଖିଲା ବଉଳଗଛ ମୂଳରେ ପିଣ୍ଡାଟି ଉପରେ ବୈଷ୍ଣବ ମହାନ୍ତି ଅବଧାନେ ବେତ ଧରି ଗାଁ ପିଲାମାନଙ୍କୁ ପାଠ ପଢ଼ାଉଛନ୍ତି । ମନରେ କଲା, ଏହି ଚାଟଶାଳୀରେ ଅନୁକୁ ବସାଇଦେଲେ ପାଠ ବି ହେବ, ଆଉ ଗାଁ ବି ବୁଲି ପାରିବନାହିଁ । ତହିଁଆର ଦିନ ଅବଧାନ ପାଖରେ ଛାଡ଼ିଦେଇ କହିଲା, "ଅବଧାନେ ! ଅନୁକୁ ଟିକିଏ ଭଲକରି ପାଠ ପଢ଼ାଅ ।" ଅନୁ ଭଲ ପିଲାଟି ପରି ଚାଟଶାଳୀରେ ବସିଗଲା । ସେ ପୃଥିବୀରେ ଏକଲା ମା'କୁ ଡରେ, ଆଉ ମା'କଥା ମାନେ ।

(ଅବଧାନେ ଭୂଇଁରେ ଅ, ଆ ଲେଖିଦେଲେ, ତା' ଉପରେ ଖଡ଼ି ମଜାଇବାକୁ କହି-ଦେଲେ । ତଳେ ହାତ ଚାଲିଛି, ଉପରେ ଉପରେ ବଉଳଗଛରେ କେଉଁଠି କୋଳି ଅଛି, କେଉଁଠି ପାଚିଛି, ଅନାଇ ଦେଖୁଥାଏ । ନଜର ପଡ଼ିଲେ ମାଙ୍କଡ଼ ପରି ଡୁପ୍‌କରି ଚଢ଼ିଯାଇ କୋଳି ଆଣି ପାଟିରେ ପକାଇ ଲେଖିବାକୁ ବସିଯାଏ । ତାର ଗଛଚଢ଼ାରେ ଭାରି ଅଭ୍ୟାସ । ତା' ତେନ୍ତୁଳିଗଛକୁ ମାଙ୍କଡ଼ ଆସିଲେ ଉପରକୁ ଉଠିଯାଇ ମାଙ୍କଡ଼ ଲାଙ୍ଗୁଡ଼ ଧରି ତଳେ କଚାଡ଼ି ମାରିପକାଏ । ଗଛଚଢ଼ାରେ ମାଙ୍କଡ଼ ତା' ସାଙ୍ଗରେ ପାରିବେ ନାହିଁ । ଏଣେ କେତେଟା ଦିନ ଭିତରେ ଅବଧାନେ ଅଥୟ ହୋଇଗଲେଣି । ତା' ଡରରେ ଚାଟଶାଳୀରୁ ଆଉ ଟିକିଏ ଗୋଡ଼ କାଢ଼ି ପାରୁନାହାନ୍ତି । ଟିକିଏ ଅବଧାନେ ପଛକଲେ, ଚାଟଶାଳୀରେ ଭାରି ଗୋଟାଏ ଚହଲ ପଡ଼ିଯାଏ । କେଉଁ ପିଲାକୁ ପେଲିଦେଲା, କାହାକୁ ଧକା ମାରିଲା, କାହା ଗୋଡ଼ ଧରି ଟାଣିଲା, କାହାକୁ କଚାଡ଼ି ଦେଲା—ଏହିପରି ଲାଗେ । ଆଉ ପିଲେ ତାହାକୁ ବାଡ଼େଇଲେ ତା'ର ଭାରି ଆନନ୍ଦ, ସେ କାହାରିକୁ ବାଡ଼ାଏ ନାହିଁ; ହେଲେ ତାକୁ ଡରରେ ବାଡ଼ଉଛି କିଏ ? ଅବଧାନେ ପଢ଼ିଲେ ପଢ଼ିଲେ ସିଂହାଣୀର ଡର, ଆଉ ସେ ଦହି ବକସାରି ବାହୁଡ଼ାବେଳେ ଅବଧାନଙ୍କ କଂଧାରେ ଯେ ଗୁର ସଢ଼େଇ ଚହଲା ଢାଳିଦେଇ ଯାଏ, ତେତକ ଲୋଭରେ ଅନନ୍ତାକୁ କିଛି କହୁଥିଲେ ନାହିଁ । ମଣିଷ ଡର ଓ ଲୋଭରେ ଢେର କାର୍ଯ୍ୟରୁ ନିବୃତ୍ତ ହୁଏ, ଆଉ ସମ୍ଭାଳି ପାରିଲେ ନାହିଁ । ଧରିଲେ ବେତ । ପିହିଲେ ଦି ପାହାର, ଚାରି ପାହାର, ଛ ପାହାର ପଟାପଟ୍ କରି ପିଟିଲେ । ହେଲେ, ଅନନ୍ତା ସେଥିକି

ଅନାଇବାକୁ ନାହିଁ । ଅବଧାନେ ଚିଟିଲବେଳେ ବଉଲକୋନକୁ ଅନାଇଥାଏ; କେବେ କେବେ ମାଡ଼ ଜାଗାଟା ଆଉଁସିଦିଏ । ଆଉ ଗୃହ ଟୋକାଏ କହନ୍ତି, "ମହାଦେବର ବେଲପତ୍ରୀ ଗୁଣ, ଅନନ୍ତର ମାଡର ଗୁଣ ନାହିଁ ।" ଚଟଶାଳୀରେ ଏତେ ଯେ ମାଡ, ତା' ମା ହେଲେ କିଛି ଜାଣିପାରେ ନାହିଁ । ଅନନ୍ତା ସବୁ ଭୁଲିଯାଏ । ଚଟଶାଳୀରୁ ବାହାରିବା-ବେଳେ ସେ ମାଡ କଥା ତାର ମନେ ଥାଏ ନାହିଁ । ଏଇ ରକମ ଗୃହମାସ ଗଲା, ପାଞ୍ଚମାସ ବି ଗଲା, ଅନନ୍ତା ଅ ଅକ୍ଷରଟା ଲେଖିପାରି ଆ ମଡାଉଛି । କେତେ ଖଣ୍ଡ ବେତ ଛୁଡିଗଲାଣି, ଅବଧାନେ ଆଉ ପାରୁନାହାନ୍ତି । ତାକୁ ବାହାର ବି କରିଦେଇ ପାରୁନାହାନ୍ତି, ଚହଲା ମନ୍ଦାକ ବନ୍ଦ ହୋଇଯିବ ଯେ ! ଦିନେ ଅବଧାନେ ଆଉ ପାରିଲେ ନାହିଁ । ବେତ ଫୋପାଡ଼ିଦେଇ ଦି ଗୃହଖଣ୍ଡ ବଛୁଆତି ଛଡ଼ି ଆଣିଲେ—ଗୋଡରେ ହାତରେ ପିଠିରେ ଦଶ କୋଡିଏ ପାହାର କଷିଦେଲେ । ସେହିଦିନ ଅନନ୍ତାକୁ ଟିକିଏ ବାଧିଲା । ହେଲେ, ଆଖିରୁ ପାଣି ପଡ଼ିନାହିଁ । ଗୃହ ଟୋକାଙ୍କ ଆଗରେ କହିଲା, "ଶଳା ମହାନ୍ତିକୁ ମୁଁ ଦେଖିବି ।" ତହିଁ ଆରଦିନ କ'ଣ ହେଲା କି ଅନନ୍ତା ଏକାଧ୍ୟାନରେ ବସି ଅକ୍ଷର ମଡ଼ାଉଛି, କାହାକୁ ଅନାଇବାକୁ ନାହିଁ । ଖରି ଭଲପିଲାଟିଏ । ଅବଧାନେ ଟେରେଇ ଟେରେଇ ଦୁଇ ଗୃହଥର ତାକୁ ଅନାଇଲେଣି । ଖରି ଖୁସି । ମନରେ କଲେ, 'ଏଡ଼େ ସୁନ୍ଦର ଉପାୟ ଥିଲା, ହାୟ ! ହାୟ ! ଆଗରୁ କିଆଁ ନ କଲି ?'

ଦିନ ପହରକ ସମୟରେ ଅବଧାନଙ୍କୁ ପଦାଆଡେ ତଲବ ଦେଲା । ଡାକଦେଲେ, "ଆରେ ! ଛଆଁ ଆଣ ରେ, ଧୂଆଁ ପତ୍ର ଆଣ ରେ, ନୋଟା ଆଣରେ ।" ପୁଣ୍ଡାଏ କ ଛ'ଟା ଗୃହଟୋକା ଧାଇଁଯାଇ ସବୁ ଠିକ୍ କରିଦେଲେ । ଅବଧାନଙ୍କର ସବୁ କାମ ପିଲାମାନେ କରନ୍ତି । ଅବଧାନଙ୍କର ଗୋଡ଼ଘଷା, ପାଲଟା ଲୁଗା କାଚ୍ଚି, ସଙ୍କୁଡ଼ି ଧୁଆ ବଲକୁଲ କାମ ପିଲାମାନେ କରନ୍ତି । ଯେଡ଼େ ଲୋକର ପୁଅ ହେଉ ପଛକେ, ଅବଧାନ ଗୋଡ ଘଷିବ । ଗୁରୁଙ୍କ ଗୋଡ଼ ଘଷିଲେ ପାଠ ଆସେ । ଅବଧାନ ପିକାଟିଏ ଭଲ କରି ମୋଡ଼ିଲେ—ଛାଆଁ-ଖୁଣ୍ଟାରେ ପିକାଟିଏ ଲଗାଇଦେଇ ଦି'କାଳ ଭିଡ଼ିଲେ । ଫୁ କରି ଧୂଆଁ ଗ୍ରୁଞ୍ଜିଦେଇ କହିଲେ, "କି ରେ ମକୁନ୍ଦା ! ଧୂଆଁ ଲଗୁନାହିଁ ଯେ ?"

ମୁକୁନ୍ଦା କହିଲା—ମୁଁ କ'ଣ କରିବି ଅବଧାନେ ? ବାବା ତ କାଲି ହାଟରୁ ଏଇ ଧୂଆଁ ଆଣିଛି ।

ଅବଧାନେ—ବେ ବନ୍ଦିଆ ! ତୋ ବାପ କଟକରୁ ଯେ ବାଲେଶ୍ୱରୀ ଧୂଆଁପତ୍ର ଆଣିଥିଲା, ତାକୁ ଆଉ ଅଣିଲୁ ନାହିଁ ତ ?

ବନୋଦ—ମୁଁ କଣ କରିବି ଅବଧାନେ, ମା' ତାକୁ ବଡ଼ା ବାଉ ସିକା ଉପରେ ରଖିଦେଇଛି, ମୋ ହାତ ପାଇଲା ନାହିଁ ।

~ଅବଧାନେ—ଆଃ, ତୁ ଗୋଟାଏ କାମ କରିବୁ । ତୋ ମା ଯେତେବେଳେ ଗାଧୋଇ ଯାଇଥିବ, ତୁ ଗୋଟାଏ ବଡ଼ ପାଛୁଆ ଉଗାଡ଼ି ପକାଇବୁ, ତା ଉପରେ ଚଢ଼ି

ସିକାରୁ ଧୂଆଁ ପତ୍ର କାଢ଼ିବୁ । ସେଥିରୁ ଦୁଇ ଚାରି ଖଣ୍ଡ କାଢ଼ି ନେଇ ବଡ଼ା ବାଣ୍ଡ ସିକାରେ ଥୋଇଦେବୁ । ଖବରଦାର ! ବେଶିମୁଣ୍ଡାଏ ଆଣିବୁ ନାହିଁ । କାଲି ସକାଳେ ଯଦି ନ ଆଣିବୁ ଅନାଇ ଥା ଏ ବେତକୁ ।

ଅବଧାନେ ଫେର ଥରେ ଅନାଇଲେ । ଅନ୍ତୁ ଧୀରେ ବସି ଖୁବ୍ ମନଦେଇ ଅକ୍ଷର ବୁଲଉଛି । ଅବଧାନଙ୍କର ଭାରି ଦୟା ହେଲା । କଅ ଲେଇ କହିଲେ, "ରେ ବାପ ଅନ୍ତୁ ! ନେ' ତ—ଟୁକୁଣାଟା ନେଇ ଟୁକୁଣେ ପାଣି ଆଣ ତ, ବହିର୍ଦ୍ଦେଶ ଯିବି ।" ଅନ୍ତୁ ଭଲ ଫିଲାଟି ପରି ଟୁକୁଣା ଧରି ପୋଖରୀକୁ ଜଳ ଆଣିବାକୁ ଗଲା । ଅବଧାନେ ବସି ପିକା ଟାଣୁ-ଥାନ୍ତି । ଅନ୍ତୁ ଆସେ ନାହିଁ—ବଡ଼ ମଠ କଲା । ଅବଧାନେ ଆଉ ସହିପାରିଲେ ନାହିଁ । ଦୁଇଥର ତିନିଥର ପୋଖରୀ ତୁଠ ଆଡ଼କୁ ଅନାଇଲେଣି । ସେଠାରୁ ଉଠି ପିକା ଭୁଡ଼ ଭୁଡ଼ ତୋଠ ଆଡ଼କୁ ଚାଲିଲେ । ଅନ୍ତୁ ଟୁକୁଣାଟି ଧରି ଆଢ଼ୁଆ ଉହାଡ଼ରେ ଲୁଚି ପଡ଼ି ଅବଧାନକୁ ଅନାଉଥିଲା, ଆସୁଥିଲା ନାହିଁ । ଅବଧାନ ଉପରେ ଯେମିତି ନଜର ପଡ଼ିଛି, ଧୀରେ ଧୀରେ ପାଖକୁ ଚାଲି ଆସିଲା । ଅବଧାନଙ୍କ ହାତକୁ ଟୁକୁଣାଟି ଏମିତି ବଢ଼ାଇଦେଲା, ଯେମିତି ଟୁକୁଣାର ପାଣିକୁ ଅବଧାନଙ୍କର ନଜର ନ ପଡ଼େ । ଅବଧାନେ ଡେବିରି ହାତ ପାଞ୍ଚ-ଆଙ୍ଗୁଳିରେ ଟୁକୁଣା ଫନ୍ଦଟି ଧରି ଡାହାଣ ହାତରେ ପିକା ଭୁଡ଼ ଭୁଡ଼ ଗାଁ ଶେଷମୁଣ୍ଡ ଗହୀର ବିଲକୁ ବହିର୍ଦ୍ଦେଶ ଗଲେ । ଅଧଘଣ୍ଟାଏ ହୋଇନାହିଁ, ଅବଧାନେ ତ ବିଲରୁ ଚାରି ଥର ହାତ ଟେକିମାରି ରଡ଼ି ଛାଡ଼ି ଧାଇଁଛନ୍ତି । ଲୁଗା କେଉଁଠି ପଡ଼ିଲାଣି । ଲୁଗା ଖଣ୍ଡ ପଡ଼ିଥାନ୍ତା, ହାତରେ ଜାବୁଡ଼ି ଧରିଛନ୍ତି, ହେଲେ ଅଧଲଙ୍ଗଳା, "ରେ ଅଲପାଇସିଆ ରେ ! ରେ ସର୍ବନାଶିଆ ଅନ୍ତା ରେ ! ମାରି ପକାଇଲା ରେ ।" ଯେମିତି ଚାଟଶାଳୀରେ ପହୁଞ୍ଚିଗଲେ, ଧରିଲେ ବେତ—"କାହିଁ ଅନନ୍ତା ?" ଆଉ ଅନନ୍ତା ! ଅନନ୍ତା ଅନ୍ତର୍ଦ୍ଧାନ ।

ଆବଧାନେ ଚାଟଶାଳୀର ଏମୁଣ୍ଡ ସେମୁଣ୍ଡ ଗଡ଼ାଗଡ଼ି କରୁଛନ୍ତି, ପାଣି ପାଣି ରଡ଼ି ଛାଡ଼ିଲେ । ଗୋଟିଏ ପିଲା ଧାଇଁ ଯାଇ ତାଙ୍କ ଖେଷେଇଘର ମାଠିଆରୁ କଂସାଏ ପାଣି ଆଣି ଦେଲା । ସେହି ପାଣିରେ ହାତଧୋଇ ପକାଇ ଯେମିତି ଗୋଟାଏ କୁଳୁକୁଞ୍ଚା କରିଛନ୍ତି, କଂସା ଖଣ୍ଡ ପାଞ୍ଚହାତ ଦୂରକୁ ଫୋପାଡ଼ିଦେଇ 'ବୋପା ଲୋ ! ମା ଲୋ' ବୋଲି କହି ଗଡ଼ିଲେ । ଆଉ ରଡ଼ି କରିପାରୁ ନାହାନ୍ତି, ଖାଲି ଗଁ ଗଁ ଗଁ ଗର୍ଜୁଛନ୍ତି । ମୁହଁ ଭାରି ଫୁଲିଗଲାଣି । ଆଖିପତା ଫୁଲିଯାଇ ମାଡ଼ିପଡ଼ିଲାଣି—ଆଖିକୁ ଦିଶୁ ନାହିଁ । ଗାଁ ଲୋକେ ଉଜାଡ଼ି ପଡ଼ିଲେ । 'କଣ ହେଲା, କଣ ହେଲା' କହି ଦି' ଚାରି ଜଣ ଧରି ପାଣିରେ ପକାଇଲେ । ସଞ୍ଜବେଳ ସରିକି ଅବଧାନଙ୍କୁ ବଡ଼ ଶୀତ ଲାଗିଲା । ପାଣିରୁ ଉଠାଇ ଆଣି ପାଏ ଖେସାତେଲ ଅବଧାନଙ୍କ ଦେହଯାକ ଘଷିଲେ । ତେତେବେଳେ ଅବଧାନଙ୍କ ପାଟିରୁ କଥା ବାହାରିଲା । ହେଲେ, ମୁହଁଟା ଆଟିକା ପରି ଫୁଲିଯାଇଛି । ଭଲକରି କଥା କହିପାରୁ ନାହାନ୍ତି । ଅବଧାନେ, ଜଣାଇଲେ, 'ଘାରି ହେଲା ।' ଆଉ ତ କିଛି ଖାଇପାରିବେ ନାହିଁ ।

ଗା ଲୋକେ ଅଧସେରଟାଏ ଗରମ ଦୁଧ ଆଣିଦେଲେ । ଢୋକେ ଢୋକେ କରି ତେତିକି ପିଇ ଦେଇ ଅବଧାନେ ଟିକିଏ ସାଷ୍ଟମ ହୋଇ ବସିଲେ । ଅଣ୍ଡା ପଡ଼ିଗଲା—ଖସାଡେଲିରେ ବାଇଡ଼ଙ୍କ ବସ ହରେ । ଅବଧାନେ ଟିକିଏ ସାଷ୍ଟମ ହେଲେଣି । ଗାଁର ସବୁ ଲୋକେ ଜମା ହୋଇଥିଲେ । ପୁରୁଣା ପୁରୁଣା ପାଞ୍ଚଜଣ ଲୋକ ତନଖି କରିବାକୁ ବସିଗଲେ । 'କଥା କଣ ?—କିଁଆ ଅବଧାନେ ଏପରି ହେଲେ ?' ପ୍ରତ୍ୟକ୍ଷ ଏବଂ ପାର୍ଶ୍ୱବର୍ତ୍ତୀ ପ୍ରମାଣ ଏବଂ ଅବଧାନଙ୍କର ପୂର୍ବ ବ୍ୟବହାର ଆଲୋଚନା କରିବାରେ ସାଫ୍ ଜଣାଗଲା, ଏଟା ରାଣ୍ଡିପୁଅ ଅନନ୍ତାର କାମ । ସାଫ୍ ପ୍ରକାଶ ପାଇଲା କି, ଅବଧାନେ ଯେ ବଛୁଆତ ଛିଡ଼ିରେ ପିଟିଥିଲେ, ତା ମନରେ ଥିଲା ରାଗ । ଆଜି ସକାଳେ ଯିମିତି ଅବଧାନେ ଟୁକୁଣାଟାଏ ପାଣି ଆଣିବାକୁ କହିଥିଲେ, ସେ ପୋଖରୀକୁ ଟୁକୁଣା ଘେନି ଯାଇ ଅଧଟୁକୁଣେ ଅଠାଳିଆ କାଦ ଭର୍ତ୍ତି କଲା । ଲୋକେ ଦେଖିଛନ୍ତି ପୋଖରୀ ଆଡ଼ ବଣ ଉପରେ ଯେ ବାଇଡ଼ଙ୍କ ଲତା ମାଡ଼ିଛି, ସେଥିରୁ ଦୁଇପୁଞ୍ଜା ଫଳ ଆଣି ଖପରକାତି ଖଣ୍ଡିକରେ ଆଁଶୁ ସବୁ ଘୃଷିଛି । ଟୁକୁଣାରେ ଅଧେ ଆଁଶୁ ମିଶାଇ ଦେଇ ଆଉ ଘୁଡ଼ାଏ ପତ୍ର ଖଣ୍ଡିରେ ପୋଟଳା କରି ଅଣ୍ଟିରେ ଖୋସିଥିଲା । ଅବଧାନେ ଯେମିତି ପଦାଆଡ଼େ ଯାଇଛନ୍ତି, ତାଙ୍କ ରନ୍ଧାଘରେ ଯେଉଁ ପାଣି କୁମ୍ଭେ ଥିଲା ସେଥିରେ ତାହା ମିଶାଇ ଦେଇ ପଳାଇ ଯାଇଛି । ଅବଧାନଙ୍କ ମନରେ ଥିଲା ରାଗ । ବେତ ଧରି ଉଠପଡ଼ିଲେ, "ମୁଁ ଆଜି ରାଣ୍ଡିପୁଅ ଅନନ୍ତାକୁ ଦେଖିବି ।" ବାହାରିଲେ ଅନନ୍ତା ଦୁଆରକୁ । ଗାଁ ଲୋକ ସମସ୍ତେ ମନା କରୁଛନ୍ତି—ରାଗବେଳେ ମଣିଷର ଥାନ ଜ୍ଞାନ ଥାଏ ନାହିଁ । ଖଣ୍ଡେ ବାଟରୁ ଡାକୁଛନ୍ତି, 'ଲୋ ଦେବକୀ ଗଉଡ଼ୁଣୀ ! ଲୋ ଦେବକୀ ଗଉଡୁଣୀ ! ସେ ରାଣ୍ଡିପୁଅ ଅନନ୍ତା ଅଲପାଇସିଆ କାହିଁ ?'' ସିଂହାଣୀ ସେତେବେଳକୁ ସବୁ କଥା ଶୁଣିଲେଣି । ପୁଅକୁ ଘର ଭିତରେ ଲୁଚାଇ ଦେଇ ଦାଣ୍ଡପିଣ୍ଡାରେ ବସିଥିଲେ । ଅବଧାନ କଥା କାନରେ ଯେମିତି ପଡ଼ିଛି, ଘରଭିତରୁ ବାହାରି କଲେ ସେଇ ମର୍ଖିମଣା ଠେଙ୍ଗା । କୁନ୍ଦାଟଟାଏ ମାରି ଡାକିଦେଲେ, "ଆରେ ଅଲପାଇସିଆ । ମହାନ୍ତି ଗୋଲାମ୍ ! ଡାକୁଣୀଖିଆ ନଇସୁଆ । ମୋ ଗିରସ୍ତ ଥିଲା ଯାଇବର ଜମାଦାର—ମୁଁ ସିଂହାଣୀ—ମୋତେ କହିବୁ ଦେବକୀ ଗଉଡୁଣୀ ? ମୋ ପୁଅକୁ କହିବୁ ଅଲପାଇସିଆ ? କିରେ ତୋତେ କିସ ଲାଗିଲାଣି କି ? ରହ ତ ମହାନ୍ତି ଟୋକାକୁ ଦେଖେଁ ।'' ସିଂହାଣୀ ମୁଣ୍ଡରେ ଲୁଗା ନାହିଁ—ତ୍ରେମେ ତ୍ରେମେ କେତେ କେରା କଞ୍ଚା ପାକଲା ବାଳ ଫର ଫର ଉଡ଼ୁଛି । କାନ୍ଧରେ ଠେଙ୍ଗା । ସେହି ବିକଟାଳ ରଡ଼ି ଶୁଣି ଅବଧାନଙ୍କର ତ ପିଳେହି ପାଣି ହେଲାଣି । ସିଂହାଣୀର ଦେହବଳ ଅବଧାନଙ୍କୁ ଭଲ ଜଣା । ଦିନେ କ'ଣ ହେଲା କି ସକାଳ ଓଳିଆ ସିଂହାଣୀ ଗାଁକୁ ନଈବନ୍ଧ ଉପରବାଟେ ଦହି ବିକି ଯାଉଛି । ତେତିକିବେଳେ ଘୁମା ବିନୋଦବିହାରୀ ମନ୍ଦିରର ମାରଣା ଷଣ୍ଢଟା ବନ୍ଧିବାକୁ ତଡ଼ି ଆସିଲା । ସିଂହାଣୀ ଘୁମ୍ କରି ଛିଡ଼ା ହୋଇଯାଇ ଧରିଲା ଷଣ୍ଢ ଶିଙ୍ଗ । ମୁଣ୍ଡ ଉପରେ ପସରାରେ ଦହି ମାଠିଆ ଯୋଳ, ତାକୁ ଧରିବାକୁ ନାହିଁ । ଷଣ୍ଢ ଶିଙ୍ଗ ଧରି କଡ଼େଇ ବନ୍ଧଧାରକୁ ଘେନିଗଲା । ଯେମିତି ପେଲିଦେଇ ଶିଙ୍ଗ ଛାଡ଼ିଦେଇଛି ଷଣ୍ଢ ତ ଫୁଟୁଲା ପରି ଗଡ଼ି ଗଡ଼ି ଯାଇ ନଈ ଭିତରେ ପଡ଼ିଲା । ସେହି ଦିନରୁ ଷଣ୍ଢ ଗ୍ରେଟା, ମାରଣାପଣିଆ ଛାଡ଼ିଲାଣି ।

ଏଟା ଅବଧାନଙ୍କ ଆଖିଦେଖିଲା କଥା । ଭୟରେ ଅବଧାନଙ୍କ ପଳାୟନ । ବାଘୁଣୀ ମୃଗକୁ ଗୋଡ଼ାଇଲେ ସେ ଯେମିତି ପଳାଏ, ଅବଧାନେ ସେହିପରି ପଡ଼ି ଉଠି ଧାଇଁଛନ୍ତି । ଆଣ୍ଠୁ, ଗଣ୍ଠି ଛିଡ଼ି ଝର୍ ଝର୍ ରକ୍ତ ବହୁଛି । ସିଂହାଣୀ କାନ୍ଧରେ ଠେଙ୍ଗା, ଖାଲୁଆଣୀ ପରି ଅବଧାନଙ୍କ ପଛରେ ଧପ୍ ଧପ୍ କରି ଧାଇଁଛନ୍ତି । ଧାଇଁବାବେଳେ ସେହି ବିଶାଳ ପେଟଟି ଦଲ୍ ଦଲ୍ ଶୁଭୁଛି । ହାତରେ ସେ ପିତଳବାନ୍ଧି ବଳାଗୁଡ଼ାକ ପାଏ ବାଟ ଯାଏ ଝମ୍ ଝମ୍ ଶୁଭୁଛି । ସିଂହାଣୀର ସେହି ରଡ଼ିରେ ଗାଁ କମ୍ପି ଯାଉଛି । ଅବଧାନେ ଗାଁ ମଝିରେ କେଉଁଠି ଅନ୍ଧାରରେ ମିଶିଗଲେ । ସିଂହାଣୀ ଡାକଦେଲା, "ଆରେ କାଠଗିଆ ମହାନ୍ତ ଗୋଲାମ ! ମୋ ପୁଅକୁ କୁଆଡ଼େ ଲୁଚାଇଛୁ ଆଣି ଦେ । ଜାଣି ଥା, କାଲି ସକାଳେ ପିତଳବାନ୍ଧିରେ ତୋ ମୁଣ୍ଡ ଚୂନା କରିବ ।" ହେଲେ, ଅବଧାନଙ୍କୁ ତହିଁ ଆରଦିନ ସକାଳଠାରୁ କେହି କେବେ ସେ ଗାଁରେ ଆଉ ଦେଖି ନାହିଁ ।

ଆହୁରି ବି ପାଞ୍ଚ ଛଅ ବରଷ ଗଲାଣି, ଅନନ୍ତା ଲାଗି ଗାଁର ଅନେକ ଲୋକ ଅସ୍ଥିର । ତାର ଆଉ କିଛି ଅତ୍ୟାଚାର ନାହିଁ । ଖାଲି କାହାର ବାଡ଼ିରେ ମକା, କାକୁଡ଼ି, କୋଳି, ଆମ୍ବ, ବେଲ କିଛି ରହିବ ନାହିଁ, ଆଉ ସୁନା ରୁପା ପଡ଼ିଥାଉ, ଅନାଇବ ନାହିଁ । ହେଲେ, ସେ ଯେପରି ଉତ୍ପାତିଆ, ସେହିପରି ବି ଭଲଲୋକ । ତାକୁ ରଗାଇଲେ ରକ୍ଷା ନାହିଁ । ସେ ଆଗେ ଦୁଃଶମନ ଘରର ଖୁମ୍ବ ଆଉ କବାଟ ଭାଙ୍ଗେ । ମା ମନାକରିଛି କାହାର ଦେହରେ ହାତ ଦିଏ ନାହିଁ । ଏଣେ ସାକୁଲସାକୁଲ ଟେକାଟେକି କରି ତାକୁ ଦି କଥା କୁହ, ତୁମ ମୁହଁ କାଢ଼ିବ । କାହାର ବାଡ଼ି ହଣା ଯାଉଛି ଅନନ୍ତା ସେଠି ଦେଖୁଥିଲା ତାକୁ ଯଦି କହିବ, "ବାପ ଅନ୍ତୁ ତୁ ନ ହେଲେ କାହାର ଗାଁ ଚଳିବ ?" ଆଉ କିଛି କଥା ନାହିଁ, ଧଇଲା କୋଡ଼ି । ଚାରିଜଣ ମଣିଷ ଦିନକେ ଯାହା ପାରିବେ ନାହିଁ, ପହରକ ଭିତରେ ଫୁଟେ ଗହୀରରେ ବାଡ଼ଟାକୁ ତାଡ଼ି ପକାଇବ । ମୂଲିଆ ମିଳୁ ନାହିଁ, କାହାର ଘର ଛପରବନ୍ଧା ହୋଇପାରୁ ନାହିଁ, ଧଇଲା ଅନନ୍ତାକୁ—ସାକୁଲ ସାକୁଲ କରି କହିଲେ, ଦିନେ ଲାଗୁ ଦି' ଦିନ ଲାଗୁ, ସେ ଏକଲା ଗୋଟାଏ ଘର ଛାଇ ପକାଇବ । ରାମା ଭଣାର ବାପ ମରି ଘରେ ପଡ଼ିଛି । ବାଡ଼ରେ ମରିଛି ବୋଲି ତାକୁ କେହି ଉଠାଇବାକୁ ଆସିଲେ ନାହିଁ । ଅନ୍ତୁ ରାତି ଛ ଘଡ଼ି ବେଳେ ଗାଁ ପାଖ ଦେଇ ଯାଉଥିଲା, ତାକୁ ସବୁ କହିଲା । ଆଉ କିଛି କଥା ନାହିଁ; ଏକଲା ହେଁସମିଶା କରି ମଡ଼ାକୁ କାନ୍ଧେଇଲା । ଅନ୍ଧାର ରାତି । ସେହି ସମୟରେ ବି ଗାଁରେ ବାଡ଼ି 'ପଡ଼ିଛି । ଅଧକୋଶେ ଦୂରରେ ମଡ଼ାମଶାଣିରେ ମଡ଼ାଟାକୁ ଫୋପାଡ଼ିଦେଇ ନଈରେ ବୁଡ଼ିପଡ଼ି ବାହାରି ଅଇଲା । ଅନନ୍ତା ବାଘ, ଭାଲୁ, ଭୂତ, ସାପ, ବେଙ୍ଗ କାହାକୁ ଡରେ ନାହିଁ । ଅନନ୍ତା ଲୋକଙ୍କ ବାଡ଼ିରୁ ଫଳକନ୍ଦ ଲୁଟିପାଟି ଖାଇବ; ହେଲେ, ତାକୁ କିଛି ଖାଇବାକୁ ଯାଚ; ରାଗି ଘରଦୁଆର ଭାଙ୍ଗିବ । ବନ୍ଧୁଆ ଚନ୍ଦ ଜଣେ ତନ୍ତୀ ମହାଜନ, ଆଠ ଦଶ ହଜାର ଗଣିଦେବା ଲୋକ, ଲୁଗା କାରବାର କରେ । ଗୋଟାଏ ବଡ଼ ଦୋକାନଘର ତିଆରି କରୁଛି । ଘରଆଡ଼େ ଖୁଣ୍ଟ ପଡ଼ି ସଡ଼ି ଚଉକ ବୁଲିଗଲାଣି । ମଝିଖମ୍ବ ଯୋଡ଼ାକ ଅଠର

ହାତ । ଘର ମୋଟା ଶାଳଗଅଁଳ । ଦଶଜଣ ଲୋକେ କଷା କଷି କରି ମଝିଖମ୍ବ ଛିଡ଼ା କରି ପାରୁ ନାହାନ୍ତି । ଜଣେ ହସି କହିଲା, "ଆମେ ଏତେ ପାରୁ ନାହୁଁ, ଗଣ୍ଡିପୁଅ ଅନନ୍ତା ହେଲେ ଏକଲା ଖମ୍ବଯୋଡ଼ାକ ଉଠାଇ ଛିଡ଼ା କରିଦେଇଥାନ୍ତା ।" ଘଟଣା ଦେଖ, ତେତିକ-ବେଳେ ଅନନ୍ତା ଦାଣ୍ଡରେ ଯାଉଥିଲା । ବନ୍ଧିଆ ତନ୍ତ୍ରୀ ଡାକଦେଲା, "ଆରେ ଅନନ୍ତା ! ଏ ଯୋଡ଼ାକ ଖମ୍ବ ଉଠାଇ ଦେ, ତୋତେ ଦି ଟଙ୍କା ଖିଆଖିଆ ଦେବି ।" ଆଉ ଯାଏ କାହିଁ ? "ହଁ ରେ ଶଳା ତନ୍ତ୍ରୀ ! ମୁଁ ତୋର ଗୋଲାମ ? ତୋର ମୂଲ ଲାଗିବ ? ଧାଇଁଲା ମାରିବାକୁ । ତନ୍ତ୍ରୀ ତ ଡରରେ ପଳାଇଗଲାଣି । ଦଶଜଣ ଲୋକ କୋଡ଼ିଏ ଦିନ ନାମ କରି ଯେତେ ଖମ୍ବ ପୋତି ଛିଡ଼ା କରାଇଥିଲେ, ସବୁଗୁଡ଼ାକ ଘଣ୍ଟାକ ଭିତରେ ଉପାଡ଼ି ପକାଇଲା । ହେଲେ, ଜାଣାଶୁଣା ଲୋକ ଅନନ୍ତଠାରୁ ଢେର କାମ କରାଇ ନିଅନ୍ତି । ରୋଜ ରୋଜ କାହାର ହେଲେ କିଛି ପାଇଟି କରିଦେଇ ଆସେ । ବନ୍ଧିଆ ତନ୍ତ୍ରୀ ଗାଁର ଭଲଲୋକ ପାଖରେ ଅନନ୍ତା ନାମରେ ଗୁହାରି କରି ଓଲଟା ଗାଳି ଶୁଣିଲା ।

ବନୋଦରାୟପୁର ଖର୍ଗଙ୍ଗା ନଦୀର ଉତ୍ତର କୂଳରେ । ନଦୀଗର୍ଭଠାରୁ ଗାଁଟା ଅତି ଅଳ୍ପ ଉଞ୍ଚା । ବଢ଼ିପାଣିରୁ ଗାଁ ରକ୍ଷା ନିମନ୍ତେ ସରକାର ବାହାଦୂର ଗୋପାଳପୁର କଛରୁ ରାମନଗର ଯାଏ ଅଠର ମାଇଲ ଲମ୍ବ କୋଡ଼ିଏ ହାତ ଓସାର ଦଶ ହାତ ଉଞ୍ଚା ଗୋଟାଏ କୂଳବନ୍ଧ ପକାଇଛନ୍ତି । ସେ ବନ୍ଧ ଯୋଗୁଁ ନଈକୂଳିଆ ଢେର ଗାଁ ଆଉ ବାଲିବାଡ଼ି ରକ୍ଷା ପାଏ । ବନୋଦରାୟପୁର ଗୋଟିଏ ବଡ଼ ଧନବନ୍ତ ଗାଁ । ଗାଁ ତଳେ କଳାନ୍ଦ ବିଲ ଢେର । ଗାଁରେ ପ୍ରାୟ ଦୁଇଶ ଘର ବସ୍ତି । ସମସ୍ତେ ଥିଲାଲୋକ । କେହି କାହାକୁ ଆବୁର୍ଦ୍ଦା ହୁଏ ନାହିଁ । ସରକାରୀ ବଡ଼ ବଡ଼ ଅମଲା, ସ୍କୁଲମାଷ୍ଟର, କାରବାରିଆ ମହାଜନ, କଲିକତା ଚାକିରିଆ ଢେର ।

ଆଶ୍ୱିନ ମାସ । ଦୁର୍ଗାପୂଜା ସମୟ । ବିଦେଶିଆ ସବୁ ଘରକୁ ଆସିଛନ୍ତି । ନାଚ-ତାମସା, ଖିଆପିଆ ଦିନ ରାତି ଲାଗିଛି । ଗାଁଟା ଆନନ୍ଦରେ ଭାସୁଛି । ଫି ବର୍ଷ ଏହି ସମୟରେ ଗାଁଠାରେ ବଡ଼ ଜାତ ହୁଏ । ଷଷ୍ଠୀ ବେଲବରଣ । ସକାଳିଆ ଉତ୍ତର ଦିଗରୁ ଖଣ୍ଡେ ମେଘ ଦେଖାଗଲା । ସୂର୍ଯ୍ୟ ଉଇଁ ମେଘରେ ବୁଡ଼ିଗଲେ । ମେଘଟା ଦେଖୁଁ ଦେଖୁଁ ଆକାଶଯାକ ଘୋଟିଗଲା । ସଙ୍ଗେ ସଙ୍ଗେ ପବନ । ବୁଢ଼ା ଗୋବିନ୍ଦ ପଣ୍ଡେ କହିଲେ, ଆରେ ବାପା ! ଡାକବୃଷି କହିଛନ୍ତି—

"ହସି ପଶେ—ଉଇଁ ନ ଦିଶେ
ବାପା ବୋଇଲେ ପୁତା, ନିଷ୍ଟେ ବରଷେ ।"

ଆଜି ଜାଗ୍ରତ ଥାଅ, ନିଷ୍ଟେ ବରଷା ହେବ । ପଣ୍ଡାଙ୍କ ମୁହଁ କଥା ମୁହଁରେ ଅଛି—ଟପ୍ ଟପ୍ ଟପର୍ ଟପର୍ କରି ପକାଇଲା ପାଣି; ଯେ ବର୍ଷୁଛି ସେହି ବର୍ଷୁଛି । ଷଷ୍ଠୀ, ସପ୍ତମୀ, ଅଷ୍ଟମୀ, ନବମୀ ପଞ୍ଚ ହେଲା, ପାଣି ଛାଡ଼ିବାକୁ ନାହିଁ, ଯେଉଁଠିକି ମଣିଷ ସେଇଠି ବସିଛନ୍ତି । ଶହେ-ବର୍ଷର ବୁଢ଼ାମାନେ କହୁଛନ୍ତି, ଏପରି ବର୍ଷା କେବେ ଦେଖା ନ ଥିଲା । ଗାଁରୁ ପା ଭାଗ

ଘରର କାନ୍ଥ ଧୂପ୍ ଧାପ କରି ଧଡ଼ିଗଲଣି, ଧନ ଗୋରୁ ପାଣି ପବନ ଖାଉଛନ୍ତି । ଦଶହରା ଧନ ଯେମିତି ଗୋରୁପାଉଛନ୍ତି ଗାଁ ଗଲା, ଗାଁ ଗଲା, ଗାଁ ଗଲା ଚହଲ ପଡ଼ିଲା । ଆଉ କ'ଣ ଲୋକେ ଘରେ ରହିବେ ? ପାଛିଆ କୋଡ଼ି ଘେନି ବନ୍ଧକୁ ଧାଇଁଛନ୍ତି । ବଡ଼ସାନ ବିଚାର ନାହିଁ । ବ୍ରାହ୍ମଣ ପାଣ ଛୁଆଁ ଛୁଇଁ ହେଉଛନ୍ତି । ପାଛିଆ କୋଡ଼ି ଧରି ସମସ୍ତେ ବନ୍ଧ ଉପରେ ହାଜର୍ । ନଈ ଦକ୍ଷିଣକୂଳକୁ ଅନାଇବା ବେଳେ ଗୋଟାଏ ସମୁଦ୍ର, ଆଉ କିଛି ନାହିଁ । ବଢ଼ି ପାଣି ବନ୍ଧ ମାନେ କି ନା । ନଈ ଭିତରୁ ପାଞ୍ଚହାତ ଉଚ୍ଚ ଗୋଟାଏ ଗୋଟାଏ ଲହରି ଆସି ଝଲକେ ଝଲକେ ପାଣି ବନ୍ଧ ଟପି ପଡୁଛି । ଯେଉଁଠି ଝଲକେ ପାଣି ଟପି ପଡ଼ୁଛି, କେହି କାହାକୁ କହିବାକୁ ନାହିଁ—ଶହେ ବୋଝ ମାଟି ପଡ଼ିଯାଉଛି । ବନ୍ଧମୂଳଟା, ଜୋର ଗୋଟାଏ ଗୋଟାଏ ପୋଟଳି କରି ପକାଇଲଣି । ଆଉ ଏଣେ କ'ଣ ହେଲାକି ଗୋରକୋଣ ତଳେ ରାମପୁର ମୁହାଣ ବାଟେ ପାଣି ଭୁଡ଼ିଆସି ଗାଁମୂଳକୁ ଲାଗିଲଣି । ଗାଁତଳ ଗହିରଗୁଡ଼ାକ ସମୁଦ୍ର ପରି ଜଳମୟ । ବନ୍ଧର ପାଣି ନ ଟପିଲେ ବି ତଳ ପାଣି ଆସି ଗାଁକୁ ଭସାଇ ନେବ । ପାଣିଟା ଯେମିତି ହୁ ହୁ କରି ବଢୁଛି—ଗାଁ ଭିତରେ ପାଣି ପଶିଲା ବୋଲି । ଘରେ ଆଉ ରହିବାବଢ଼ା କ'ଣ ହେବ ? ତିରି-ଗୁଡ଼ାକ ଘରୁ ବାହାରି ଆସି ଶଙ୍ଖ, ହୁଳହୁଳି ପକାଉଛନ୍ତି । ଗୁଡ଼ାଏ ତିରି କଅଁଳା ଛୁଆଙ୍କୁ କାଖେଇ ରଡ଼ି କରୁଛନ୍ତି । ଶଙ୍ଖ, ହୁଳହୁଳି, ହରିବୋଲ, କାନ୍ଦଣାରେ ଗାଁଟା ଉଛୁଳି ପଡୁଛି । ପୂର୍ଣ୍ଣି ଡୁବେ ଡୁବେ । ଗାଧୁଆ ତୁଠବାଟେ ଗାଁକୁ ପଶିଲା ପାଣି । ଦେଖୁ ଦେଖୁ ପାଞ୍ଚହାତ ଗହିରା ହୋଇଗଲା । ଚଉଡ଼ାଟା ବି ବେଳକୁ ବେଳ ବଢ଼ିଯାଉଛି । ପିଟକାଣ୍ଡି ମୁହଁରୁ ପାଣି ବାହାରିଲା ପରି ବେଗରେ ପାଣି ଗାଁ'କୁ ଧାଉଁଛି । 'ହରିବୋଲ, ହରିବୋଲ— ଗଲା, ଗଲା''; ଆଉ କିଛି କଥା ନାହିଁ । ଉକୁଣି ସମୁଦ୍ରରେ ସମସ୍ତଙ୍କୁ ଜାକିଦେବ । ପାଣିସୁଅ ବନ୍ଧ ପାଇଁ ଶ'କୁ ଶ' ବୋଝ ମାଟି ପଡୁଛି; ମାତ୍ର ମୁଠାଏ ବି ରହୁ ନାହିଁ, ସୁଅ ଭସାଇ ନେଉଛି । ଏତେ ଯେ କାଣ୍ଡ—ଅନନ୍ତାର କାହିଁରେ ଚିନ୍ତା ନାହିଁ । ସକାଳୁ ଉଜା ଉଜା ଗାଁର ଗୃହପିଠି ବୁଲୁଛି । ଲୋକମାନଙ୍କ ବାଡ଼ିରୁ ଗଛମିଶା ମଜା କାକୁଡ଼ି ଖାଇ ଆସୁଛି, ତାହା ସବୁ କେବଳ ଅଣ୍ଟାରେ ପୂରଉଛି । ଯେତେବେଳେ ଗାଧୁଆତୁଠ କନ୍ଦରେ ଖାରେ ହୁରି ପଡ଼ିଲା, ସେତେବେଳେ ଧସି ହସି କଣ ହେଉଛି ମଜା ଦେଖିବା ପାଇଁ ଧାଇଁଲା । ଦେଖିଲା ଯେ ଗାଁ'କୁ ଗୋଟାଏ ଖରା ପାଣିସୁଅ ଧାଇଁଛି । ଶୁଣିଲା ଯେ ଗାଁ ଖସିଯିବ । ଭଲକରି ଅନାଇ ଧାଇଁଲା ଗାଁ ଭିତରକୁ । ବିନୋଦବିହାରୀ ଠାକୁର ସିଂହଦୁଆର କବାଟଟା ପାଞ୍ଚହାତ ଉଞ୍ଚା ଗୃହହାତ ଚଉଡ଼ା । ତାକୁ କାଢ଼ି ପକାଇ ମୁଣ୍ଡାଇ ଧାଇଁଛି । ଦାଣ୍ଡପାଖରେ ପାବଡ଼ାମା'ର ମେଲରେ ଗୋଟିଏ ଢେଙ୍କି ପଡ଼ିଛି, ତାକୁ ଜଣା । ଢେଙ୍କି କାଢ଼ି କାଖେଇଲା । ମୁହାଣରେ କବାଟଟାକୁ ଆଡ଼କରି ଠିଆ କରିଦେଇ ଢେଙ୍କିଟା ଠେକେଇ ଦେଲା । ଆଉ ପିଠିଦେଇ କବାଟଟାକୁ ପେଲିଧଇଲା । ତାହା ବାଦ ପାଟିକଲା, "ପକାଅ ମାଟି, ପକାଅ ମାଟି ।" କେବଳ ଡାକୁଛି, "ପକାଅ ମାଟି, ପକାଅ ମାଟି, ପକାଅ ମାଟି ।" କବାଟ ଦୁଇ ପାଖରୁ ଶ' ଶ' ମାଟି ଝୁପ୍ଝୁପ୍ ପଡୁଛି, ଅନନ୍ତା ଗୁଡ଼ିଯାଏ ମାଟି ହେଲଣି । ଡାକୁଛି,

ଅନନ୍ତା ବେକ ପୋତ ଗଲାଣି; ସେଥିକି ତାର ନଜର ନାହିଁ । ଯେତେବେଳେ ଓଠ କଡରେ ମାଟି ପଡ଼ିଲା—ଦୁଇଥର ଡାକଦେଲା, "ହରିବୋଲ, ଧାଅ, ମାଟି ପକାଅ ।" ଆଉ ଅନନ୍ତା ପାଟି ଶୁଭିଲା ନାହିଁ । ମାଟି ସେଥିପରେ ପଡୁଛି । ପାଣି ସୁଅଟା ବନ୍ଦ ହୋଇଗଲା । ଲୋକମାନଙ୍କର ଭରସା ହେଲା, ଟିକିଏ ନିଶ୍ୱାସ ପକାଇଲେ । ତେତେବେଳେ ଖୋଜିଲେ 'ଅନନ୍ତା ନାହିଁ ?' ଆଉ ଅନନ୍ତା ? ତା ମୁଣ୍ଡ ଉପରେ ଦୁଇ ହାତ ମାଟି । ଡାକ ପଡ଼ିଲା—"ଧନ୍ୟ ଧନ୍ୟ ଗଣ୍ଡିପୁଅ ଅନନ୍ତା !" ପିଲା, ବୁଢା, ମାଇକିନିଆ, ମର୍ଦ ଗାଁର ହଜାର ଲୋକ ସମସ୍ତେ ହରିବୋଲ ଦେଉଛନ୍ତି; ସମସ୍ତେ କହୁଛନ୍ତି—"ଧନ୍ୟ ଧନ୍ୟ ଗଣ୍ଡିପୁଅ ଅନନ୍ତା ?" ଦଇବ ଯୋଗେ କ'ଣ ଦେଲା କି ବର୍ଷା ବନ୍ଦ । ନଈକୁ ଫୁଟେ ପାଣି ଝସିପଡ଼ିଲାଣି । ଅନନ୍ତା ମା ପିଣ୍ଡାରେ ବସିଥିଲା । ଦୂର ଆନନ୍ଦ ଶୁଣି କହିଲା, "କ'ଣ ହେଲା ଦେଖେ । ପୁଅଟା ବି ଆସିଲା ନାହିଁ, ଡାକ ଅଣେ ।" ତା ସ୍ୱାମୀର ଠେଙ୍ଗା କାନ୍ଧରେ ପକାଇଲା । ଘର ଦୁଆରଟା କିଳିଦେଇ ବାହାରିଲା । ଯେମିତି ବାଣ୍ଡରେ ଯାଉଛି—ଶୁଣିଲା ଯେ ସମସ୍ତେ କହୁଛନ୍ତି, ଧନ୍ୟ ଧନ୍ୟ ଅନନ୍ତା !" ସମସ୍ତେ ତା ଗୋଡ ତଳେ ପଡ଼ି "ଧନ୍ୟ ଧନ୍ୟ ତୋ ପୁଅ !" ସିଂହାଣୀ ସଳଖେ ସଳଖେ ଭୂଠ କଡକୁ ଚାଲିଗଲା । ସବୁ ଶୁଣିଲା, କାହାକୁ କିଛି କହିଲା ନାହିଁ । ବନ୍ଧ ଚାରିପାଖେ ବୁଲି ଦେଖିଲା । ବନ୍ଧ ମଝିକୁ ଅନାଉଛି, ଚାରିପାଖ ବୁଲୁଛି । ଭୂଠ ମଝିକୁ ନଜର ଅଛି; ନଈ ଆଡକୁ ପିଠି । ବନ୍ଧ ତଳେ ଯେ ଦଶହାତ ପାଣି ତାକୁ ତ ସେ କଥା ଅଜଣା । ଯେମିତି ନଈ ଆଡ଼କୁ ବୁଲି ଯାଇଛି, ଝପାତ୍ କରି ଗୋଟାଏ ଶବ୍ଦ ହେଲା । 'ହାଁ କ'ଣ ହେଲା' କହି ଲୋକମାନେ ଧାଇଁ ଚାରିଟା ମଶାଲ ଆଲୁଅ ନଈକୁ ଦେଖାଇଲେ । କୂଳଠାରୁ ପାଞ୍ଚହାତ ଦୂରରେ ପାଣି ଭିତରେ ଗୋଟାଏ ଗାତରେ ମେଞ୍ଚାଏ ଫେଣ ଭଉଁରୀଟିଏ ବୁଲୁଛି, ଦଶହାତ ତଳକୁ ଖଣ୍ଡିଏ ବାଉଁଶ ବାଡ଼ି ଭାସିଯାଉଛି ।

---

# ଅରୁଣା

—ଦୟାନିଧି ମିଶ୍ର

## ପ୍ରଥମ ପରିଚ୍ଛେଦ

"କଥଂ ନିଗଡ଼—ସଂୟତାଽପି । ଦ୍ରୁତଂ
ନୟାମି ଭବନ୍ତମିତଃ—" (ରତ୍ନାବଳୀ)

ପ୍ରାୟ ଅଠାଇଶ ବର୍ଷ ପୂର୍ବେ ସମ୍ବଲପୁର ଦୁର୍ଗର ଉତ୍ତର-ପଶ୍ଚିମ ସୀମାନ୍ତବର୍ତ୍ତୀ ସିଂଘୋଡ଼ା ଗିରିସଙ୍କଟ ନିକଟରେ ଜଣେ ଅଶ୍ୱାରୋହୀ ସତର୍କ ଭାବରେ ଚତୁର୍ଦ୍ଦିଗ ନିରୀକ୍ଷଣ କରି ଅଶ୍ୱଚାଳନା କରୁଥିଲେ । ଅଶ୍ୱାରୋହୀଙ୍କ ବୟସ ୩୫ ବର୍ଷ ହେବ । ତାଙ୍କ ସର୍ବାଙ୍ଗ ଲୌହବର୍ମାଚ୍ଛାଦିତ; ମସ୍ତକରେ ହୀରକ-ଖଚିତ ଉଷ୍ଣୀଷ, ମୁଖ ବୀରତ୍ୱ-ବ୍ୟଞ୍ଜକ ଓ ଉତ୍ସାହପୂର୍ଣ୍ଣ, ଶରୀର ସୌଷ୍ଠବାନ୍ୱିତ ଓ ପୂର୍ଣ୍ଣାୟତନ । ଅଶ୍ୱାରୋହୀ ଗିରିସଙ୍କଟ ନିକଟକୁ ଯାଇ କିଛିକ୍ଷଣ ଅଶ୍ୱର ଗତିରୋଧ କଲେ ଏବଂ ମନ ମଧ୍ୟରେ କ'ଣ ଭାବି ଥରେ ପଛ ଆଡ଼କୁ ଅନାଇଲେ । ସେତେବେଳକୁ ସୂର୍ଯ୍ୟ ଅସ୍ତପ୍ରାୟ । ଅସ୍ତାଚଳ-ଗମନୋନ୍ମୁଖ ସୂର୍ଯ୍ୟଦେବ ସ୍ୱର୍ଣ୍ଣକିରଣରେ ପର୍ବତଗାତ୍ରକୁ ରଞ୍ଜିଣି ବୃକ୍ଷ-ଲତା ପରିଶୋଭିତ ଭୂଧରକୁ ଅପୂର୍ବ ଶୋଭାରେ ବିଭୂଷିତ କରୁଅଛନ୍ତି । ସନ୍ଧ୍ୟାଗମ ଦେଖି ପକ୍ଷୀମାନେ ସ୍ୱ ସ୍ୱ କୁଳାୟ ଅଭିମୁଖେ ପ୍ରତ୍ୟାବୃତ୍ତ ହେଉଛନ୍ତି । ମୃଗମାନେ ଚଞ୍ଚଳପଦ ବିକ୍ଷେପରେ ଅରଣ୍ୟରେ ମର୍ମର ଶବ୍ଦ ସୃଷ୍ଟି କରି ଭୟାକୁଳ ଚିତ୍ତରେ ବିଚରଣ କରୁଅଛନ୍ତି ।

ଅଶ୍ୱାରୋହୀ ଅଶ୍ୱ-ପୃଷ୍ଠରେ ଆରୂଢ଼ ହୋଇ କିଛିକ୍ଷଣ ପ୍ରକୃତିର ସାନ୍ଧ୍ୟକାଳୀନ ଲୀଳା ଦେଖିବାକୁ ଲାଗିଲେ । ପରେ ଅରଣ୍ୟକୁ ଲକ୍ଷ୍ୟ କରି ଶଙ୍ଖଧ୍ୱନି କଲେ । ଶଙ୍ଖଧ୍ୱନି ହେବା ମାତ୍ରକେ ଅରଣ୍ୟ ମଧ୍ୟରୁ ବହୁସଂଖ୍ୟକ ଅଶ୍ୱାରୋହୀ ଓ ପଦାତିକ ନିର୍ଗତ ହେଲେ ଏବଂ ସନ୍ତୁଷ୍ଟ ନୟନରେ ଉପରୋକ୍ତ ଅଶ୍ୱାରୋହୀଙ୍କ ଆଡ଼େ ଅନାଇବାକୁ ଲାଗିଲେ । ଅଶ୍ୱାରୋହୀ ନୀରବରେ ଅଗ୍ରସର ହେଲେ । ତାଙ୍କ ମୁଖ ଅଧୁନା ଗମ୍ଭୀର, ମନ ଚିନ୍ତାକୁଳ, ନବାଗତ ସୈନିକମାନେ ତାହାଙ୍କର ଅନୁସରଣ କରିବାକୁ ଲାଗିଲେ, ସେମାନଙ୍କ ପଛେ ପଛେ ଭାରବାହୀ ଗର୍ଦ୍ଦଭ ଏବଂ ମହିଳାମାନେ ରକ୍ଷୀ-ପରିବେଷ୍ଟିତ ହୋଇ ଯିବାକୁ ଲାଗିଲେ । କିଛି ଦୂର ଗଲାପରେ ଅଶ୍ୱାରୋହୀ ପୁଣି ଅଶ୍ୱର ଗତିରୋଧ କଲେ । ସେତେବେଳକୁ ସୂର୍ଯ୍ୟାସ୍ତ ହୋଇ ସାରିଲାଣି । ନିଶା ଆଗମନ ଦେଖି ଅଶ୍ୱାରୋହୀଙ୍କ ମନ ଆହୁରି ଚିନ୍ତାକୁଳ ହେଲା । ସେ କିଛିକ୍ଷଣ ନୀରବରେ ରହି କର୍ତ୍ତବ୍ୟ ସ୍ଥିର କରିବାରେ ଲାଗିଲେ ।

ହଠାତ୍ ପଶ୍ଚାଦ୍ଦେଶରୁ "ଜୟ ସମଲାଈର ଜୟ" ଶବ୍ଦ ଶ୍ରୁତିଗୋଚର ହେଲା । ବହୁସଂଖ୍ୟକ ଅଶ୍ୱାରୋହୀ ପର୍ବତରୁ ଅବତରଣ କରି ମରହଟ୍ଟା ସେନାଙ୍କୁ ଆକ୍ରମଣ କଲେ । ମରହଟ୍ଟାମାନେ ଏପରି ଅତର୍କିତ ଭାବରେ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ପ୍ରମାଦ ଗଣିଲେ । ବିଶେଷତଃ ସେତେବେଳକୁ ସେମାନେ ଗିରିସଙ୍କଟ ଭିତରକୁ ଆସି ସାରିଲେଣି । ଏ ଆଡ଼େ ଘୋର ତାମସୀ ରଜନୀ, ତା'ପରେ ପୁଣି ଅଜ୍ଞାତ ପ୍ରଦେଶ । ଏପରି ଅବସ୍ଥାରେ ସେମାନେ ହଠାତ୍ ଶତ୍ରୁର ସମ୍ମୁଖୀନ ହୋଇ କ'ଣ କରିବେ, କିଛି ଠିକ୍ କରି ପାରିଲେ ନାହିଁ । କିନ୍ତୁ ମରହଟ୍ଟା ଜାତି ସହଜରେ ଭୀତ ହେବାର ଜାତି ନୁହନ୍ତି । ସେମାନେ କପଟଯୁଦ୍ଧରେ ପଟୁ । ଶତ୍ରୁର ଏପରି ଶକ୍ତି ଦେଖି ସେତେବେଳେ ଯୁଦ୍ଧ କରିବା ଅନୁଚିତ ମନେକରି ସେମାନେ ପୃଷ୍ଠଭଙ୍ଗ ଦେବାର ସ୍ଥିର କଲେ । ଶତ୍ରୁମାନେ ସେମାନଙ୍କୁ ପଳାୟନ-ତତ୍ପର ଦେଖି ପଶ୍ଚାଦ୍ଧାବନ କଲେ ଏବଂ ଅବିରତ ଶର ନିକ୍ଷେପ ଦ୍ୱାରା ଅନେକଙ୍କୁ ହତାହତ କଲେ । କିନ୍ତୁ ମରହଟ୍ଟାମାନେ ଶରନିକ୍ଷେପ ପ୍ରତି ଭ୍ରୂକ୍ଷେପ ନ କରି ଗନ୍ତବ୍ୟ ପଥରେ ଅଗ୍ରସର ହେଲେ । ସେମାନେ ନିଜେ ପଳାଇବାକୁ ସମର୍ଥ ହେଲେ ସୁଦ୍ଧା ପଶ୍ଚାଦ୍‌ଗାମୀ ମହିଳା ପ୍ରଭୃତିଙ୍କୁ ରକ୍ଷାକରି ପାରିଲେ ନାହିଁ । ସେ ସବୁ ଶତ୍ରୁମାନଙ୍କ ହସ୍ତଗତ ହେଲେ । ଶତ୍ରୁମାନେ ମରହଟ୍ଟାମାନଙ୍କ ସମ୍ପତ୍ତି ଲୁଟି କରିବାକୁ ଲାଗିଲେ ।

କିଛିକ୍ଷଣ ପରେ ଜଣେ ପଞ୍ଚବିଂଶତି-ବର୍ଷୀୟ ଯୁବକ ଅଶ୍ୱ-ପୃଷ୍ଠରେ ପର୍ବତ ମଧ୍ୟରୁ ବାହାରି ସେମାନଙ୍କୁ ଲୁଣ୍ଠନ କାର୍ଯ୍ୟରୁ ନିବୃତ୍ତ କଲେ । ତାଙ୍କ ଆଦେଶମତେ ତାଙ୍କ ଅନୁଚର-ମାନେ ଶତ୍ରୁର ପଶ୍ଚାଦ୍ଧାବନ-କାର୍ଯ୍ୟରୁ ବିରତ ହୋଇ ଅରଣ୍ୟ ଭିତରକୁ ଚାଲିଗଲେ । ଯୁବକ କେତେଜଣ ବିଶ୍ୱସ୍ତ ଅନୁଚରଙ୍କୁ ଡାକି ଆପନ୍ନ ମରହଟ୍ଟାରମଣୀମାନଙ୍କୁ ସେମାନଙ୍କ ତତ୍ତ୍ୱାବଧାନରେ ମରହଟ୍ଟା-ସେନାପତିଙ୍କ ନିକଟକୁ ପ୍ରେରଣ କଲେ । କିନ୍ତୁ ଜଣେ ପଞ୍ଚଦଶ ବର୍ଷୀୟା ଯୁବତୀକୁ ବନ୍ଦୀକରି ରକ୍ଷୀଗଣ ସମଭିବ୍ୟାହାରରେ ନିଜ ଦୁର୍ଗକୁ ପଠାଇ ନିଜେ ଦୁର୍ଗାଭିମୁଖରେ ଅଗ୍ରସର ହେଲେ । ଉକ୍ତ ଯୁବତୀ ସଙ୍ଗେ ଜଣେ ଦାସୀ ସୁଦ୍ଧା ଇଚ୍ଛାପୂର୍ବକ ବନ୍ଦୀ ହେଲା ।

ଗିରି-ଶିଖରସ୍ଥିତ ଦୁର୍ଗ ଭିତରକୁ ଯାଇ ଯୁବକ ଉପରୋକ୍ତ ଯୁବତୀକୁ ସ୍ୱ-ଶିବିରକୁ ଡକାଇଲେ । ଯୁବତୀ ସଙ୍ଗରେ ଦାସୀ ମଧ୍ୟ ଆସିଲା । ଯୁବତୀକୁ ଦେଖି ଯୁବକ କହିଲେ, "ସେନାପତି-ନନ୍ଦିନୀ ! ଓଡ଼ିଆମାନଙ୍କ ଆଚରଣ ଦେଖି ରୁଷ୍ଟ ହେବେ ନାହିଁ । କ୍ଷତ୍ରିୟମାନେ ଯୁଦ୍ଧରେ ଜୟଲାଭ କରି ଶୂନ୍ୟହସ୍ତରେ ପ୍ରତ୍ୟାବୃତ୍ତ ହୁଅନ୍ତି ନାହିଁ । ଏଣୁ ଆଜି ସେନାପତି ନନ୍ଦିନୀ ଏ ଦୁର୍ଗରେ ବନ୍ଦିନୀ । କିନ୍ତୁ ତୁମ୍ଭର ଭୟ କରିବାର କୌଣସି କାରଣ ନାହିଁ । ଦୁର୍ଗରେ ତୁମ୍ଭଙ୍କୁ ଯଥୋଚିତ ସମ୍ମାନ ଦିଆଯିବ ।"

ଯୁବକଙ୍କ କଥା ଶୁଣି ଯୁବତୀ ନୀରବରେ ତଳକୁ ମୁହଁକରି କାନ୍ଦିବାରେ ଲାଗିଲା । ଦାସୀ କହିଲା, "ଆପଣ ଆପଣଙ୍କ କାର୍ଯ୍ୟ କରିଛନ୍ତି । ସେଥିପାଇଁ ଆମ୍ଭେମାନେ ଆପଣଙ୍କୁ ନିନ୍ଦା କରୁ ନାହୁଁ । କିନ୍ତୁ ମରହଟ୍ଟା ଶିବିରରେ କି ଅଭାବ କିଛି ନ ଥିଲା ?"

"ଆଉଯାଉରେ । କିନ୍ତୁ ସେଥିରେ ଆମର ଲୋଭ ନାହିଁ । କ୍ଷତ୍ରିୟ ଜାତି ସ୍ତ୍ରୈଣ କରେ ନାହିଁ ।"

"ସେନାପତିନନ୍ଦିନୀଙ୍କୁ ଏପରି ବଳପୂର୍ବକ ଆଣିବା ଶୈରର କାର୍ଯ୍ୟ ନୁହେଁ କି ? ଆପଣ ବୀର—ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରିଛନ୍ତି । କିନ୍ତୁ ରମଣୀ ଉପରେ ଅତ୍ୟାଚାର ବୀରର କାର୍ଯ୍ୟ ନୁହେଁ ।"

"ରମଣୀ ଉପରେ କୌଣସି ଅତ୍ୟାଚାର ହୋଇନାହିଁ । ବୀରନାରୀ ବୀରଭୋଗ୍ୟା । ସେନାପତି ନନ୍ଦିନୀ ବୀରରମଣୀ; ସେ ବୀର-ପୁରୁଷ-ହସ୍ତରେ ନ୍ୟସ୍ତ ହେବାର ଦେଖିଲେ ସୁଖୀ ହେବ ।"

"ତାଙ୍କ ହୃଦୟ ରାଜ୍ୟରେ ରାଜା ହେବାପାଇଁ ମରହଟ୍ଟା ବୀର ଅଛନ୍ତି । ଏଠାରେ ରହିଲେ ତାଙ୍କ ମନରେ ଦୁଃଖଛଡ଼ା ସୁଖ ହେବ ନାହିଁ ।"

"ଯଦି ସେପରି ହୁଏ, ତାଙ୍କ ମନରେ କଷ୍ଟ ଦେବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଏବେଠାରୁ ତାଙ୍କୁ ନିରାପଦରେ ତାଙ୍କ ପିତାଙ୍କ ନିକଟକୁ ପଠାଇ ଦେବି । ଓଡ଼ିଆ ଜାତି ଅବଳା ପ୍ରତି ସମ୍ମାନ ଦେଖାଇ ଜାଣେ, ସେନାପତିନନ୍ଦିନୀ ପିତୃ ଶିବିରରେ ଥାଇ ଦେଖିବେ ଯେ, ଓଡ଼ିଆ ବୀର ମରହଟ୍ଟାବୀର ଅପେକ୍ଷା ନିକୃଷ୍ଟ ନୁହେଁ ।"

ଯୁବକର ଶେଷ ବାକ୍ୟ ଶୁଣି ଯୁବତୀ ଲୋତକ ସମ୍ବରଣ କରି ତାଙ୍କ ଆଡ଼କୁ ଅନାଇଲା । ଯୁବକଙ୍କ ମୁଖରେ ଉଦାରତାର ସ୍ପଷ୍ଟ ଚିହ୍ନ ଦେଖି ସେ ମୁଗ୍ଧ ହୋଇଗଲା । ଇତ୍ୟବସରରେ ଯୁବକଙ୍କ ଚକ୍ଷୁ ସହିତ ତାହାର ଚକ୍ଷୁ ମିଳିତ ହେଲା । ସେ ଲଜ୍ଜାରେ ତଳକୁ ଅନାଇବାକୁ ଲାଗିଲା । ଯୁବକଙ୍କ ପ୍ରତି ପୂର୍ବେ ଯେ ବିରକ୍ତି ଜନ୍ମିଥିଲା, ତାହା କେଉଁଆଡ଼େ ଉଭେଇ ଗଲା । ତାହାର ଶରୀରର ପ୍ରତ୍ୟେକ ଶିରାରେ ଅନନୁଭୂତ ତଡ଼ିତ୍-ପ୍ରବାହ ବହିବାକୁ ଲାଗିଲା । ଯୁବତୀର ଭାବାନ୍ତର ଦେଖି ଯୁବକ କହିଲେ, "ଯଦି ସେନାପତିନନ୍ଦିନୀଙ୍କ ଇଚ୍ଛା ହୁଏ, ତାହାହେଲେ ତାଙ୍କୁ ଅନତିବିଳମ୍ବେ ପିତୃ-ସମୀପକୁ ପଠାଇବାର ବନ୍ଦୋବସ୍ତ କରିବି ।"

ବାନ୍ଦୀ ଉତ୍ତର ଦେବାକୁ ଅସମର୍ଥ ହୋଇ ଯୁବତୀର ମୁଖ ଆଡ଼କୁ ଅନାଇଲା । ତାହାର ମନର ଭାବ ବୁଝିପାରି ଯୁବତୀ ବିପଦରେ ପଡ଼ିଲା । ଯୁବକଙ୍କ ପ୍ରତି ଅଲକ୍ଷିତରେ ତାର ଆନ୍ତରିକ ଶ୍ରଦ୍ଧା ଜାତ ହୋଇଛି । ତାଙ୍କୁ ଛାଡ଼ିଯିବା ଅଧୁନା ଏକାବେଳକେ ଅସମ୍ଭବ । ଏଆଡ଼େ ପୁଣି ଶତ୍ରୁ ଦୁର୍ଗରେ ବନ୍ଦୀହୋଇ ରହିବା ଅସହ୍ୟ । ଯୁବତୀକୁ ଆଉ କିଛି ବାଟ ଦିଶିଲା ନାହିଁ । ପରେ ସେ ବଦ୍ଧ କଣ୍ଠରେ କହିଲା, "ଯଦି ମରହଟ୍ଟା ସେନାପତିଙ୍କ ବାହୁରେ ବଳ ଥାଏ, ସେ ନିଜେ ଆସି ମତେ ମୁକୁଳାଇବେ । ମରହଟ୍ଟା-ରମଣୀ ଶତ୍ରୁର କୃପାର ପାତ୍ର ହେବାକୁ ସ୍ୱୀକାର କରେ ନାହିଁ ।"

ତାହାର ଏ କଥା ଶୁଣି ଯୁବକ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ସେ ମନେ ମନେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ପରେ ଉଭୟଙ୍କ ରହିବାର ସୁବନ୍ଦୋବସ୍ତ କରି ଦୁର୍ଗରକ୍ଷାର୍ଥେ ଦୁର୍ଗ ଦ୍ୱାରଆଡ଼େ ଅଗ୍ରସର ହେଲେ ।

# ଦ୍ୱିତୀୟ ପରିଚ୍ଛେଦ

## ସଂକ୍ଷିପ୍ତ ପରିଚୟ

" — ନ ପାରିଲେ ଜିଣି,
ଯୁଦ୍ଧ କ୍ଷେତ୍ରେ ମରିବା ତ ନିଜ ହାତ କଥା ।" [ମହାଯାତ୍ରା]

ମରହଟ୍ଟା-ସେନାପତି-ନନ୍ଦମାଙ୍କୁ ଗିରି ଦୁର୍ଗରେ ଛାଡ଼ି ସମ୍ବଲପୁରର ତଦାନୀନ୍ତନ ଇତିହାସ ବିଷୟରେ ଆଲୋଚନା କଲେ ବୋଧହୁଏ ଅସଙ୍ଗତ ହେବନାହିଁ । ଉପନ୍ୟାସ-ରସିକ ପାଠକମାନେ ନୀରସ ଇତିବୃତ୍ତ ବୃତ୍ତାନ୍ତ ଜାଣିବାକୁ ଅନିଚ୍ଛୁକ ହୋଇ ପାରନ୍ତି । କିନ୍ତୁ ଲେଖକ ନାଚାର । ଗଳ୍ପକୁ ପୂର୍ଣ୍ଣାଙ୍ଗ କରିବାକୁ ଗଲେ ଇତିହାସ ବିଷୟରେ ଦୁଇପଦ କଥା କହିବା ଦରକାର, ନୋହିଲେ ଏ ଗଳ୍ପର ଐତିହାସିକ ବ୍ୟକ୍ତିମାନେ ଆଂଶିକ ରୂପେ ଅପରିଚିତ ହୋଇ ରହିଯିବେ । ଏଣୁ ପାଠକମାନେ ଅନୁଗ୍ରହ କରି କ୍ଷମା କରିବେ ।

ଅଷ୍ଟାଦଶ ଶତାବ୍ଦୀରେ ଭାରତରେ ମରହଟ୍ଟାମାନଙ୍କ ଅପ୍ରତିହତ ପ୍ରଭାବ ବିସ୍ତାରିତ ହୋଇଥିଲା । ସେମାନେ ଭାରତର ଏକ ପ୍ରାନ୍ତରୁ ଅପରପ୍ରାନ୍ତ ଯାଏଁ ସମର ଘୋଷଣାକରି ଭାରତରେ ହିନ୍ଦୁ ସାମ୍ରାଜ୍ୟ ସଂସ୍ଥାପନ କରିବାକୁ ପ୍ରୟାସୀ ହୋଇଥିଲେ । କିନ୍ତୁ ଏ ସମୟରେ ସେମାନଙ୍କ ପତନର ସୂତ୍ରପାତ ହୋଇଥିଲା ମଧ୍ୟ । ମରହଟ୍ଟା ରାଜ୍ୟ ପ୍ରତିଷ୍ଠାତା ଶିବାଜୀଙ୍କ ନୀତି ଛାଡ଼ି ସେମାନେ ହିନ୍ଦୁ ରାଜ୍ୟରେ ମଧ୍ୟ ନୃଶଂସ ଦସ୍ୟୁବୃତ୍ତି ଆଚରଣ କରୁଥିଲେ । ଅର୍ଥଲୋଭରେ ପଡ଼ି ସେମାନେ ଭାରତର ପବିତ୍ର ବକ୍ଷରେ ରକ୍ତର ନଦୀ ପ୍ରବାହିତ କରୁଥିଲେ ।

ଏହି ସମୟରେ ସମ୍ବଲପୁର ରାଜ୍ୟର ପ୍ରଶାନ୍ତ ମୁଖରେ ସ୍ୱାଧୀନତାର ସୁମଧୁର ହାସ୍ୟ ପ୍ରତିଭାତ ହେଉଥିଲା । ସମ୍ବଲପୁର ବାଣିଜ୍ୟରେ, ବୀର୍ଯ୍ୟରେ, ଐଶ୍ୱର୍ଯ୍ୟରେ ଭାରତର ଅନ୍ୟାନ୍ୟ ସ୍ୱାଧୀନ ରାଜ୍ୟମାନଙ୍କ ସମକକ୍ଷ ହୋଇ ସଭ୍ୟ ଜଗତରେ ମୁଖ ଦେଖାଇବାକୁ ସମର୍ଥ ହୋଇଥିଲା । ସମ୍ବଲପୁରର ହୀରକ ବାଣିଜ୍ୟ ଭାରତବର୍ଷର ତଦାନୀନ୍ତନ ଗଭର୍ଣ୍ଣର ଲର୍ଡ କ୍ଲାଇଭଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସମ୍ବଲପୁର ହୀରାପାଇଁ ଚିରକାଳ ପ୍ରସିଦ୍ଧ । Ptolemy, Pliny ପ୍ରଭୃତି ବୈଦେଶିକ ଲେଖକମାନେ ଏହି ହୀରା ବିଷୟରେ ଅନେକ କଥା ଲେଖି-ଅଛନ୍ତି । ପ୍ରସିଦ୍ଧ ଇତିହାସ-ଲେଖକ Gibbon ଲେଖି ଅଛନ୍ତି—"As well as we can

compare ancient with modern geography, Rome was supplied with diamond from the mine of Sambalpur.........'' ସେ ତ ପୁରାତନ ଯୁଗର କଥା । ଆମ୍ଭେମାନେ ଯେଉଁ ସମୟର କଥା କହୁଁଅଛୁଁ, ସେହି ସମୟରେ ମଧ୍ଯ ସମ୍ବଲପୁରର ହୀରକ-ବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା । ହାୟ ! ଆଜି ସେ ହୀରାକୁଦ ଅଛି, ସେହି ସମ୍ବଲପୁର ଅଛି; ସେହି ମହାନଦୀ କଳକଳ ରବରେ ସମ୍ବଲପୁରବାସୀଙ୍କୁ ମୁଗ୍ଧକରି ମାତୃ-ସ୍ତନ-ଧାରା ପ୍ରାୟେ ସମ୍ବଲପୁରର ବକ୍ଷରେ ପ୍ରବାହିତ ହେଉଅଛି । କିନ୍ତୁ ସେ ହୀରକ କାହିଁ ! ସେ ବୀର ପୁରୁଷମାନେ କାହାନ୍ତି ! ହାୟ, ସେ ଦିନ ଆଉ ଏ ଦିନ ।

ଖ୍ରୀଷ୍ଟାବ୍ଦ ୧୭୭୦ ସାଲଯାଏଁ ସମ୍ବଲପୁରରେ ଶତ୍ରୁର ନାମ ସୁଦ୍ଧା ଶୁଣା ନ ଥିଲା । କିନ୍ତୁ ଯେତେବେଳେ ମରହଟ୍ଟାମାନେ ଓଡ଼ିଶାର ବିପୁଳ ଐଶ୍ୱର୍ଯ୍ୟ ପ୍ରତି ଆକୃଷ୍ଟ ହୋଇ ଓଡ଼ିଶାରୁ ଚଉଠ ସଂଗ୍ରହ କରିବା ଆଶାରେ ହିନ୍ଦୁରାଜ୍ୟରେ ସୁଦ୍ଧା ଲୁଣ୍ଠନ ଆରମ୍ଭ କଲେ । ଓଡ଼ିଶାର ଦକ୍ଷିଣ ବାହୁରୂପୀ ସମ୍ବଲପୁର ରାଜ୍ୟ ମରହଟ୍ଟା ବର୍ଗୀମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ଥିଲା । ସମ୍ବଲପୁରର ବିଖ୍ୟାତ ନରପତି ଅଭୟ ସିଂହଙ୍କ ଶାସନ କାଳରେ ମରହଟ୍ଟାମାନଙ୍କ ଆକ୍ରମଣର ସୂତ୍ରପାତ ହେଲା । କେତେଗୋଟି ମରହଟ୍ଟା ପୋତ ତୋପଦ୍ୱାରା ବୋଝାଇ ହୋଇ କଟକରୁ ମହାନଦୀ ବକ୍ଷରେ ନାଗପୁର ଅଭିମୁଖରେ ଯାତ୍ରା କରୁଥିଲା । ଯେତେବେଳେ ପୋତ ଗୁଡ଼ିକ ସମ୍ବଲପୁରର ନିକଟବର୍ତ୍ତୀ ହେଲା, ଅଭୟ ସିଂହ ତାଙ୍କର ପ୍ରଧାନମନ୍ତ୍ରୀ ଆକବର ରାୟଙ୍କ ପରାମର୍ଶ ଅନୁସାରେ ଉକ୍ତ ପୋତଗୁଡ଼ିକୁ ମହାନଦୀ ବକ୍ଷରେ ନିମଜ୍ଜିତ କରି ତୋପସବୁ ଅଧିକାର କଲେ । ନାଗପୁରାଧିପତି ଏ ସମ୍ବାଦ ପାଇ କ୍ରୋଧରେ ଅଧୀର ହୋଇଗଲେ । ଅଭୟ ସିଂହଙ୍କୁ ସମୁଚିତ ଶାସ୍ତି ଦେବା ସକାଶେ ତାଙ୍କ ବିରୁଦ୍ଧରେ ବିପୁଳ ବାହିନୀ ପ୍ରେରଣ କଲେ । ଉକ୍ତ ବାହିନୀକୁ ପାଠକମାନେ ସିଙ୍ଘୋରା ଗିରି-ସଙ୍କଟରେ ଦେଖିଅଛନ୍ତି ଏବଂ ସେଠାରେ ଯାହା ଯାହା ଘଟିଲା, ତହିଁର ସବିସ୍ତୃତ ବିବରଣ ପୂର୍ବ ପରିଚ୍ଛେଦରେ ପ୍ରଦତ୍ତ ହୋଇଅଛି ।

ମରହଟ୍ଟାମାନଙ୍କ ତୋପସବୁ ଅଧିକାର କରି ଅଭୟସିଂହ ଦୁର୍ଗରକ୍ଷାର ସୁବନ୍ଦୋବସ୍ତ କରିବାକୁ ଲାଗିଲେ । ଅଠର ଗଡ଼ଜାତରୁ (୧) ସୁଶିକ୍ଷିତ ଓଡ଼ିଆ ସୈନିକମାନେ ଆସି ସମ୍ବଲପୁର ଦୁର୍ଗରେ ସମବେତ ହେଲେ, ସମ୍ବଲପୁରରେ ଉତ୍ସାହର ଲହରୀ ନାଚ ଉଠିଲା । ଗ୍ରାମେ ଗ୍ରାମେ ସମର ସମ୍ବାଦ ପ୍ରଚାରିତ ହେଲା । ମା' ସମ୍ଲେଶ୍ୱରୀଙ୍କ ରାଜ୍ୟରେ ଶାନ୍ତି ସଂସ୍ଥାପନ ସକାଶେ ଦୃଢ଼ପ୍ରତିଜ୍ଞ ହୋଇ ସମ୍ବଲପୁରବାସୀମାନେ ପ୍ରାଣର ମମତା ଭୁଲି "ହୀରାଖଣ୍ଡ

---

୧—କଳାହାଣ୍ଡି, ପାଟଣା, ସୋନପୁର, ରେଢ଼ାଖୋଲ, ବଉଦ, ବାମଣ୍ଡା, ଆଠମଲ୍ଲିକ, ଗାଙ୍ଗପୁର, ବଣାଇ, ଶକ୍ତି, ଶାରଙ୍ଗଗଡ଼ ପ୍ରଭୃତି ଅଠର ଗୋଟି ରାଜ୍ୟ ସମ୍ବଲପୁରର ଅଧୀନରେ ଥିଲା ।

ଛତ୍ରପତି ମହାରାଜ" (୧) ଅଭୟ ସିଂହଙ୍କ ଛତ୍ର ତଳେ ସମବେତ ହେବାକୁ ଲାଗିଲେ । ସେମାନଙ୍କ ଆହ୍ୱାନ କୋଳାହଳରେ ସମଗ୍ର ସମ୍ବଲପୁର ନିନାଦିତ ହୋଇ ସୁପ୍ତ ପ୍ରାଣରେ ସୁଦ୍ଧା ଜାଗରଣ-ମନ୍ତ୍ର ପଢ଼ିବାକୁ ଲାଗିଲା । ମା' ସମଲେଶ୍ୱରୀଙ୍କ ରଣ-ରଙ୍ଗିଣୀ ମୂର୍ତ୍ତି ଭୟଙ୍କର ହେଲା ।

ସ୍ଥଳ ପଥରେ ମରହଟ୍ଟାମାନଙ୍କ ଗତିରୋଧ କରିବାର ଉପଯୁକ୍ତ ସ୍ଥାନ ମଣି ଅଭୟ ସିଂହ ସିଂଘୋରା ଗିରି-ସଙ୍କଟକୁ ବହୁ ସଂଖ୍ୟକ ସୈନିକ ପ୍ରେରଣ କଲେ । ବହୁ-ଗିରି-ପରିଶୋଭିତ ସମ୍ବଲପୁରର ମାନରକ୍ଷା କରିଅଛୁ । ଆଜି ଅଭୟ ସିଂହ ନିଜେ ସମ୍ବଲପୁର-ଦୁର୍ଗରକ୍ଷାର ଭାରନେଇ ତାଙ୍କ ସେନାପତି ପୃଥ୍ୱୀସିଂହଙ୍କ ଅଧୀନରେ ଅନେକ ସୈନ୍ୟ ସିଂଘୋରାରେ ମରହଟ୍ଟାମାନଙ୍କ ଗର୍ବ ଚୂର୍ଣ୍ଣ କରିବା ନିକାଶେ ପଠାଇଥିଲେ ।

ପୃଥ୍ୱୀସିଂହ ସିଂଘୋରାକୁ ଆସି ପ୍ରଥମେ ଗିରି-ଶିଖର-ସ୍ଥିତ ଗୋଟିଏ ପାର୍ବତ୍ୟ ଦୁର୍ଗରେ ଆଶ୍ରୟ ଗ୍ରହଣ କଲେ । ସେଠାରେ ବହୁଦିନର ଖାଦ୍ୟ ସଂଗୃହୀତ ହେବା ସଙ୍ଗେ ସଙ୍ଗେ ଦୁର୍ଗ-ରକ୍ଷାର ମଧ୍ୟ ସୁବନ୍ଦୋବସ୍ତ ହେବାକୁ ଲାଗିଲା । ଦୁର୍ଗରେ ଅଳ୍ପ ସଂଖ୍ୟକ ସୈନିକ ରଖି ଅବଶିଷ୍ଟ ସୈନିକମାନଙ୍କୁ ପୃଥ୍ୱୀସିଂହ ଗିରିସଙ୍କଟର ସ୍ଥାନେ ସ୍ଥାନେ ଲୁଚାଇ ରଖିଲେ ଓ ଦୁର୍ଗ ପ୍ରାଚୀରରେ ଲତା-ଗ୍ରଥିତ ପ୍ରସ୍ତରଗୁଡ଼ିକୁ ଝୁଲାଇ ରଖିଲେ । ନିଜେ ଦକ୍ଷତା ସହକାରେ ସର୍ବତ୍ର ସେନା-ନିବେଶ ପର୍ଯ୍ୟବେକ୍ଷଣ କରି ସେ ମରହଟ୍ଟାମାନଙ୍କ ଆଗମନର ପ୍ରତୀକ୍ଷା କରିବାକୁ ଲାଗିଲେ ।

ମରହଟ୍ଟାମାନେ ଇତିହାସରେ କପଟ ଯୁଦ୍ଧ ନିମନ୍ତେ ବିଖ୍ୟାତ । ସେମାନେ ସମ୍ମୁଖ ସମରରେ କଦାପି ଶତ୍ରୁ ସଙ୍ଗେ ଯୁଦ୍ଧ କରନ୍ତି ନାହିଁ । ଏହି ନୀତି ସେମାନଙ୍କୁ ଭାରତରେ ଏକାଧିପତ୍ୟ ଦେଇଥିଲା । କିନ୍ତୁ ଯେଉଁଦିନ ସେମାନେ ଏ ନୀତି ପରିତ୍ୟାଗ କଲେ, ସେହି ଦିନଠାରୁ ସେମାନଙ୍କର ପତନର ଆରମ୍ଭ ହେଲା । ଯଦି ୧୭୬୩ ଖ୍ରୀଷ୍ଟାବ୍ଦରେ ସେମାନେ ପାନିପଥ ଯୁଦ୍ଧକ୍ଷେତ୍ରରେ ସମ୍ମୁଖ ସମରରେ ପ୍ରବୃତ୍ତ ହୋଇ ନ ଥାନ୍ତେ, ତାହାହେଲେ ଅହମ୍ମଦ ଶାହ ଅବ୍ଦାଲି ଭାରତକୁ ପଦଦଳିତ କରିପାରି ନ ଥାନ୍ତେ । ଆଜି ଭାରତବର୍ଷରେ ମରହଟ୍ଟାମାନଙ୍କ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥାନ୍ତା । କିନ୍ତୁ ବିଧାତାଙ୍କ ଇଚ୍ଛା କିଏ ଏଡ଼ି ପାରେ ?

ମରହଟ୍ଟା ସେନାପତି ରଘୁଜୀ ରାଓ କପଟ ଯୁଦ୍ଧରେ ପାରଦର୍ଶୀ ଥିଲେ । ସେ ସିଂଘୋରା ନିକଟକୁ ଆସି ଦେଖିଲେ ଯେ, ସାବଧାନ ଭାବରେ ଗିରିସଙ୍କଟ ପାର ନ ହେଲେ ବିପଦ ଅବଶ୍ୟମ୍ଭାବୀ । ତାଙ୍କ ସଙ୍ଗେ ବହୁ ସଂଖ୍ୟକ ସୈନିକ ଥିଲେ । ତାଙ୍କ ପରିବାର ମଧ୍ୟ ତାଙ୍କ ସଙ୍ଗେ ଯୁଦ୍ଧକୁ ଆସିଥିଲେ ।

---

(୧) ସମ୍ବଲପୁରର ନରପତି ବଳୀୟାର ସିଂହ ସ୍ୱୀୟ ବୁଦ୍ଧିମତ୍ତା ଓ ଶକ୍ତିର ପରିଚୟ ଦେଇ ଓଡ଼ିଶାର ଗଜପତି ମହାରାଜାଙ୍କଠାରୁ ଏ ଉପାଧିସହ ତାଙ୍କ କନ୍ୟାରତ୍ନ ଲାଭ କରିଥିଲେ । ଇତିହାସରେ ସମ୍ବଲପୁରର ଅଧିପତିମାନେ ଏହି ଉପାଧିରେ ପରିଚିତ ।

ଅରୁଣା ରଘୁଜୀ ରାଓଙ୍କ ଏକମାତ୍ର କନ୍ୟା । ରଘୁଜୀ ତାକୁ ଅତିଶୟ ସ୍ନେହ କରୁଥିଲେ । ଏବଂ ତାକୁ ଘଡ଼ିଏ ନ ଦେଖିଲେ ତାଙ୍କର ଆଖି ଅନ୍ଧାର ହୋଇ ଯାଉଥିଲା । ପିତାଙ୍କ ଢଙ୍ଗେ ରହି ଅରୁଣା ଯୁଦ୍ଧବିଦ୍ୟାରେ ନିପୁଣତା ଲାଭ କରିଥିଲା । ବୀରପ୍ରାଣା ଅରୁଣାର ହୃଦୟ ରଣଯାତ୍ରାର ନାମ ଶୁଣି ନାଚି ଉଠୁଥିଲା । ରଣ-କୋଲାହଳ, ରଣବାଦ୍ୟ, ରଣନୃତ୍ୟ ତାହାର ହୃଦୟକୁ ପ୍ରବଳ ବେଗରେ ଆକର୍ଷଣ କରୁଥିଲା । ବୟଃପ୍ରାପ୍ତା ହେବା ପରେ ସୁଦ୍ଧା ସେ ପିତାଙ୍କ ସଙ୍ଗେ ଯୁଦ୍ଧକୁ ଯାଉଥିଲା । ଏପରି ରଣ-ସଙ୍ଗିନୀ, ରଣ-ରଙ୍ଗିଣୀ କନ୍ୟାର ପିତୃତ୍ୱରେ ରଘୁଜୀ ରାଓ ଆପଣାକୁ ଯଥେଷ୍ଟରୂପେ ଗୌରବାନ୍ୱିତ ମନେ କରୁଥିଲେ । ଯେତେବେଳେ ରଘୁଜୀ ଅରୁଣା ସଙ୍ଗେ ଅଶ୍ୱାରୋହଣରେ ଯୁଦ୍ଧ କ୍ଷେତ୍ରକୁ ଯାଉଥିଲେ, ସେତେବେଳେ କନ୍ୟାର ଅପୂର୍ବ କାନ୍ତି ଦେଖି ଆପଣାକୁ ଭାଗ୍ୟବାନ ମଣୁଥିଲେ । ଅରୁଣାର ଅରୁଣ-ନଭ-ଆନନ, ସୁଗୋଲ-ବାହୁ-ଯୁଗଳ, ପ୍ରଶସ୍ତ ଲଲାଟ, ନିତମ୍ବସ୍ପର୍ଶୀ କେଶପାଶ ରଘୁଜୀଙ୍କ ମନରେ ଦଶପ୍ରହରଣଧାରିଣୀ ମହିଷାସୁର ମର୍ଦ୍ଦିନୀ ଜଗଦମ୍ବାଙ୍କ ମୂର୍ତ୍ତି ଅଙ୍କିତ କରୁଥିଲା । ତାଙ୍କ ଚକ୍ଷୁରୁ ସ୍ନେହାଶ୍ରୁ ନିର୍ଗତ ହେଉଥିଲା ।

ଯେଉଁଦିନ ରଘୁଜୀ ରାଓ ସିଙ୍ଘୋରା ଗିରିସଙ୍କଟରେ ଶତ୍ରୁ ଦ୍ୱାରା ଆକ୍ରାନ୍ତ ହେଲେ, ସେ ଦିନ ପ୍ରଭାତରେ ପୃଥ୍ୱୀ ସିଂହ ଅନ୍ତରାଳରେ ଥାଇ ଅରୁଣାଲୋକବିଭାସିତ ଅରୁଣାର ମୁଖକମଳ ଦେଖି ଚିତ୍ର ପୁତ୍ତଳିକାବତ୍ ଛିଡ଼ାହୋଇ ରହିଲେ । ଏପରି ସ୍ୱର୍ଗୀୟ କାନ୍ତି ସେ ଜୀବନରେ କେବେ ଦେଖି ନ ଥିଲେ । ଆଜି ମରହଟ୍ଟା-ଶିବିରରେ ମୂର୍ତ୍ତିମତୀ ସୌନ୍ଦର୍ଯ୍ୟ ରାଶି ଦେଖି ତାଙ୍କ ଚକ୍ଷୁ ଲାଗି ରହିଗଲା । ସେ ବିସ୍ମିତ ନେତ୍ରରେ ଅରୁଣାର ରୂପ ରାଶିର ପ୍ରଶଂସା କରିବାକୁ ଲାଗିଲେ । ଅରୁଣା-ପ୍ରାପ୍ତି-ଆଶା ତାଙ୍କ ହୃଦୟରେ ବଳବତୀ ହେଲା । ଏଣୁକରି ଯେତେବେଳେ ଓଡ଼ିଆ ବୀରମାନେ ମରହଟ୍ଟାମାନଙ୍କୁ ପରାସ୍ତ କଲେ, ପୃଥ୍ୱୀ ସିଂହ କୌଣସି ପଦାର୍ଥକୁ ସ୍ପର୍ଶ ନ କରି କେବଳ ଅରୁଣାକୁ ଦୁର୍ଗ ଭିତରକୁ ଆଣିଲେ ।

ଶତ୍ରୁ ଦୁର୍ଗରେ ଅରୁଣାର ବନ୍ଦୀ ହେବାର ସମ୍ବାଦ ଶୁଣି କନ୍ୟାବତ୍ସଳ ରଘୁଜୀ ରାଓ ଅତିଶୟ କାତର ହୋଇ ପଡ଼ିଲେ । ଯା'କୁ ଘଡ଼ିଏ ନ ଦେଖିଲେ ସେ ଜଗତକୁ ଶୂନ୍ୟମୟ ମଣୁଥିଲେ, ଆଜି ସେ ପ୍ରାଣ ପ୍ରତିମା ଅରୁଣା ଶତ୍ରୁ ହସ୍ତରେ ବନ୍ଦୀ ! ପୃଥ୍ୱୀ ସିଂହଙ୍କ ଏତାଦୃଶ ଆଚରଣ ଦେଖି ତାଙ୍କ ମନରେ ଅତିଶୟ କ୍ରୋଧ ଜାତ ହେଲା । ପୃଥ୍ୱୀ ସିଂହଙ୍କୁ ସମୁଚିତ ଶାସ୍ତି ଦେଇ କନ୍ୟାକୁ ନିସ୍ତାର କରିବାର ସ୍ଥିର କଲେ । ତାଙ୍କ ଆଦେଶ ଅନୁସାରେ ମରହଟ୍ଟା ଅଶ୍ୱାରୋହୀମାନେ ଦଳ ଦଳ ହୋଇ ଓଡ଼ିଆମାନଙ୍କ ରକ୍ତରେ ସ୍ୱୀୟ ତରବାରି ରଞ୍ଜିତ କରିବା ଆଶାରେ ଗିରିସଙ୍କଟରେ ପ୍ରବେଶ କଲେ । କିନ୍ତୁ ଗିରିସଙ୍କଟ ଏଡ଼େ ସଙ୍କୀର୍ଣ୍ଣ ଯେ, କେବଳ ଅଳ୍ପ ସଂଖ୍ୟକ ସୈନିକ ଭିତରକୁ ଯାଇ ପାରୁଥିଲେ । ସଙ୍କଟର ସ୍ଥାନେ ସ୍ଥାନେ ପ୍ରଚ୍ଛନ୍ନ ଓଡ଼ିଆ ସୈନିକମାନେ ସେମାନଙ୍କୁ ଅତର୍କିତ ଭାବରେ ଆକ୍ରମଣ କରି ପରାସ୍ତ କରୁଥିଲେ । ନିଶିଂଦୁର୍ଗ ମରହଟ୍ଟାମାନଙ୍କ ଦୁର୍ଗମ ହୋଇ ପଡ଼ିଲା । ରଘୁଜୀ ରାଓ ଅନେକ ଥର ସୈନ୍ୟ ପ୍ରେରଣ କଲେ, କିନ୍ତୁ ତାହାଙ୍କର ସକଳ ଚେଷ୍ଟା ବିଫଳ ହେଲା, ମରହଟ୍ଟାମାନେ ଶତ୍ରୁ ଦୁର୍ଗକୁ ଜିତିବା ତେଣେ ଥାଉ, ଦୁର୍ଗକୁ ଦେଖି ସୁଦ୍ଧା ପାରିଲେ ନାହିଁ ।

ପୃଥ୍ୱୀ ସିଂହଙ୍କ ଅପୂର୍ବ ରଣ ପାଣ୍ଡିତ୍ୟ ଦେଖି ବୀରହୃଦୟ ରଘୁଜୀ ରାଓ ତାହାଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ସେ ଜାଣନ୍ତି ଯେ, ଓଡ଼ିଆ ସୈନ୍ୟ ଅପେକ୍ଷା ତାଙ୍କ ସୈନ୍ୟ ଅନେକ ଗୁଣରେ ବେଶି; କିନ୍ତୁ ପୃଥ୍ୱୀ ସିଂହ ଏପରି କୌଶଳରେ ବ୍ୟୂହ ରଚନା କରୁଥିଲେ ଯେ, ବ୍ୟୂହ ଭେଦ କରିବା ରଘୁଜୀ ରାଓଙ୍କ ସାଧ୍ୟାତୀତ ହୋଇ ପଡ଼ିଲା, ସେ ଶତ ଚେଷ୍ଟା କଲେ ବି ଦୁର୍ଗ ନିକଟକୁ ଯାଇ ପାରିଲେ ନାହିଁ । ଦୁର୍ଗର ଏପରି ଦୁର୍ଗମତା ଦେଖି ତାଙ୍କ ମନରେ ଅତିଶୟ କଷ୍ଟ ହେଲା । ସେ ଯୁଦ୍ଧରେ କେବେ ପରାଜୟ ସ୍ୱୀକାର କରି ନ ଥିଲେ । ଆଜି ପୃଥ୍ୱୀ ସିଂହଙ୍କ ସଙ୍ଗେ ଅବିଶ୍ରାନ୍ତ ପାଞ୍ଚମାସ କାଳ ଯୁଦ୍ଧକରି ସୁଦ୍ଧା ସେ ଶତ୍ରୁ ଦୁର୍ଗ ଆକ୍ରମଣ କରି ପାରିଲେ ନାହିଁ । ସବୁବେଳେ ଅରୁଣାର ମୂର୍ତ୍ତି ତାଙ୍କ ଚକ୍ଷୁ ସମକ୍ଷରେ ନାଚିବାକୁ ଲାଗିଲା । ଯେତେବେଳେ ରଘୁଜୀ ଭାବନ୍ତି ଯେ ଅରୁଣା ଶତ୍ରୁ ହସ୍ତରେ ବନ୍ଦିନୀ, ସେତେବେଳେ ତାଙ୍କ ହୃଦୟ ଶୋକାକୁଳ ହୋଇଯାଏ, ଅରୁଣାମୁକ୍ତିସଙ୍କଳ୍ପ ତାଙ୍କ ହୃଦୟରେ ଜାଗ୍ରତ ହୁଏ । ଜୀବନର ସକଳ ଆଶା, ସକଳ ଭରସା ବିଲୁପ୍ତ ହୋଇଯାଏ ।

ଯୁଦ୍ଧର ଏପରି ଗତି ଦେଖି ରଘୁଜୀ ରାଓ ଠିକ୍ କଲେ ଯେ, ଏଥର ସେ ନିଜେ ଯାଇ ଗିରିସଙ୍କଟ ଭେଦ କରିବେ; ପ୍ରାଣର ମମତା ଭୁଲି ଶତ୍ରୁର ଆଚରଣର ପ୍ରତିହିଂସା ନେବେ । ପୃଥ୍ୱୀ ସିଂହ ରଘୁଜୀଙ୍କ ବାସନା ଚର ମୁଖରୁ ଶୁଣି ବିଶେଷ ସତର୍କ ଭାବରେ ଅବସ୍ଥାନ କରିବାକୁ ଲାଗିଲେ । ଗିରିସଙ୍କଟର ସ୍ଥାନେ ସ୍ଥାନେ ଓଡ଼ିଆ ସୈନିକମାନେ ପ୍ରଚ୍ଛନ୍ନ ଭାବରେ ରହି ଶତ୍ରୁର ଆଗମନ ପ୍ରତୀକ୍ଷା କରିବାକୁ ଲାଗିଲେ ।

# ତୃତୀୟ ପରିଚ୍ଛେଦ

## ପୃଥ୍ୱୀ ସିଂହ ଓ ଅରୁଣା

"ତା' ହୃଦକୁ ଆସେ ଯେବେ ନୈରାଶ୍ୟ ଦଉଡ଼ି,
ମାୟାବିନୀ ଆଶା ଦିଏ ତୁରିତେ ଘଉଡ଼ି ।" [କୀଚକବଧ]

"ମାଧବ ! ଆଜିକାଲି ଯୁଦ୍ଧର ଖବର ତ କିଛି ଜଣା ଯାଉନାହିଁ ।"

"ଘୋର ଯୁଦ୍ଧ ତ ଲାଗିଛି । ମରହଟ୍ଟାମାନେ ଯେତେଥର ଆସୁଛନ୍ତି, ତେତେଥର ପରାସ୍ତ ହେଉଛନ୍ତି । ଏ ଯୁଦ୍ଧ କେବେ ସରିବ, ଭଗବାନ୍ ଜାଣନ୍ତି ।"

"ଅତି ଅଦ୍ଭୁତ ବୀର ପୁରୁଷ ।"

"ମୁଁ ବି ସେଇଆ ଭାବୁଛି । ଇମିତି ଯୋଦ୍ଧା ମୁଁ କେବେ ଦେଖିନାହିଁ । କେତେ ମରହଟ୍ଟା ସୈନ୍ୟ ! ତଥାପି ଖାତିର୍ ନାହିଁ—ଖାଲି ଯୁଦ୍ଧ ! ଯୁଦ୍ଧ ଦେଖି ଦେଖି ମନ ବିରକ୍ତ ହୋଇଗଲାଣି ।"

"ଓଡ଼ିଆ ଜାତିରେ ଏପରି ବୀର ଅଛନ୍ତି ବୋଲି ମୁଁ ସ୍ୱପ୍ନରେ ସୁଧା ଭାବି ନ ଥିଲି ।"

"ତାଙ୍କ ବୀରତ୍ୱରେ ଯଦି ମୁଗ୍ଧ ହୋଇଥାଅ, ତାଙ୍କ ବୀର ମୂର୍ତ୍ତିକୁ ହୃଦୟରେ ସ୍ଥାପନ କରୁ ନା ?"

"ଛି, ମାଧବି ! ସେପରି କଥା କୁହନା ।"

"କାହିଁକି ? କହିଲେ ଦୋଷ କ'ଣ ?"

"ସେ ବୀର ହେଲେ ସୁଦ୍ଧା ମୁଁ ତାଙ୍କୁ ହୃଦୟରେ ସ୍ଥାନ ଦେବି କାହିଁକି ?

"ଦାସୀ ଯେତେ ନୀଚ ହେଲେ ବି ସବୁ ବୁଝିପାରେ ଯେ ! ଏ କେତେଦିନ ଏଠାରେ ରହି ମୁଁ କ'ଣ ତୁମ ଗତିବିଧି ଦେଖୁନାହିଁ ? ପୃଥ୍ୱୀ ସିଂହଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ତୁମ ମୁହଁର ରଙ୍ଗଟା ଦେଖିଛି ଯେ । ମୁଁ ଭଲ କରି ଜାଣେ, ତାଙ୍କ ପ୍ରତି ତୁମର ଆଉ ବିରାଗ ନାହିଁ ।"

"ବିରାଗ ନ ଥିଲେ ଯେ ଅନୁରାଗ ଅଛି, ଏ କଥା କିଏ କହିଲା ?"

"ଅନ୍ତତଃ ଏ ସ୍ଥଳରେ ବିରାଗ ନ ଥିଲେ ଅନୁରାଗ ଅଛି ବୋଲି ଭାବିବାକୁ ହେବ । ଆଉ ବୃଥାରେ କାହିଁକି କ୍ଳେଶ କରୁଛ ? ଉଭୟ କୁଳର କ୍ଷତି ହେଉଛି ସିନା, ତୁମେ ଯଦି ପୃଥ୍ୱୀ ସିଂହଙ୍କୁ ପତିତ୍ୱରେ ବରଣକର, ସବୁଗୋଳ ମେଣ୍ଟିଯିବ । ଆଉ ନିରର୍ଥକ ଲୋକ କ୍ଷୟ ହେବନାହିଁ ।"

"ପିତାଙ୍କ ଶତ୍ରୁକୁ, ଜାତିର ଶତ୍ରୁକୁ ମୁଁ କେବେ ହୃଦୟ ଦେବି ନାହିଁ । ଯଦି ପିତା ଯୁଦ୍ଧରେ ଜୟଲାଭ କରି ମୋତେ ଉଦ୍ଧାର କରନ୍ତି—"

"କିନ୍ତୁ ଯଦି ଯୁଦ୍ଧରେ ପୃଥ୍ୱୀ ସିଂହଙ୍କ ମୃତ୍ୟୁ ହୁଏ, ତାହାହେଲେ ତୁମକୁ ଆଜୀବନ ବୈଧବ୍ୟ ଭୋଗିବାକୁ ପଡ଼ିବ ।"

"ଆଜିଯାଏ ମୁଁ ଅବିବାହିତା । କାହାରି ମୁଖରେ ମୋର କିଛି ଯାଏ ଆସେ ନାହିଁ । ବରଂ—"

"ତାହାହେଲେ ଜୀବନଯାକ କୁମାରୀ ହୋଇ ରହିବ ?"

"ଫେରେ ସେହିକଥା ! ଯୁଦ୍ଧରେ କାହିଁକି କିଏ ମରିବ ? ଯୁଦ୍ଧରେ ଶତ୍ରୁ ନ ମଲେ କ'ଣ ଜୟଲାଭ ହୁଏ ନାହିଁ ? ଯଦି ଦୁର୍ଗାଧୀଶଙ୍କୁ ପରାସ୍ତକରି ପିତା ମୋତେ ଉଦ୍ଧାର କରନ୍ତି, ତାହାହେଲେ ପିତାଙ୍କ ଇଚ୍ଛା ଅନୁଯାରେ ମୋର ବିବାହ ହେବ । ହିନ୍ଦୁର ବିବାହରେ ବର କନ୍ୟାର ସ୍ୱାଧୀନ ମତ ନାହିଁ । ପିତା ସତ୍‌ପାତ୍ର ଦେଖି କନ୍ୟାର ବିବାହ ଦେବେ । ଯୌବନରେ ମନୁଷ୍ୟର ମନର ଗତି ଜଳଧାରା ପ୍ରାୟ, ପିତା ଯାହା କରିବେ—"

"ପିତା ଯଦି ପୃଥ୍ୱୀ ସିଂହଙ୍କ ସଙ୍ଗେ ତୁମ୍ଭର ବିବାହ ନ ଦିଅନ୍ତି ।"

"ସେ କଥା ଥାଉ । ଯୁଦ୍ଧର ଖବର କହ । ଯୁଦ୍ଧ ପାଇଁ ମୋ ମନ ଘାଣ୍ଟି ହେଉଛି । ପାଞ୍ଚମାସ କାଳ ଯୁଦ୍ଧ ଲାଗିଲାଣି । ମରହଟ୍ଟାମାନଙ୍କ ପକ୍ଷରୁ କେତେକ ବୀର ଧରାଶାୟୀ ହେଲେଣି । ନିଜ ଜାତିର ଏପରି ଦୁରବସ୍ଥା ଦେଖି କିଏ ସହି ପାରିବ ? ମୋର ଇଚ୍ଛା, ମୁଁ ନିଜେ ଯାଇ ଯୁଦ୍ଧ କରନ୍ତି ।"

"କିନ୍ତୁ ପୃଥ୍ୱୀ ସିଂହ ଛାଡ଼ି ଦେବେ କି ?"

"ସେ ମୁକ୍ତ ଦେଲେ ସୁଦ୍ଧା ମୁଁ ଯିବିନାହିଁ । ପିତା ନିଜେ ଆସି ଉଦ୍ଧାର କରିବେ ।"

"ଯଦି କରି ନ ପାରନ୍ତି ?" ଏହା କହି ପୃଥ୍ୱୀ ସିଂହ ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ ।

ପୃଥ୍ୱୀ ସିଂହଙ୍କୁ ସେପରି ଅପ୍ରତ୍ୟାଶିତ ଭାବରେ ସେଠାରେ ଉପସ୍ଥିତ ହେବା ଦେଖି ସେମାନେ ଟିକିଏ ଘାବରିଗଲେ । କିନ୍ତୁ ଆଜି ଆଉ ପୂର୍ବପରି ସେମାନଙ୍କ ସଙ୍କୋଚ ନାହିଁ । ଦୁର୍ଗରେ ଅନେକ ଦିନ ରହି ପୃଥ୍ୱୀ ସିଂହଙ୍କ ସଙ୍ଗେ ସେମାନଙ୍କ ଘନିଷ୍ଠତା ଜନ୍ମିଅଛି । ଅରୁଣା ତାଙ୍କ ସଙ୍ଗେ କଥାବାର୍ତ୍ତା କରିବା ପାଇଁ ଆଉ ଲଜ୍ଜ୍ୟାବୋଧ କରୁନାହିଁ । ସେ ଶତ୍ରୁ ସଙ୍ଗେ ମଧ୍ୟ ଶିଷ୍ଟାଚରଣ କରନ୍ତି । ତାଙ୍କ ମଧୁର ଆଳାପରେ ମୁଗ୍‌ଧ ହୋଇ ଦିନେ ଦିନେ ଅରୁଣା ଅନେକ ବେଳଯାଏ ତାଙ୍କ ସଙ୍ଗେ କଥାବାର୍ତ୍ତା କରେ । ଏଥର ତାଙ୍କ କଥା ଶୁଣି ନିର୍ବିକାର ଚିତ୍ତରେ କହିଲା, "ଯଦି ପିତାଙ୍କ ବାହୁରେ ବଳନାହିଁ, ଯଦି ମରହଟ୍ଟାଜାତି ହୀନ-ବଳ ହୋଇଗଲାଣି, ତାହାହେଲେ ମୁଁ ମୁକ୍ତ ପାଇ ପାରିବି ନାହିଁ । କିନ୍ତୁ ଏଠାରେ ଆଉ ଆପଣ ମୋତେ ଦେଖି ପାରିବେ ନାହିଁ । ହିନ୍ଦୁରମଣୀ ନିକଟରେ ସବୁବେଳେ ବିଷଥାଏ ।"

"ନା, ମୁଁ ଆଉ ରଘୁଜୀ ରାଓଙ୍କ ସଙ୍ଗେ ଯୁଦ୍ଧ କରିବି ନାହିଁ । ତାଙ୍କୁ ଯଥେଷ୍ଟ କଷ୍ଟ ଦେଇ ସାରିଛି । ତୁମ୍ଭଙ୍କୁ ନେଇ ତାଙ୍କ ହସ୍ତରେ ସମର୍ପଣ କରି ଆସିବି । ପରେ ଯଦି ଯୁଦ୍ଧ ହୁଏ ଦେଖାଯିବ ।"

"ଆପଣ ଯଦି ପରାଜୟ ସ୍ୱୀକାର କରନ୍ତି, ତାହାହେଲେ ମୁଁ ଦୁର୍ଗରୁ ଯିବି । ସ୍ୱଜାତିର ମୁଖରେ କଳଙ୍କ ଲେପି ମୁଁ ସ୍ୱାଧୀନତା ପାଇବାକୁ ଚାହେଁ ନା ।"

"ଧନ୍ୟ ମରହଟ୍ଟା ରମଣୀ; ଆଜି ତୁମ୍ଭ ନିକଟରେ ମୁଁ ପରାଜୟ ସ୍ୱୀକାର କରୁଛି । ପୂର୍ବ ଜନ୍ମର ସୁକୃତି ବଳରେ ତେଜସ୍ୱୀନୀ ରମଣୀଙ୍କ ସଙ୍ଗେ ମୋର ସାକ୍ଷାତ୍‌କାର ହୋଇଛି, କିନ୍ତୁ ରଘୁଜୀ ରାଓଙ୍କ ବିରୁଦ୍ଧରେ ମୋର ଖଡ୍‌ଗ ସର୍ବଦା ନିଷ୍କୋଷିତ । ଏ ଦେହରେ ପ୍ରାଣ ଥିବା ଯାଏ ମୁଁ କଦାପି ତାଙ୍କ ସମକ୍ଷରେ ନତମସ୍ତକ ହେବି ନାହିଁ । ଜୟ ପରାଜୟ ଈଶ୍ୱରଙ୍କ ଇଚ୍ଛାଧୀନ—ମୁଁ ଯୁଦ୍ଧ କରିବି । ଯୁଦ୍ଧରେ ଶତ୍ରୁକୁ ପରାସ୍ତ କରି ମା' ସମଲେଶ୍ୱରୀଙ୍କ ବିଜୟ ପତାକା ବାର ପାହାଡର ଶିଖରଦେଶରେ ଉଡ଼ାଇବି । ଏଇଟା ଔହ୍ୱାନଜାତିର ପଣ ।"

ପୃଥ୍ୱୀ ସିଂହଙ୍କ କଥା ଶୁଣି ଅରୁଣା ନିର୍ବାକ, ନିଷ୍ପନ୍ଦ ଭାବରେ ତାଙ୍କ ମୁଖକୁ ଅନାଇଲା । ପୃଥ୍ୱୀ ସିଂହଙ୍କ ମୁଖ ବର୍ତ୍ତମାନ ତେଜୋମୟ । ଅରୁଣା ଅନେକ ଥର ଯୁଦ୍ଧକ୍ଷେତ୍ରକୁ

ଯାଇଥିଲା, ଅନେକ ଥର ଦେଖିଥିଲା; କିନ୍ତୁ ଏପରି ତେଜ, ଏପରି ଉଦାରତା ସେ କୌଣସି-ଠାରେ ଦେଖି ନ ଥିଲା । ଦୁର୍ଗକୁ ଆସିଲା ଦିନୁ ସେ ସମ୍ବଲପୁରକୁ ତୀର୍ଥକ୍ଷେତ୍ର ମଣି ମା' ସମଲେଶ୍ୱରୀଙ୍କ ଚରଣ ପ୍ରାନ୍ତରେ ଆନ୍ତରିକ ଭକ୍ତି ଅର୍ପଣ କରୁଥିଲା । ସମ୍ବଲପୁରର ଜଳରେ, ସମ୍ବଲପୁରର ପବନରେ, ପର୍ବତରେ, ନଦୀରେ, ବୃକ୍ଷରେ ସେ ଗୋଟିଏ ସ୍ୱର୍ଗୀୟ ଦୃଶ୍ୟର ସତ୍ତା ଅନୁଭବ କରି ମୁଗ୍ଧ ହୋଇଥିଲା । ପର୍ବତମୟ ମହାରାଷ୍ଟ୍ର ଦେଶରେ ସୁଦ୍ଧା ସେ ଏ ଦୃଶ୍ୟ ଦେଖି ନାହିଁ ! ହାୟ, ମା' ସମ୍ବଲପୁର ! ଆଜି ସେ ଗୌରବ କାହିଁ ! ସେ ବୀରତ୍ୱ କାହିଁ !

ଅରୁଣାକୁ ନିରୁତ୍ତର ଦେଖି ପୃଥ୍ୱୀ ସିଂହ ପୁନର୍ବାର କହିଲେ, "କହ, ସେନାପତି-ନନ୍ଦିନୀ ! ଯଦି ଦୁର୍ଗରେ ରହିବାକୁ ତୁମ୍ଭର କଷ୍ଟ ହେଉଥାଏ ତାହାହେଲେ ଏହି ମୁହୂର୍ତ୍ତରେ ତୁମ୍ଭଙ୍କୁ ପିତୃ ସମୀପରେ ଛାଡ଼ି ଆସିବି ।"

"ନା, ଦୁର୍ଗରେ ମୁଁ ଅତି ସୁଖରେ ଅଛି । ପିତୃ ଶିବିରକୁ ଯିବି ନାହିଁ ।"

"ମୁଁ ଶୁଣିଛି, ତୁମ୍ଭେ ପିତାଙ୍କ ସଙ୍ଗେ ଯୁଦ୍ଧ କ୍ଷେତ୍ରକୁ ଯାଅ । ଯୁଦ୍ଧର ନାମ ଶୁଣିଲେ ତୁମ ହୃଦୟ ଉତ୍ସାହରେ ନାଚି ଉଠେ । ଏଥର ମୋ ସଙ୍ଗେ ତୁମକୁ ଯୁଦ୍ଧ କ୍ଷେତ୍ରକୁ ଯିବାକୁ ହେବ । ଯୁଦ୍ଧ କ୍ଷେତ୍ରରେ ତୁମର ରଣ-ରଙ୍ଗିଣୀ ମୂର୍ତ୍ତି ଦେଖି ସୈନିକମାନେ ଅପୂର୍ବ ଉତ୍ସାହରେ ମାତି ଯୁଦ୍ଧ କରିବେ ।"

"ଦୁର୍ଗାଧିପଙ୍କ ଯେପରି ଅଭିରୁଚି । ବୀର ପୁରୁଷଙ୍କ ସମରସଙ୍ଗିନୀ ହେବା ସୌଭାଗ୍ୟର କଥା । ବୀର ପୁରୁଷଙ୍କ ସଙ୍ଗେ ରହି ଯୁଦ୍ଧ ଦେଖିବି—ଯୁଦ୍ଧ ଦେଖି ନୟନ ସାର୍ଥକ କରିବି, ଏଥିରୁ ବଳି ଆଉ ସୁଖ କ'ଣ ହୋଇପାରେ ?"

"ଶୁଣି ସୁଖୀ ହେଲି, ଅରୁଣା-ମୂର୍ତ୍ତି ପ୍ରାଚୀଦିଗରେ ଅରୁଣରୁପେ ଉଦିତ ନ ହେବା ଯାଏ ଏ ଯୁଦ୍ଧର ଅବସାନ ହେବନାହିଁ ।"

ଏହା କହି ଉପସ୍ଥିତ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବା ସକାଶେ ପୃଥ୍ୱୀ ସିଂହ ପ୍ରକୋଷ୍ଠରୁ ବହିର୍ଗତ ହେଲେ । ଅରୁଣା ସ୍ଥିର ନେତ୍ରରେ ତାଙ୍କ ବୀର ମୂର୍ତ୍ତି ଦେଖି ମନ ମଧ୍ୟରେ ତାଙ୍କୁ ଶତବାର ଧନ୍ୟବାଦ ଦେଲା । ପୃଥ୍ୱୀ ସିଂହଙ୍କ ସଙ୍ଗେ କଥାବାର୍ତ୍ତା କରୁଥିବା ଯାଏ ସେ ନୟନ-ସମକ୍ଷରେ ସ୍ୱର୍ଗର ଦୃଶ୍ୟ ଦେଖୁଥିଲା । ପୃଥ୍ୱୀ ସିଂହ ଅନ୍ତର୍ହିତ ହୁଅନ୍ତେ ତାହାର ହୃଦୟ ବ୍ୟାକୁଳ ହୋଇ ପଡ଼ିଲା । ସେ ନୀରବରେ ବାତାୟନ ସମୀପକୁ ଯାଇ ବାହାରରେ ପ୍ରକୃତିର ସୌନ୍ଦର୍ଯ୍ୟ ଦେଖିବାକୁ ଲାଗିଲା ।

# ଚତୁର୍ଥ ପରିଚ୍ଛେଦ

## ମି ଳ ନ

*"Till pride be quelled and love be free"*—
Scott.

ଆଜି ରଘୁଜି ରାଓ ନିଜେ ସୈନ୍ୟମାନଙ୍କୁ ସଙ୍ଗରେ ନେଇ ଯୁଦ୍ଧ-କ୍ଷେତ୍ରକୁ ଆସିଛନ୍ତି । ତାହାଙ୍କର ଏକମାତ୍ର ଲକ୍ଷ୍ୟ—"ମନ୍ତ୍ରର ସାଧନ ଅବା ଶରୀର ପାତନ ।" ଏଥର ସେ ଶତ୍ରୁକୁ ପରାସ୍ତ କରିବେ, ଅଥବା ନିଜ ରକ୍ତରେ ସମର ପ୍ରାଙ୍ଗଣକୁ ପ୍ଲାବିତ କରି ସମର-ସ୍ପୃହା ମେଣ୍ଟାଇବେ । ଜୀବନ ପ୍ରତି ଆଉ ତାଙ୍କର ମମତା ନାହିଁ । ମରହଟ୍ଟା ଜାତିକୁ ଓଡ଼ିଆମାନଙ୍କ ହସ୍ତରେ ଅପମାନିତ ଦେଖି ସେ କିପରି ପିଣ୍ଡରେ ପ୍ରାଣ ଧରିବେ ? ସ୍ୱଜାତିର ମାନରକ୍ଷା କରିବା ସକାଶେ ଏଥର ସେ ଯୁଦ୍ଧକୁ ବାହାରିଛନ୍ତି । ପ୍ରାଣପ୍ରତିମା ଅରୁଣା ଶତ୍ରୁ ଦୁର୍ଗରେ ବନ୍ଦିନୀ ! ମରହଟ୍ଟା ଜାତିର ଗୌରବ ଲକ୍ଷ୍ମୀ ଶତ୍ରୁର ପଦଦଳିତା । ଆଜି ସେ ପ୍ରାଣର ବିନିମୟରେ ସ୍ୱଜାତିର ମାନ ରଖିବେ । ଯୁଦ୍ଧ କ୍ଷେତ୍ରରେ ଦେଖିବେ, ଓଡ଼ିଆଜାତି କିପରି ଯୁଦ୍ଧ କରିପାରେ ।

ରଘୁଜି ରାଓ ନିଜର ବିରାଟ ବାହିନୀକୁ ବହୁ ଭାଗରେ ବିଭକ୍ତ କରି ନାନା ଦିଗକୁ ସୈନ୍ୟ ପଠାଇଲେ । ତାଙ୍କ ଇଚ୍ଛା, ଦୁର୍ଗକୁ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଶତ୍ରୁର ବଳ ପରୀକ୍ଷା କରିବେ । ଏଣୁକରି ସେ ସୈନିକମାନଙ୍କୁ ବିଭିନ୍ନ ଦିଗକୁ ପ୍ରେରଣ କଲେ । ନିଜେ ପ୍ରାୟ ବିଂଶତି ସହସ୍ର ଅଶ୍ୱାରୋହୀ ସୈନିକ ନେଇ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ମରହଟ୍ଟା-ମାନଙ୍କ "ବମ୍ ବମ୍ ମହାଦେଓ" ରବରେ ସିନ୍ଧୋର ଗିରିସଙ୍କଟ ବିକମ୍ପିତ ହେବାକୁ ଲାଗିଲା । ସେମାନଙ୍କ ତେଜରେ ଚତୁର୍ଦ୍ଦିଗ ବିଭାସିତ ହୋଇଗଲା ।

ପୃଥ୍ୱୀ ସିଂହ ଅଲକ୍ଷିତ ଭାବରେ ଥାଇ ମରହଟ୍ଟାମାନଙ୍କ ଗତିବିଧି ନିରୀକ୍ଷଣ କରୁ-ଥିଲେ । ରଘୁଜି ରାଓଙ୍କ ଉଦ୍ୟମ ଦେଖି ସେ ପୂର୍ବବତ୍ ପର୍ବତର ସ୍ଥାନେ ସ୍ଥାନେ ସୈନିକ-ମାନଙ୍କୁ ପ୍ରଚ୍ଛନ୍ନ ଭାବରେ ରଖିଲେ ଏବଂ ନିଜେ ଅଳ୍ପ ସଂଖ୍ୟକ ସୈନିକ ନେଇ ପର୍ବତର ଚତୁର୍ଦ୍ଦିଗରେ ପରିକ୍ରମଣ କରିବାକୁ ଲାଗିଲେ । ଓଡ଼ିଆ ସୈନିକମାନେ ଲୁକ୍‌କାୟିତ ଭାବରେ ଥାଇ ଅପ୍ରତ୍ୟାଶିତ ଭାବରେ ମରହଟ୍ଟାମାନଙ୍କୁ ଆକ୍ରମଣ କରନ୍ତି ଏବଂ ସେମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରି ପଛକୁ ଘୁଞ୍ଚାଇ ଦିଅନ୍ତି । ଏପରି ବାରମ୍ବାର ଆକ୍ରାନ୍ତ ହୋଇ ଚତୁର୍ଦ୍ଦିଗକୁ ପ୍ରେରିତ ମରହଟ୍ଟାମାନେ ହତାହତ ହେବାକୁ ଲାଗିଲେ । ସେମାନଙ୍କ ସକଳ ଆଶା ଭରସା ବିଲୁପ୍ତ ହେଲା । ଜୟ-ଶ୍ରୀ ସେମାନଙ୍କୁ ଛାଡ଼ି ବହୁଦୂରକୁ ଚାଲିଗଲା ।

କିନ୍ତୁ ରଘୁଜି ରାଓଙ୍କ ସେଥିପ୍ରତି ଲକ୍ଷ୍ୟନାହିଁ । ଆଜି ତାଙ୍କ ଜୀବନ ମାୟା-ମମତା-ବିହୀନ । ନିର୍ବାସିତ ବିଜୟ ଲକ୍ଷ୍ମୀଙ୍କୁ ଶତ୍ରୁର କରାଳ କବଳରୁ ମୁକ୍ତକରି ଆଣିବା ନିମନ୍ତେ ସେ

ପ୍ରାଣ ସୁଦ୍ଧା ଦେବାକୁ ପଶ୍ଚାତ୍‌ପଦ ନୁହନ୍ତି । ପରାଜିତ, ଅପମାନିତ ଜୀବନ ଘେନି ସେ କଦାପି ପ୍ରତ୍ୟାବୃତ୍ତ ହେବେ ନାହିଁ । ଏଥିପାଇଁ ସେ ନିର୍ଭୀକ ଭାବରେ ଗନ୍ତବ୍ୟ ପଥରେ ଅଗ୍ରସର ।

ବହୁ ସାବଧାନତା ସହକାରେ ରଘୁଜି ରାଓ ଗିରିସଙ୍କଟ ମଧ୍ୟରେ ପ୍ରବେଶ କଲେ । ସେ ଏପରି ସତର୍କ ଭାବରେ ଯିବାକୁ ଲାଗିଲେ ଯେ, ପୃଥ୍ୱୀ ସିଂହ ତାଙ୍କ ଗତି ଆଦୌ ଲକ୍ଷ୍ୟ କରି ପାରିଲେ ନାହିଁ । ରଘୁଜି ରାଓ ଅବାଧରେ ଗିରିସଙ୍କଟ ଉତ୍ତୀର୍ଣ୍ଣହୋଇ ଗିରିଦୁର୍ଗ ନିକଟରେ ଉପନୀତ ହେଲେ । ପୃଥ୍ୱୀ ସିଂହ ବର୍ତ୍ତମାନ ଦେଖିଲେ ଯେ, ବିଷମ ସମସ୍ୟା ଉପସ୍ଥିତ । କିନ୍ତୁ, ତଥାପି ତାଙ୍କ ମନ ନିର୍ଭୀକ ଓ ଅଟଳ । ରଘୁଜି ରାଓଙ୍କୁ ନିକଟବର୍ତ୍ତୀ ଦେଖି ସେ ବିପୁଳ ଆୟୋଜନରେ ତତ୍ପର ହେଲେ । ଦୁର୍ଗ-ପ୍ରାଚୀରରେ ପୂର୍ବବତ୍ ବହୁ ପ୍ରସ୍ତର ଲତାଗ୍ରଥିତ ହୋଇ ଝୁଲିଗଲା । ସମଗ୍ର ଓଡ଼ିଆ ସେନା ଏକତ୍ରିତ ହୋଇ ଦୁର୍ଗ ମଧ୍ୟରେ ଅବସ୍ଥାନ କଲେ ।

ଦୁର୍ଗ ନିକଟକୁ ଯାଇ ମରହଟ୍ଟାମାନେ ଅବିଶ୍ରାନ୍ତ ଗୋଳାବର୍ଷଣ କରିବାକୁ ଲାଗିଲେ । ସେମାନଙ୍କ 'ବମ୍ ବମ୍ ମହାଦେଓ' ରବରେ ଦୁର୍ଗବାସୀମାନେ ଶଙ୍କା ପାଇବାକୁ ଲାଗିଲେ । କିନ୍ତୁ ପୃଥ୍ୱୀ ସିଂହ ନିଃଶଙ୍କ ଓ ସତର୍କ । ସେ କୌଶଳରେ ସୈନିକମାନଙ୍କୁ ଦୁର୍ଗ ପ୍ରାଚୀର ଉପରେ ସନ୍ନିବିଷ୍ଟ କଲେ । ମରହଟ୍ଟାମାନଙ୍କ ଗୋଳା ବର୍ଷଣରେ ବହୁସଂଖ୍ୟକ ବୀର ଧରାଶାୟୀ ହେଲେ; କିନ୍ତୁ ଓଡ଼ିଆମାନଙ୍କ ଜୀବନପ୍ରତି ଭ୍ରୂକ୍ଷେପ ନାହିଁ । ସେମାନେ "ଜୟ ସମଲାଈର ଜୟ" ରବକରି ଲତା-ଗ୍ରଥିତ ପ୍ରସ୍ତର ସବୁ ମରହଟ୍ଟାମାନଙ୍କ ଉପରେ ନିକ୍ଷେପ କରିବାକୁ ଲାଗିଲେ । ସେ ପ୍ରସ୍ତରର ଆଘାତ ମରହଟ୍ଟାମାନେ ସମ୍ଭାଳି ପାରିଲେ ନାହିଁ । ଯୁଦ୍ଧରୁ ପଛଘୁଞ୍ଚା ଦେଇ ପ୍ରାଣ ଭୟରେ ପଳାଇବାକୁ ଲାଗିଲେ । ଓଡ଼ିଆମାନେ ପ୍ରାଚୀର ଡେଇଁ "ଜୟ ସମଲାଇର ଜୟ" ରବ କରି ସେମାନଙ୍କ ପଶ୍ଚାଦ୍ଧାବନ କଲେ ।

ପର୍ବତ ଉପରେ ଓଡ଼ିଆ ଓ ମରହଟ୍ଟାମାନଙ୍କ ମଧ୍ୟରେ ଭୀଷଣ ସମ୍ମୁଖ-ସଂଗ୍ରାମ ଆରମ୍ଭ ହେଲା । ଉଭୟ ପକ୍ଷରୁ ଅନେକ ହତାହତ ହେଲେ; କିନ୍ତୁ ମରହଟ୍ଟାମାନଙ୍କ ଆଉ ଉତ୍ସାହ ନାହିଁ । ସେମାନଙ୍କୁ ଅଗତ୍ୟା ପରାଜୟ ସ୍ୱୀକାର କରିବାକୁ ପଡ଼ିଲା ।

ପୃଥ୍ୱୀ ସିଂହ ଶତ୍ରୁ ବ୍ୟୂହରେ ପ୍ରବେଶ କରି ଭୟଙ୍କର ଯୁଦ୍ଧ ଆରମ୍ଭ କଲେ । ତାଙ୍କ ଅଦମ୍ୟ ପରାକ୍ରମରେ ମରହଟ୍ଟାବାହିନୀ ଛିନ୍ନବିଚ୍ଛିନ୍ନ ହୋଇଗଲା । ତାଙ୍କ ବୀର୍ଯ୍ୟ ସମକ୍ଷରେ ସ୍ୱୟଂ ରଘୁଜି ରାଓଙ୍କ ଉତ୍ସାହ ମଧ୍ୟ ନତ ମସ୍ତକ ହେଲା । * ପୃଥ୍ୱୀ ସିଂହ ତରବାରି ଉତ୍ତୋଳନ

---

* Akbar Ray, the minister of Abhaya Singh, thinking this a good opportunity to strengthen the Sambalpur fort, caused the boatmen to scuttle the boats in deep water, so that the guns all sunk, and many Marhatta artillery-men were drowned. He then recovered eight of the guns and mounted them on the fort. The Raja of Nagpura sent a strong detachment to avenge the insult and recover the guns; but it was repulsed with slaughter".

P. 23. Bengal District Gazetteer.

*( Sambalpur )*

କରି ତାଙ୍କ ପ୍ରତି ସିଂହ-ବିକ୍ରମରେ ଧାବମାନ ହୁଅନ୍ତେ, ପଛରୁ କିଏ ତାଙ୍କ ହସ୍ତକୁ ଦୃଢ଼ ଭାବରେ ମୁଷ୍ଟିବଦ୍ଧ କଲା । ପୃଥ୍ୱୀ ସିଂହ ପଚ୍ଛକୁ ଅନାଇ ଦେଖିଲେ ଯେ, ଜଣେ ପ୍ରହରଣ-ଧାରିଣୀ ମୁକ୍ତକେଶା ରମଣୀମୂର୍ତ୍ତି ତାଙ୍କ ପଶ୍ଚାତ୍‌ଭାଗରେ ଦଣ୍ଡାୟମାନ । ତାହାର ସେ ରୂପ, ସେ ତେଜ ଦେଖି ତାଙ୍କ ହସ୍ତ ଆଉ ଅଗ୍ରସର ହୋଇ ପାରିଲା ନାହିଁ । ସେ ନୀରବ ଓ ନିଷ୍ପନ୍ଦ ଭାବରେ ଛିଡ଼ା ହୋଇ ଉକ୍ତ ରମଣୀମୂର୍ତ୍ତିକୁ ଦେଖିବାକୁ ଲାଗିଲେ । ରଘୁଜୀ ରାଓ ମଧ୍ୟ ତାଙ୍କ ଜୀବନ-ରକ୍ଷା-କାରିଣୀକୁ ଦେଖି ବିସ୍ମୟାଭିଭୂତ ହୋଇଗଲେ । ତାଙ୍କ ମୁଖରୁ ବାକ୍ୟ ନିଃସୃତ ହୋଇ ପାରିଲା ନାହିଁ । ଉକ୍ତ ରମଣୀ ପୃଥ୍ୱୀ ସିଂହଙ୍କୁ କହିଲା "ଧନ୍ୟ ବୀର ! ଏ ଅଦ୍ଭୁତ ସାହସ ଏଥର ମୁଁ ପ୍ରଥମ ଦେଖିଲି । କିନ୍ତୁ ହେଲା । ଆଉ ନାହିଁ । ଯଥେଷ୍ଟ ହୋଇ ସାରିଛି । ଆଉ ଯୁଦ୍ଧରେ ପ୍ରୟୋଜନ ନାହିଁ । ପିତାଙ୍କୁ ମୁକ୍ତ ଦିଅନ୍ତୁ ।" ପରେ ରଘୁଜୀ ରାଓଙ୍କ ନିକଟକୁ ଯାଇ କହିଲା, "ପିତା, ଦାସୀର ଅପରାଧ କ୍ଷମା କରନ୍ତୁ । ଦାସୀ ଆପଣଙ୍କୁ ଅନେକ କଷ୍ଟ ଦେଇଛି, ଦାସୀ ପାଇଁ ମରହଟ୍ଟା ଜାତିକୁ ପରାଜୟ ସ୍ୱୀକାର କରିବାକୁ ପଡ଼ିଛି । କିନ୍ତୁ ଏ ବୀର ପୁରୁଷ—" ସେ ଆଉ କହି ପାରିଲା ନାହିଁ । ତାର ବାକ୍‌ଶକ୍ତି ରୁଦ୍ଧ ହୋଇଗଲା ଓ ଲଜ୍ଜାରେ ମୁଖ ଲାଲ୍ ହୋଇଗଲା ।

ଏ କରୁଣାମୟ ଦୃଶ୍ୟ ଦେଖି ରଘୁଜୀଙ୍କ ହୃଦୟ ଦ୍ରବୀଭୂତ ହୋଇଗଲା । ସେ ଦୁହିତାକୁ ଆଲିଙ୍ଗନ କରି କହିଲେ "ଅରୁଣା ! ମା !" ଆଉ କହି ପାରିଲେ ନାହିଁ । ତାଙ୍କ ଚକ୍ଷୁରୁ ଅବିରଳ ସ୍ନେହାଶ୍ରୁ ନିର୍ଗତ ହେବାକୁ ଲାଗିଲା । ପରେ ଆତ୍ମସମ୍ବରଣ କରି ଅରୁଣାର ମୁଖରେ ଭାବ ଦେଖି ସେ ସବୁ ବୁଝି ପାରିଲେ । ଅରୁଣାର ହସ୍ତ ଧରି ପୃଥ୍ୱୀ ସିଂହଙ୍କ ନିକଟକୁ ଯାଇ କହିଲେ, "ବୀର ଶ୍ରେଷ୍ଠ ! ତୁମ୍ଭର ବୀର୍ଯ୍ୟରେ ମୁଁ ମୁଗ୍ଧ ହୋଇଛି । ମୁଁ ତୁମ୍ଭର ଶତ୍ରୁ—ଯୁଦ୍ଧରେ ପରାସ୍ତ । ତଥାପି ତୁମ୍ଭର ବୀର୍ଯ୍ୟ ଦେଖି ତୁମ୍ଭ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧା ଜାତ ହୋଇଛି । ଏ ଶ୍ରଦ୍ଧାର ପୁରସ୍କାର ସ୍ୱରୂପ ମୋର ପ୍ରାଣର ପ୍ରାଣ ଅରୁଣାକୁ ତୁମ ହସ୍ତରେ ସମର୍ପଣ କଲି । ବୀର-କନ୍ୟା ବୀର-ପତ୍ନୀ ହେଉ ।" ଏହା କହି ସେ ପୃଥ୍ୱୀ ସିଂହଙ୍କ ହସ୍ତରେ ଅରୁଣାର ହସ୍ତ ସମର୍ପିତ କଲେ । ଉଭୟ ପକ୍ଷରୁ "ବମ୍ ବମ୍ ମହାଦେଓ" ଓ "ଜୟ ସମଲେଇର ଜୟ" ରବ ଉଠି ସେ ନିବିଡ଼ ଅରଣ୍ୟକୁ ପ୍ରତିଧ୍ୱନିତ କଲା । ପୃଥ୍ୱୀ ସିଂହ ନତ ମସ୍ତକ ହୋଇ ଏ ସବୁ ଶ୍ରବଣ କଲେ ଏବଂ ସୈନିକମାନଙ୍କୁ ସଙ୍ଗରେ ନେଇ "ବମ୍ ବମ୍ ମହାଦେଓ" ରବ କରି ଅରଣ୍ୟ ମଧ୍ୟରେ ବିଲୀନ ହୋଇଗଲେ ।

---

[ 'ମୁକୁର' ୯ମ ବର୍ଷ ୫ମ ସଂଖ୍ୟା ଭାଦ୍ର ୧୩୨୨ ଅଗଷ୍ଟ ୧୯୧୪ ]

# ଡାହାଣୀ ଆଲୁଅ

—ଉପେନ୍ଦ୍ର କିଶୋର ଦାସ

( ଏକ )

ପୁଣି ବର୍ଷା ହେଲା । ପବନ-ପହୁଡା ତାଳଗଛ ମଥାନ ଉପରେ ଚଉଦ-ମେଳଣର ଯୋଡ଼-ନାଗରା ବଜାଇ ।

ଗାଢ଼ ଅନ୍ଧାର-ହଜା ଜଣବଦ ବଣଭୂଇଁ ତୁଣ୍ଡରେ, ଭଙ୍ଗା ମାଟି ଘରଟିଏ, ବର୍ଷା କାକର ଦାଉରେ ଛଣ ଛପରତକ ତାର କେଉଁକାଳୁ କୁଆଡ଼େ ଉଡ଼ିଗଲାଣି । କଣ୍ଟା-ବଣ ଭିତରେ ଖାଲି ଗୋଟାଏ ଭୁଷ ଡିହ, ଆଉ ଦଦରା କାନ୍ଥ କେତେ ଘଟ । ବତାସ ଦାଉରେ ସେତକ ବି ଏଇଲାଗେ ପଡ଼ିଯିବ ସତେ କି ?

ଘଡ଼ିକ ପରେ ବର୍ଷା ଥମ୍ଭି ଆସିଲା । ଅଙ୍ଗାରବୋଳା ରଙ୍ଗଦେହରେ ବିଜୁଳି ଝିକ୍‌ମିକ୍ ମାରି ବତାସ ଝପଟିଗଲା ଗଜା-ଧାନ ଗଛ ମେଳରେ ଚହଲ ପକାଇ ଦେଇ ।

ଘର ପଛପଟ ଝଙ୍କା ବରଗଛ ଭିତରୁ ଜାଅନ୍ଧା ଅନ୍ଧାର ଖଣ୍ଡିକ ପରି ଗୋଟାଏ ବାଦୁଡ଼ି ଉଡ଼ି ଆସି ଅଉ ଗୋଟାଏ ଗଛରେ ବସିଲା । ଡେଣା ଝାପଟରେ ତା'ର ଗଛ ତଳେ ଟପ ଟପ ହୋଇ ବର୍ଷା ହୋଇଗଲା ଆଉ ଥରେ । ବିଲ ଗହୀର ଆର ପାଖେ ମଶାଣିଦଣ୍ଡାରେ ସେହିକବେଳେ ଗୋଟାଏ ବଡ ଅଲୁଅ ମସାଲ ପରି ଦପ୍ ଦପ୍ ହୋଇ ଜଳି ଉଠି ହେନ୍ତୁ ବରଗଛ ତଳଯାଏ ଆସିଲା । ତା'ପରେ ହଠାତ୍ ଲିଭିଗଲା ।

ଗଛ ଉପରେ ବାଦୁଡ଼ିଟା ଚମକି ପଡ଼ି କହିଲା, କିଏ ?

ଦଣ୍ଡେକେ ଅଲୁଅଟା ପୁଣି ଜଳି ଉଠିଲା ଦାଉ ଦାଉ ହୋଇ । କହିଲା, ହେଇ—

"କିଏ ? ମୁଁ ତ ଚିହ୍ନି ନାହିଁ !"

ଚିହ୍ନି ନାଉଁ ? ଅଲୁଅ ହସିଲା; ଏଇ ଘର ପାଖରେ ବର ଗଛରେ ଅଛୁଟି ? ଅନେକ ଦିନ ଅଗେ ଏ ଘରେ କିଏ ଥିଲା ଜାଣିନାଉଁ କିଛି ?

ନାଁ, ଚାରିମାସ ହେଲା ଜମା ମୁଁ ଏଠିକି ଆସିଚି ।

ଚାରିମାସ ମୋଟେ ? ତେବେ ଆଉ ଜାଣିବୁ କୁଆଡୁ ? ସେ ଢେର ଦିନର କଥା । ବୋଧହୁଏ ତିନି କି ଚାରିବର୍ଷ ହେଲାଣି । ଏ ଘରେ ସେତେବେଳେ ଥିଲି ମୁଁ ଆଉ ମୋର ସ୍ୱାମୀ । ସଂସାରରେ ଦୁଃଖ କ'ଣ, ଦିନକ ପାଇଁକି ଜାଣି ନ ଥିଲି ତାଙ୍କ ଲାଗି । କିନ୍ତୁ ଦଣ୍ଡକେ କ'ଣ ହୋଇଗଲାଟି ! ଅଲୁଅଟା ଥରେ ଥରି ଉଠି ମିଞ୍ଜି ମିଞ୍ଜି ହୋଇ ଆସିଲା ।

ଦଣ୍ଡେ ଗଲା ।

ପୁଣି କହିଲ, ଆଜିକାଲି ଭାବିଲେ ସ୍ୱପ୍ନପରି ଲାଗେ ସେ କଥା ସବୁ । ଏ ଅବସ୍ଥାରେ ବି ଛୁଆ ମନ୍ଦ ହୋଇଯାଏ କାହିଁରେ ' କିନ୍ତୁ ଛାଡ ସେକଥା । ନୂଆକରି ସେ ଦୁଃଖ ଡାକି ଆଣିବାକୁ ମୋର ଆଉ ମନ ନାହିଁ ।

ବାଘଖଟା କେଁ କେଁ ହୋଇ ଗଛ ତଳ ଡାଳକୁ ଆହୁରି ଓହ୍ଲାଇ ଆସିଲା । କହିଲା; ନାଇଁ କୁହ, କୁହ ସେ କଥା । ଶୁଣିବାକୁ ମୋର ଭାରି ମନ ହଉଚି ।

ଶୁଣିବୁ ? ହଉ ଶୁଣ ତେବେ । ଅଲୁଅ ଆରମ୍ଭକଲା; ଢେର ଦିନ କଥା ହୋଇଗଲାଣି । ଏଇକ୍ଷଣି ଏମିତ କାହୁରୀ ବଣ ହୋଇ ଯାଇଚି ସିନା, ଏଇ ଘର ଦିନେ ପୂଣି ଲୋକ ଗହଳରେ ଖାଲି ହସୁଥିଲା, ମୁଁ ଯେତେବେଳେ ପ୍ରଥମେ ଏଠିକି ଆସେଁ । ସ୍ୱାମୀମୋର କାହିଁକି କେଜାଣି କଟକରୁ ପଢା ଛାଡିଦେଇ ଘରେ ଆସି ବସିଥିଲେ । ନିମିତ୍ୟଘର ପରେ ଅଉ ସେ କଟକକୁ ଯାଇ ନାହାନ୍ତି । ସେ କଥା, ସେଇ ପ୍ରଥମ ରାତି କଥା ମନରୁ ପାଶୋରି ଯିବ ନାହିଁ କେବେ । ଦୂର ସମ୍ପର୍କର ଜଣେ ନଣନ୍ଦ ହେବେ ସେ; ମତେ ଯେତେବେଳେ ଆଣି ଏଇ ଘରର ଗୋଟାଏ ବଖରା ଭିତରକୁ ପେଲି ଦେଇ ବାହାରୁ କବାଟ କିଳିଦେଲେ । ଘର ଭିତରେ ଗୋଟାଏ କୋଣରେ ଦିଉଳି ଦୀପଟା ମିଞ୍ଜି ମିଞ୍ଜି ହୋଇ ଜଳୁଛି । ଘର ମଝିରେ ଖଣ୍ଡେ ଅଣ୍ଡଓସାରି ଖଟ ଉପରେ ବିଛଣା ପରା । କବାଟ ପାଖେ ଠିଆ ହୋଇ ପରମ ସଂକୋଚରେ ଦିହ ଗୋଟାକ ମୋର ଝାଳରେ ବୁଡିଗଲା ।

ସ୍ୱାମୀ ଖଟ ଉପରେ ଶୋଇଥିଲେ, କାନ୍ଥ ଆଡକୁ ମୁହଁକରି । ପାଇଜୋଡା ଝୁମ ଝୁମ ଶୁଣି ଫେରି ଚାହିଁଲେ । ତା'ପରେ ଖଟରୁ ଉଠି ଆସି ମୋ ହାତଧରି ଡାକିଲେ; ଆସ '

ବରଡାପତ୍ର ପରି ଥରୁଥାଏ ମୋ ହାତ ଦିଟା ତାଙ୍କ ହାତ ଭିତରେ ସେତେବେଳେ । ଦଣ୍ଡେ ଗଲା, ଦୁହେଁଯାକ ଚୁପ୍‌ଚାପ୍ । ହାତକୁ ମୋର ଖୁବ୍ ଜୋରରେ ଚିମୁଟି ଦେଇ ସେ ହସିଲେ, କହିଲେ; ଆହା ଲମ୍ବାବଣ୍ଡ ଲତା ଦି'ବର୍ଷ ଆଗରୁ ମୋରି ଆଗରେ ପରା ଘୋଡା ପରି ଡେଉଁଥିଲ ବାପଘରେ ତମର । ଲାଜ ମାଡୁ ନାହିଁ ଆଜି ଏତେ ଛୁଇ ହେବାକୁ ?

ମନେ ମନେ ହସିଲି । ସତରେତ, ପିଲଟି ଦିନୁ ମୁଁ ଦାସଭାଇ ବୋଲି ପାଣି ପିଉ ନ ଥିଲି ଯାଙ୍କ ପେଇଁ ଏ ପୁଣି ମୋତେ ବାହା ହୋଇ ବସିବେ; ଏ କଥା କିଏ ଜାଣିଚି '

ଟାଣି ଟାଣି ସେ ମତେ ଖଟ ପାଖକୁ ନେଇ ଶୁଆଇ ଦେଲେ, ଉଢଣା କାଢି ଦେଇ ମୁହଁକୁ ଦି' ହାତରେ ଟେକି ଧରି ଡାକିଲେ; ରତି !

ଜବାବ ଦେଲି ନାହିଁ ନାକରେ ।

କଥା କହିବୁ ନାହିଁ ମତେ ? ସେ ପଚାରିଲେ ।

**ତଥାପି କିଛି କହିଲି ନାହିଁ ।**

ଦୁଟା ବର୍ଷରେ କ'ଣ ଏତେ ପର ହୋଇଗଲି ତୋ ପାଖେ ? କଥା ପଦେ କହିବୁ ନାହିଁ ? ହଉ ତେବେ ମୁଁ ଯାଉଛି । ସେ ଖଟ ଉପରୁ ଉଠିଲେ ଘର ଛାଡ଼ି ଚାଲିଯିବାକୁ । ବାଧ୍ୟ ହୋଇ କହିଲି, କ'ଣ ?

ସୁଖରେ ତାଙ୍କ ମୁହଁ ପୂରି ଉଠିଲା । ଖଟ ଉପରେ ବସି ଦୁ' ହାତରେ ମତେ ତାଙ୍କ କୋଡ଼ ପାଖକୁ ଟାଣି ନେଇ କହିଲେ; ଦୁ'ବର୍ଷ ତଳ କଥା ମନେ ପଡ଼ୁଛି ତୋର ରତ୍ନ ? ଖେଳୁବେଳେ ଦିନେ ତମ ଭାଉଜ ଆମ ଦୁହିଁଙ୍କି ଗୋଟାଏ ଘରେ ପୂରାଇ କବାଟ ଲଗାଇ ଦେଇଥିଲେ ଅନ୍ଧାରେ ଥରେ ? ସେଇଦିନୁ ଜାଣିଲି ତତେ ପାଇବା ଆଶା ଏମିତି ଅସମ୍ଭବ ନୁହେଁ ମୋ ପକ୍ଷରେ । ତା' ଆଗରୁ ତମ ଘରେତ କେହି ରାଜି ହେଉ ନ ଥିଲେ ମୋ ସାଙ୍ଗେ ତତେ ବାହା ଦବାକୁ, ନୁହେଁ ?

ଲାଜ ସଙ୍କୋଚ ଅନେକ କମି ଆସିଲା ତାଙ୍କ କଥାରେ । କହିଲି; ବୋଉର କିନ୍ତୁ ମନ ଥିଲା ପୂରା ।

ମୁଁ ସେ କଥା ବୁଝିଥିଲି । ତା ନୋହିଲେ ଆମ ବୃନ୍ଦାବନ ତୋ ସାଙ୍ଗେ ବାହା ହବା କଥା ଯୋଉ ଦିନ ତମ ବାପା ମତେ କହିଲେ, ତମ ଘରକୁ ଯିବା ସେଇ ଦିନୁ ମୋର ସରି ଯାଇଥାନ୍ତା ।

ସଂସାରରେ କନ୍ୟା ତମକୁ ଅପୂର୍ବ ହୋଇ ନ ଥାନ୍ତେ, ମୁଁ କହିଲି । ସେ ହସିଲେ । କହିଲେ ମିଳିଥାନ୍ତେ ପରା ! କିନ୍ତୁ କାହା ପାଇଁ ଆଜି ଯାଏ ମୁହଁରେ ଧରି ନ ଥିଲି ସେ କଥା ?

ଲଜ୍ଜା ଆଉ ଆନନ୍ଦରେ ଉଲୁସି ଉଠି କହିଲି; ମୁଁ ଜାଣେ । ପାଗଳଙ୍କ ପରି ସେ ମତେ ଛାତି ଉପରେ ଭିଡ଼ି ଧରି କହିଲେ; ମୋ ଭାଗ୍ୟ, ମୋ ଭାଗ୍ୟ ସେ ରତ୍ନ ଜୀବନରେ ସବୁଠୁଁ ବଡ଼ ଶୁଭାଶୀ ଭଗବାନ ମୋର ଶୁଣିଛନ୍ତି । ଆଜି, ଏତେ ପାଖରେ ତତେ ପାଇ, ତେବେ ବି କେମିତି ବିଶ୍ୱାସ ହେଉ ନାହିଁ ମୋର, ପାଇଛି ବୋଲି !

ମୁହଁ ତାଙ୍କର ଆସ୍ତେ ଆସ୍ତେ ମୋ ଓଠ ପାଖକୁ, ଖୁବ୍ ପାଖକୁ ଲଇଁ ଆସିଲା । ଝିଡ଼କି ବାଟେ ମେଘୁଆ ପବନ ସେତିକିବେଳେ ଘର ଭିତରୁ ଦୀପଟା ଲିଭାଇ ଦେଇ ବାହାରିଗଲା—

( ଦୁଇ )

ଏଇଯାଏ କହି ଆଲୁଅ କ'ଣ ଭାବି ଟିକେ ତୁନି ହେଲା । ଗଛ ଉପରୁ ବାଦୁଡ଼ି ପଚାରିଲା; ହଁ ସେଉଠୁଁ ?

ଆଲୁଅ ପୁଣି ଆରମ୍ଭ କଲା—

ପ୍ରାୟ ବର୍ଷେ ଚାଲିଗଲା ଏଥି ଭିତରେ । କିନ୍ତୁ ସେଇ ଦିନଟା ବିଶେଷ କରି ମୋ ଜୀବନ ଭିତରେ ମନେ ରଖିବା ଭଳି ! କାହିଁକି ନା ସେହି ପହିଲୁ ଦିନୁ ମୁଁ ଜାଣି ପାରିଲି

ସେ ମତେ କେତେ ଭଲ ପା'ନ୍ତି । ସ୍ୱାମୀ, ଆଉ ଗୋଟିଏ ଆଈଶାଶୁ, ଏ ଛଡ଼ା ଏ କୂଳରେ ମୋର ଆଉ କେହି ନ ଥିଲେ । ଆଈଶାଶୁଙ୍କୁ ପୁଣି ଭଲ ଦିଶେ ନାହିଁ । ମତେ ସେଥିପାଇଁ ନୂଆବୋହୂର ଲାଜ ଛାଡ଼ି ସବୁ କାମ କରିବାକୁ ହେଲା ସେହି ଦିନଠୁଁ ।

ସେ ବି ଅଉ ମତେ ଛାଡ଼ି କଣ୍ଟକ ଗଲେ ନାହିଁ । ଯେମିତି ଆଖିରୁ ଦଣ୍ଡେ ଅନ୍ତର କଲେ ସେ ଚଳି ପାରିବେ ନାହିଁ କେଉଁଠି ! ଶୋଇବା ଘରଟିରେ ସନ୍ଧ୍ୟା ସଞ୍ଜପାଏ ମୁହଁ ଚୁହାଁଚୁହିଁ ହୋଇ ଦିହେଁଯାକ ବସିଥାଉଁ । କେତେ ଦେଶର କେତେ ଅଶ୍ଚର୍ଯ୍ୟ କଥା ପଢ଼େ । ଗପୁ ଗପୁ ସଞ୍ଜ ହୋଇଯାଏ, ଆମ କଥା ସରେ ନାହିଁ ।

ଦିନେ । ଏମିତି ସେ ଦିନ ଝର ବର୍ଷା । ସେ କୁଆଡ଼େ ଯାଇଥିଲେ । ଦାଣ୍ଡ ପିଣ୍ଡାରେ ଠିଆ ହୋଇ ଚୁହିଁଛି ଦିଗବୁଡ଼ା ବିଲ ଅପରନ୍ତ ଭିତରେ ବର୍ଷା ପବନର ଲୁଚକାଳି ଖେଳ ଆଡ଼କୁ । ସେ ପଛରୁ ଆସି ମୋ ଆଖି ବନ୍ଦ କରି ଧରିଲେ । ଚମକିପଡ଼ି କହିଲି; ମୁଁ ଜାଣେ—

ପଚାରିଲେ କିଏ ?

ସେଇ—

ନାଁ' ନ କହିଲେ ଛାଡ଼ିବି ନାହିଁ ।

ହସ ମାଡ଼ିଲା କଥା ଶୁଣି । କହିଲି; ମୁଁ ଜାଣେ ନାହିଁ ଯା ।

ଆଖି ଛାଡ଼ି ମୋ କାନ୍ଧ ଉପରେ ହାତ ରଖି ସେ କେତେ ଶରଧାରେ ଡାକିଲେ, ରଞ୍ଜ !

ହିଁ—

କେମିତି ବର୍ଷା ?

ଝର !

ଏତେବେଳଯାଏ ଝର ମନ କ'ଣ ହେଉଥିଲା ପରା କାହାକୁ ନ ଦେଖି ? ସେ ହସିଲେ ମୋ ଆଡ଼େ ଚୁହିଁ ।

ଝର ଲାଜ ମାଡ଼ିଲା । ସେ କଥା ଗୋଳେଇ ଦେବାକୁ ପଚାରିଲି, କୁଆଡ଼େ ଯାଇଥିଲ କି ଆଜି ?

କହିଲେ, ଆମ ଜମିଦାରଙ୍କ ଘରକୁ । ଅନେକ ଦିନ ପରେ ଆମ ବୁଢ଼ା ଜମିଦାରଙ୍କ ପୁଅ ବୃନ୍ଦାବନ ଆସିଚି, ଖବର ଦେଖା କରିଆସେ ଟିକେ ।

ବୃନ୍ଦାବନ ! ଏ ସେଇ ବୃନ୍ଦାବନ ନୁହେଁ ତ ? ..ଯାହା ପାଇଁ ଏଥି ଆଗରୁ ମୋ ବାପ୍ପାଘରର ଦେହ ଅନ୍ଧ ହୋଇ ଯାଇଥିଲା । ପଚାରିଲି, ବୃନ୍ଦାବନ କିଏ କହୋ ?

- ଆଶ୍ଚର୍ଯ୍ୟ ହୋଇ ସେ ମୋ ମୁହଁକୁ ଚୁହିଁଲେ । କହିଲେ, ଏତେ ଜଲଦି ଭୁଲିଗଲୁଣି ? ଦି' ବର୍ଷ ତଳେ ମୁଁ ଆଉ ବୃନ୍ଦାବନ ପରା ସାଙ୍ଗ ହୋଇ ତମ ଘରକୁ ଯାଉଥିଲୁ । ତୋ' ସାଙ୍ଗେ ପୁଣି ତାର ବାହାଘର ପ୍ରସ୍ତାବ ଚାଲିଥିଲା । ମନେ ନାହିଁ ?

କହିଲି; ହଁ ମନେ ପଡ଼ିଲା ।

ଆଗେ ଆମ ଘରକୁ ଆସୁଥିଲ ବରାବର, ଯେବେ ଏ ଗାଁକୁ ଆସେ । ଆଉ ମୋ ବାହାଘର ପରେ ଆସିନାହଁ । ଯନେ ତୋ ନାଁ କହି ଡାକ ଆଣିବ ତାକୁ ।

କହିଲି; ନାଇଁ ନାଇଁ ମୋ ନାଁ କାହିଁକି କହିବ ଛି-ଛି, ତମେ ତମର ଡାକ ଆଣିବ ।

ଆଚ୍ଛା ହଉ; କହି ସେ ଲୁଗା ପାଲଟିବାକୁ ଘର ଭିତରକୁ ଚାଲିଗଲେ । ଭିତର ଘରୁ ଟୋକେଇଟା କାଢ଼ି ପରବା ବନେଇ ବସିଲି ରାତି ପାଇଁ ।

( ତନି )

ଯନେ ହାତରେ ସେ ବୃନ୍ଦାବନଙ୍କୁ ଡାକ ଆଣିଲେ ।

ସନ୍ଧ୍ୟବେଳେ ବିଛଣା ପକାଇବାକୁ ଘର ଭିତରକୁ ଯାଇଚ, ବାହାରେ କାହା ପାଟି ଶୁଭିଲା । ଚାହିଁଲି, କବାଟ ପାଖେ ସେ ଆଉ ବୃନ୍ଦାବନ—

ମତେ ଦେଖି ବୃନ୍ଦାବନ ଦୁଆର ମୁହଁରୁ ଟିକେ ଘୁଞ୍ଚିଗଲେ । ବିଛଣା ପକାଇ ମୁଁ ତରବରରେ ସେ ଘରୁ ପଳାଇଗଲି । ଘର ଭିତରେ ତାଙ୍କ ଗୁଣ୍ଡ ଶୁଭୁଥାଏ । ଜଳାକବାଟି ପାଖେ ଚାହିଁଲି । ଏଇ ସେଇ ବୃନ୍ଦାବନ ବରଷ ଦ'ଟାରେ ଏତେ ବଦଳି ଗଲଣି ନା ? ଆଗ ଫିଲ୍‌ଲଆ ଚେହେରା ଆଉ ନାହିଁ । ଏହିକ୍ଷଣି ଯେମିତି ପୁରା ବାବୁ ।

ତାଙ୍କ ସଙ୍ଗେ ସେ ଗପ କରୁ କରୁ କହିଲେ; ଆଜକାଲି ତୁ ତ ଖୋଦ୍ ଜମିଦାର । ଗରିବ ଘରେ ବସିବୁ ବୋଲି କହିବାକୁ ବ ନାକ ମାଡ଼ିଲଣି ଏଣିକ ।

ବୃନ୍ଦାବନ କହିଲେ; କେତେ ଥଟ୍ଟା କର ତମେ ଦାଦାଭାଇ ଏଇ ଘରେ ପିଲାଟି କାଳରୁ ମୁଢ଼ି ଚୁଡ଼ା ଖାଇ ଖାଇ ପରା ଏ ଦେହରେ ଅଧେ ରକ୍ତ ହୋଇଥିବ । ସେ କଥା କ'ଣ ଭୁଲି ଗଲଣି ଏତେ ଶୀଘ୍ରେ ?

ତେବେ ଜମିଦାର—

ବୃନ୍ଦାବନ ଅସହିଷ୍ଣୁ ହୋଇ କହି ଉଠିଲେ; ଫେର ଯଦି ଜମିଦାର ଜମିଦାର ହେବ, ଆଉ ଆସିବି ନାହିଁ ଏଠିକି ଜାଣିଥା ।

ସେ ହସିଲେ । କହିଲେ; କୋଉ ଏବେ ଆଜଯାଏ ଆସୁଥିଲୁ ? ଡାକିଲାଠାରୁ ସିନା !

ଲାଜକୁ ମୁହଁପୋଡ଼ି ବୃନ୍ଦାବନ କହିଲେ; ନାଇଁ କାମଦାମ ଗହଳରେ ଆଉ ପାର ନଥିଲି । ଏଣିକି ବରାବର ଆସିବି ।

ଝିଡ଼କି ପାଖେ ଅଜାଣତରେ କେତେବେଳେ ମୋ ହାତକାତ ବୋଧହୁଏ ଟିକେ ବାଜି ଉଠିଥିବ, ବୃନ୍ଦାବନ ମୁହଁ ଫେରାଇ ଝିଡ଼କି ଆଡ଼େ ଟିକେ ଚାହିଁଲେ, ତା'ପରେ ହଠାତ୍ ଉଠି କହିଲେ; ଆଜି ଯାଉଚି ଦାଦାଭାଇ, କାମ ଅଛି ଆଉ ଯନେ ଆସିବି ।

ଆଗରେ ଅଲୁଅ ଦେଖାଇ ସେ ପଦାକୁ ଆସିଲେ । ତାଙ୍କ ପଛେ ପଛେ ବୃନ୍ଦାବନ । ଘରୁ ବାହାରିଲା ବେଳେ କାହିଁକି କେଜାଣି ବୃନ୍ଦାବନ ଏ ଆଡ଼େ ସେ ଆଡ଼େ ଥରେ ଚାହିଁଲେ । ତା' ପରେ ପିଣ୍ଡାରୁ ଓହ୍ଲାଇ ଦଣ୍ଡିକ ଭିତରେ ଗଛ ଗହଳି ଭିତରେ ଅନ୍ଧୁଆଳ ହୋଇଗଲେ ।

ବୃନ୍ଦାବନଙ୍କୁ ଝଣ୍ଡେଦୂର ବଳାଇ ଦେଇ ସ୍ୱାମୀ ଫେରି ଆସିଲେ । ପିଣ୍ଡା ଖୁଣ୍ଟକୁ ଆଉଜି ସେତେବେଳଯାଏ ଠିଆ ହୋଇଥାଏ ମୁଁ ତାଙ୍କୁ ଚାହିଁ ।

ପାଖକୁ ଆସି ପଚାରିଲେ; ଦେଖିଲୁ ବୃନ୍ଦାବନକୁ ?

ଅନ୍ୟଆଡ଼େ ମନ ଥିଲାପରି ଖାଲି କହିଲି ହୁଁ ।

ଭାରି ଭଲ ପିଲାଟିଏ, ନୁହେଁ ? ସେ କହିଲେ ।

କହିଲି, କେଜାଣି ହେଇଥିବ !

ତହିଁ ଆରଦିନ ବୃନ୍ଦାବନ ପୁଣି ଆସିଲେ ଆମ ଘରକୁ ଚାଲି । ଦାଣ୍ଡ ଘରେ ତାଙ୍କୁ ବସାଇ ସ୍ୱାମୀ ମତେ ଆସି ପଚାରିଲେ ମା' କୋଉଠି ?

ପୂଜା କରୁଛନ୍ତି ଆରଘରେ । କାହିଁକି ?

ବୃନ୍ଦାବନ ଖୋଜୁଛି, ଦେଖା କରିବ ।

ବୃନ୍ଦାବନଙ୍କୁ ଡାକିବାକୁ ସେ ଚାଲିଗଲେ ।

ମାଙ୍କ ସାଙ୍ଗେ ଦେଖାକରି ଫେରିଲା ବେଳେ ଆଡ଼ହୋଇ ମୁଁ ଘର ଭିତରକୁ ପଶିଗଲି । ପିଣ୍ଡାରେ ବୃନ୍ଦାବନ ମତେ ଦେଖିପାରି ପଚାରିଲେ ସେ କିଏ, ରଢ ନା, ଦାସଭାଇ ?

ସେ କହିଲେ; ହଁ ।

ମଲା ମତେ ପୁଣି ଏତେ ଲାଜ । ସେ ଦିନ ମୋରି ଆଗରେ ଲଙ୍ଗଳା ହୋଇ ନେଉଁଥିଲ ପରା ! ଆଜି ପୁଣି ଭାଉଜ ଆସନ ଦଖଲ କରି ବସିଲେଣି । ଲାଜ ଛାଡ଼ୁ ନାହିଁ ତଥାପି ।

ହେଉଁ ମତେ ଲକ୍ଷ୍ୟ କରି ବଡ଼ ପାଟିରେ ବୃନ୍ଦାବନ କହିଲେ, ମୁଢି ଆଉ ନଡ଼ିଆ ଚୂଷିଲି ଭାଉଜ ବୋଉ, ଆଜି ନ ଖାଇଲେ ତମ ଶ୍ରୀହସ୍ତରୁ ମୁଁ ଉଠୁ ନାହିଁ ଏଠୁଁ ଜାଣିଥା ।

ଥାଳି ଗୋଟାକରେ ମୁଢି ନଡ଼ିଆ ସଜାଡ଼ି କବାଟ ଯାଏ ଗଲି, ଯୋଉ ଘରେ ସେମାନେ ବସିଥିଲେ । ଭିତରକୁ ଯିବାକୁ କେମିତି ଭାରି ଲାଜ ମାଡ଼ିଲା ।

ଘର ଭିତରୁ ସ୍ୱାମୀ ଡାକିଲେ; କାହିଁ ଆସିଲ ବୃନ୍ଦାବନ ଏଣେ ଅଧୀର ହେଲାଣି ।

ମୁଣ୍ଡରେ ଲୁଗା ଟିକେ ଟାଣି ଦେଇ ଘର ଭିତରକୁ ଗଲି ।

ମୋ ଆଡ଼କୁ ଚାହିଁ ହସି ହସି ବୃନ୍ଦାବନ କହିଲେ; ଏତେ ପର ହୋଇଗଲି ମୁଁ ? ମତେ ଚିହ୍ନି ପାରୁଚ ନା ?

କିଛି ଜବାବ ଦେଲି ନାହିଁ ।

ସ୍ୱାମୀ କହିଲେ; ମଲା ବୃନ୍ଦାବନଟାକୁ ଏତେ ନାଜ ପଡ଼ୁଚ ?

ମତେ ମନେ ପଡ଼ୁଛି ? ବୃନ୍ଦାବନ ପୁଣି ପଚାରିଲେ ।

ବାଧ ହୋଇ କହିଲି; ହଁ ।

କାହିଁ କିଛି ତ ପଚାରିଲେ ନାହିଁ ।

କ'ଣ ପଚାରିବି ?

ବାପା ହେଲେ ତମର କେମିତି ଅଛନ୍ତି ? ଆଉ, ଆଉ ଗୋଟାଏ କଥା ?

ଆଶ୍ଚର୍ଯ୍ୟ ହୋଇ ତାଙ୍କ ଆଡ଼େ ଚାହିଁଲି ।

ସେ କହିଲେ; ଆଉ ମୁଁ ତମକୁ ଏଣିକି ଭାଉଜବୋଉ ବୋଲି ଡାକିବି ନା ହେଇ ରାଧି ବୋଲି ଡାକିବି । ବୃନ୍ଦାବନ ବଡ଼ ପାଟି କରି ହସି ଉଠିଲେ ।

ମଲା ଯା, ନିଆଁ ଲଗା ବଗିଡ଼ିଟା ଭିତର ଘରକୁ ପଶିଲାଣି, କହି ମୁଁ ସେଠୁ ପଳାଇ ଆସିଲି ।

## ( ଚାରି )

ସେଇ ଦିନଠୁଁ ବୃନ୍ଦାବନ ପ୍ରାୟ ସବୁଦିନେ ଆସନ୍ତି ଆମ ଘରକୁ । ଆସିଲେ ମୋ ସଙ୍ଗେ ଥଟ୍ଟା ନକଲ ହେବା ଯେମିତିକି ତାଙ୍କର ଗୋଟାଏ କାମ ହେଇଚି, ମତେ କିନ୍ତୁ କାଠ କାଠ ଲାଗେ କେମିତି ଆଗ ପରି ତାଙ୍କ ସଙ୍ଗେ ସହଜ ଭାବରେ ମିଶିବାକୁ । କିନ୍ତୁ ସେ କ'ଣ ଛାଡ଼ିବା ଜନ୍ତୁ ? ଏମିତି କଥା ପଦେ ପଦେ ପଚାରି ବସନ୍ତି ଯେ ଜବାବ ନ ଦେବାକୁ ବାଟ ନ ଥାଏ । ସ୍ୱାମୀ ଦିନେ ଦିନେ ଟିକେ ବିରକ୍ତ ହୁଅନ୍ତି । କହନ୍ତି, ଯେ ଏତେ ନାଜ କରୁଚ, ତତେ କ'ଣ ଭଲ ଲାଗୁଚି ତା ସଙ୍ଗେ ଦୁଲୁଣେଇ ହବାକୁ ? ମୋ ଉପରେ କି ତାଙ୍କ ଉପରେ ବିରକ୍ତ ହୋଇ ସେ ଏ କଥା କହନ୍ତି ମୁଁ ବୁଝିପାରେନା କିନ୍ତୁ ଆଜି ଭାବୁଚି କେଡ଼େ ଉଚିତ ଥିଲା ମୋର ସେତିକିବେଳେ ସେ କଥା ବୁଝି ପାରିବା ।

ଜୀବନ ଭରି ଏ ଦୁଃଖ ଯନ୍ତ୍ରଣା ତାହାହେଲେ ମତେ ଆଉ ସହିବାକୁ ପଡ଼ି ନ ଥାନ୍ତା । କିନ୍ତୁ କ'ଣ ହବ । ସୁଖ ସୌଭାଗ୍ୟର ଦିନ ତ ମୋର ସରି ଆସିଥିଲା ତାଙ୍କ ହାବଭାବରେ, ସିଏ ଏ ଦିନସବୁ କରୁଛନ୍ତି ।

ଦିନେ ସକାଳେ, ମେଘ ଛୁଡ଼ିଯାଇ ସେ ଦିନ ଗଛପତ୍ର ଦିହରେ କଅଁଳ ଖରାର ସୁନେଲି ତବକ ଜଡ଼ି ଯାଇଛି । ଅଗଣାରେ ବଛଣା ତକିଆ ଖରାରେ ଦଉଚି । ଘର ଭିତରୁ ସେ ଡାକିଲେ; ରାଧି !

ତର ତରରେ ଶେଜ ତକିଆ ମେଲାଇ ଦେଇ ଘର ଭିତରକୁ ଆସିଲି । ଖଟଉପରେ ସେ ବସିଥିଲେ । କହିଲେ, ବସ୍ ଟିକେ କାମ ଅଛି ।

ପାଖରେ ଯାଇ ବସିଲି । ମୋର ଗୋଟାଏ ହାତ ତାଙ୍କ କୋଡ଼ ଉପରକୁ ଟାଣି ନେଇ ସେ କହିଲେ, ଏତେ ଦିନ ତ ଦୁଃଖ କଷ୍ଟରେ ଚଳିଗଲା ଏଣିକି କ'ଣ ହେବ ?

ଆଶ୍ଚର୍ଯ୍ୟ ହୋଇ ପଚାରିଲି, କ'ଣ ଚାଲିଗଲା ?

ଆମର ଘରକଥା କହୁଛି । ମୁଁ ତ ବର୍ଷେ ହେଲା ଗାଁରେ ଆସି ବସିଲି । କଟକରେ ଥିଲେ ଚାକିରି ବାକିରି ଖଣ୍ଡେ କୋଉଠି ଦେଖିଥାନ୍ତି ଅବା ! ଘରେ ବସି ଖାଇଲେ କେତେ ଦିନ ଯିବ ? ଜମିବାଡ଼ି ଗୁଡ଼ାଏ ସେମିତି ଥାଆନ୍ତା ଭଲ, ସେଥିପାଇଁ ଭାବନା ପଡ଼ନ୍ତା ନାହିଁ । ଏଣିକି କୋଉଠି ରୋଜଗାରର ଫନ୍ଦା ନ ଦେଖିଲେ ଚଳିବ କୁଆଡ଼ୁ ?

ତେବେ କ'ଣ କଟକ ଯିବ ? ଡରି ଡରି ପଚାରିଲି ।

ତଳକୁ ମୁହଁପୋତି ସେ ଆସ୍ତେ ଆସ୍ତେ କହିଲେ; ତା' ଛଡ଼ା ଆଉ ଉପାୟ କଣ ?

ଭୟରେ ଛାତି ଭିତର କ'ଣ ହୋଇଗଲା ମୋର ସେ କଥା ଶୁଣି । ଗଳାକୁ ତାଙ୍କର ଦି ହାତରେ ବେଢ଼ାଇ ଧରି ବିକଳ ହୋଇ କହି ପକାଇଲି; ନାଇଁ, ନାଇଁ ତମେ କଟକ ଯା'ନା । ମୁଁ ମରିଯିବି ଗଲେ । ତାଙ୍କ ଛାତିରେ ମୁହଁ ଲୁଚାଇ ଝର ଝର ହୋଇ କାନ୍ଦି ପକାଇଲି ।

କେତେ ଶରଧାରେ ସେ ମୋ ମୁହଁକୁ ଟେକିଧରି; କାନିରେ ଲୁହ ପୋଛି ଦେଲେ । ହସି ହସି କହିଲେ, ମୁଁ କ'ଣ ସତରେ କଟକ ଚାଲିଯିବି ତତେ ଛାଡ଼ି ?

ତଥାପି ସନ୍ଦେହ କରି ପଚାରିଲି; ଆଉ ଏଇଛଣି କହିଲ ?

ମିଛରେ ସେମିତି କହୁଥିଲି ନା । ତେବେ ବୃନ୍ଦାବନ ଦିନେ ମତେ କହୁଥିଲା ତାଙ୍କ ଜମିଦାରୀ ସିରସ୍ତାରେ ଏଇଠି ଖଣ୍ଡେ ଚାକିରି ଦେବ ।

ଆଗ୍ରହରେ କହି ପକାଇଲି; ହଁ—ହଁ ତମେ ସେଇଠି ଚାକିରି କର, ଭଲ ହେବ । ମତେ ଛାଡ଼ି ଆଉ କଟକ ଫଟକ ପଳାନା ।

ସେ କହିଲେ ଆଜି ସଞ୍ଜବେଳେ ଆସିବ ସେ । ମୁଁ ବୁଝିକରି କହିବି ବୋଲି କହିଲି ତାକୁ ଚାକିରି କଥା ।

ତହିଁ ଆରଦିନ ସତରେ ସେ ଚାକିରି ପାଇଲେ । ବେଳ ଘଡ଼ିକଠାଉଁ ଖାଇପିଇ ଚାଲିଯାନ୍ତି ସେ ବରାବର ସଞ୍ଜବେଳେ ଯାଇ ଫେରନ୍ତି ଘରକୁ । ଦିନେ ଦିନେ ରାତି ହୋଇ-ଯାଏ ଅନେକ । ଆକୁଳ ଅପେକ୍ଷାରେ ଚାହିଁ ଚାହିଁ ସେ ଦିନ ଆଖିରୁ ପାଣି ମରେ ।

ଦିନେ; ଖରାବେଳଠାଉଁ ସେ ଦିନ ଘୋର ମେଘ ଉଠେଇ ଥାଏ । ସେ ଘରେ ନ ଥିଲେ । ଖଟ ଉପରେ ପଡ଼ି ପଡ଼ି ଶୋଇବାକୁ ଚେଷ୍ଟା କରୁଚି, ଦୁଆର ମୁହଁ ପାଖେ ପାଟି ଶୁଭିଲା । ଚାହିଁ ଦେଖିଲି ବୃନ୍ଦାବନ, ଧଡ଼ପଡ଼ ହୋଇ ଖଟ ଉପରେ ଉଠି ବସିଲି । ସେ ମୋ ପାଖକୁ ଆସି ହସି ହସି ପଚାରିଲେ; ନିଦ ମାଡ଼ୁ ନାହିଁ ପରା ଶୋଇ ଶୋଇ ?

କହିଲି, ନାହିଁ ।

କେମିତି ଲୋକ ସେ କେଜାଣି କାହିଁ କହୁଁ ଆସି ଖଟ ଉପରେ ମୋ ପାଖଟାରେ ବସି ପଡ଼ିଲେ । ପଚାରିଲେ; ବଡ଼ ମା' କାହାନ୍ତି ?

ସେଦିନ କାହିଁକି ଖର ଜର ମାଡ଼ିଲା ତାଙ୍କ ବ୍ୟବହାର ଦେଖି ! କହିଲି ସେ ଶୋଇଛନ୍ତି ।

ଦଣ୍ଡେ ଗଲା ।

ସେ ଆଗେ କଥା କହିଲେ । ଡାକିଲେ ରଣ !

କ'ଣ ?

ଦୁ' ବର୍ଷ ତଳକଥା ମନେ ପଡ଼େ ତୋର ? ସେଦିନ ଏମିତି ବର୍ଷା । ଓଳିତଳ ପାଣିରେ ଭସାଇବାକୁ ମତେ ତୁ କାଗଜ ଡଙ୍ଗା ତିଆରି କରିବାକୁ କହିଲୁ । ପଚାରିଲି କ'ଣ ଦବୁ ଡଙ୍ଗା କରିଦେଲେ ? ମନେପଡ଼େ ସେଦିନ କହିଥିଲୁ ମୁଁ ତମକୁ ବାହା ହେବି । ସେଇଦିନୁ ଏ ଧାରଣାଟା ମୋ ମନରେ ଏକାବେଳକେ ଜଡ଼ି ରହିଛି ।

ଆଜି ସ୍ୱାମୀଙ୍କର ଏ କି କଥା ? ଖୁବ ଅଡୁଆ ଲାଗୁଥାଏ ମତେ, କ'ଣ କରିବି, କାଠ ପିତୁଳା ପରି ବସି ରହିଲି ।

ସେ କହିଗଲେ; ଆଜିଯାଏ ସେଥିପାଇଁ ସେମିତି ଏକୁଟିଆ ଅଛି । କେତେ ଯାଗାରୁ ସମ୍ବନ୍ଧ ଫେରାଇ ଦେଲଣି । କାହାପାଇଁ, ଏ ସବୁ ଜାଣୁ ? କାହା ରୂପ ଗୁଣର ତୁଳନା ପୃଥିବୀ ଭିତରେ ଆଜିଯାଏ ପାଇ ନାହିଁ ବୋଲି ସେଇଦିନୁ ଏମିତି ଏକୁଟିଆ ହୋଇ ରହି ବସିଚି ଜାଣୁ ରଣ ?

ବାହାରେ ଝର ଝର ହୋଇ ବର୍ଷା ଆରମ୍ଭ ହେଲା । 'ଦୁଆରୁ ଲୁଗା ତୋଳି ଆଣେ' ବୋଲି କହି ସେ ଘରୁ କୌଣସି ମତେ ପଳାଇ ଆସିଲି, ଏକାଥରକେ ମା' ସୋଇଛନ୍ତି ଶୋଇଥିଲେ ।

ଗୋଡ଼ ଦେଖିଣି ମା ପଚାରିଲେ; କିଏ ଆସ୍ତେ ଆସ୍ତେ ପାଖକୁ ଯାଇ ତାଙ୍କ ଗୋଡ଼ ଘସି ବସିଲି । ଦାଣ୍ଡ ଘରକୁ ପୁଣି ଯିବାକୁ ମୋର ଆଉ ସାହସ ହେଲା ନାହିଁ ।

× × ×

ସେଦିନ ରାତିରେ, ଖାଇ ସାରି ଖଟ ଉପରେ ସ୍ୱାମୀଙ୍କ ପାଖରେ ଶୋଇ କହିଲି; ବୃନ୍ଦାବନ ଆଜି ଆସିଥିଲେ ଏଠିକି ।

ଭାରି ଆଶ୍ଚର୍ଯ୍ୟ ହୋଇ ସେ ପଚାରିଲେ; କେତେବେଳେ ? କହିଲି; ଦି ପହରେ, ତମେ ନ ଥିଲା ବେଳେ ।

କଥା ଶୁଣି ତାଙ୍କ ମୁହଁଟା କେମିତି କଳା ପଡ଼ିଗଲା । କହିଲେ; ଭାରି ବେହିଆ ଏ ବୃନ୍ଦାବନଟା । ତୁ ତା ସାଙ୍ଗେ ସାବଧାନ ହୋଇ ଚଳୁଥିବୁ । ତାହିଁ ଆର ଦିନଠାରୁ ସେ କାମକୁ ଯିବା ବେଳ ବଦଳାଇ ଦେଲେ । ଦି ପହରେ, ଟିକେ ଶୋଇ ଗଡ଼ିଇ ନେଉଛି ଗଲା ପରେ ବାହାରନ୍ତି, ଆସୁ ଆସୁ ରାତି ସେମିତି ଅନେକ ହୋଇଯାଏ । ଭାବିଲି ଆଉ ବୋଧହୁଏ ବୃନ୍ଦାବନ ମତେ ବିରକ୍ତ କରିବାକୁ ଆସିବେ ନାହିଁ ।

## ( ପାଞ୍ଚ )

ବୃନ୍ଦାବନ କୁହୁକ ଜାଣନ୍ତି ନା କଣ ? ଉପରଓଳି ସ୍ୱାମୀ ଦିନେ ଯେମିତି କାମକୁ ଚାଲି ଯାଇଛନ୍ତି ସେ କୁଆଡ଼ୁ ଆସି ପୁଣି ପହଞ୍ଚି ଗଲେ । ନ ଦେଖିଲା ପରି ହୋଇ ମୁଁ ସେ ଘରୁ ବାହାରି ଯାଉଥିଲି ଡାକିଲେ, "ରତି" ।

ବାଧ୍ୟ ହୋଇ ଫେରି ଚାହିଁଲି । ପଚାରିଲି; କାହିଁକି ଡାକୁଚ ? ମୋର କାମ ଅଛି ଯାଉଚି ।

କାମ ଅଛି ବୋଲି ଖଣ୍ଡେ ପାନ ବି ମିଳିବ ନାହିଁ ? ସେ କହିଲେ ।

ଖାଲି ଚିଡ଼ି ମାଡ଼ୁଥାଏ । କ'ଣ କରିବି, ପାନ ଆଣିଦେଲି । ନଇଲେ ଏ ଯାଦୁ ଚକ୍ରୀ ଯା'ନ୍ତି ସ୍ୱାମୀଙ୍କର ଗୃହକଣ୍ଟକ ଯେ ଥିବ ।

ଘର ଭିତରେ ଜଳାକବାଟି ପାଖରେ ସେ ଠିଆ ହୋଇଥିଲେ । ପାନ ଥାଳିଆ ଥୁଏଁ ମୋ ହାତଟା ଧରି ପକାଇ କହିଲେ; ମୋ କଥା ଶୁଣିବୁ ନାହିଁ ଥରେ ?

ବିରକ୍ତିରେ ହାତଟା ଛଡ଼ାଇ ନେଇ ପଚାରିଲି; କି କଥା ?

ସେ କହିଲେ, ଶୁଣି ବିଶ୍ୱାସ ଯିବୁ ମୋ କଥାରେ ? ମୁଁ—ମୁଁ ତ କେତେ ଆଶା କରି ଏଠିକି ଆସେ । ତୋ ମୁହଁରୁ ଖାଲି ପଦେ କଥା ଶୁଣିବାକୁ !

ହାଡ଼ ଜଳିଗଲା କଥା ଶୁଣି । କ'ଣ କରିବି ଚୁପ୍ ହୋଇ ଶୁଣିବାକୁ ହେଲା ସିନା ।

ସେ କହିଲେ ଏ ଦି'ବର୍ଷ ଏକ ପ୍ରକାର ନିଶ୍ଚିନ୍ତ ହୋଇଥିଲି ତତେ ନ ଦେଖି । ଏଣିକି ସତରେ କହୁଚି ମତେ ଖାଇବା ପିଇବା କଷ୍ଟ ପରି ଲାଗିଲାଣି ତୋ କଥା ଭାବି, ରତି ! ସତେ ମୋଠଉଁ ଏମିତି ଦୂର ହୋଇ ରହିବୁ ସବୁଦିନେ ? ପାଖକୁ ଆସି ସେ ପୁଣି ମୋ ହାତ ଧରିଲେ ।

ଦେହ ଗୋଟାକ ଥରି ଉଠିଲା ମୋର ରାଗରେ । ଆଉ ସମ୍ଭାଳି ପାରିଲି ନାହିଁ । ଜୋରରେ ହାତଟା ତାଙ୍କର ଛୁଞ୍ଚାଡ଼ି ଦେଇ ଘରୁ ବାହାରିଗଲି । ଗଲାବେଳେ କହିଲି, ଭଦ୍ରଲୋକ ଯଦି ହୋଇଥିବ ତମେ, ଆଉ ଦିନେ ଏ ଘର ଦୁଆର ମୁହଁ ମାଡ଼ିବ ନାହିଁ କହି ଦଉଚି ।

ମୋ ପଛେ ପଛେ ସେ ବାହାରକୁ ଆସିଲେ । ଚାଲି ଗଲାବେଳେ ଖାଲି ଏତିକି ତାଙ୍କ ପାଟିରୁ ଶୁଭିଲା, 'ଆଚ୍ଛା ହଉ' । ମୁଁ ଶୁଣି ନ ଶୁଣିଲା ପରି ଚାଲି ଆସିଲି ।

ସଞ୍ଜବେଳ ପରି ସେ ଦିନ ବି ସ୍ୱାମୀ ଅନେକ ରାତିରେ ଘରକୁ ଫେରିଲେ । ଖାଇ ବସି ପଚାରିଲେ, ଆଜି ବୃନ୍ଦାବନ ଆସିଥିଲା ?

କହିଲି; ହଁ ।

ଆଜିକା କଥା ତାଙ୍କ ଆଗେ କହିଦବାକୁ ଭାରି ମନ ହଉଥାଏ । କିନ୍ତୁ କହିବି କହିବି ବୋଲି କିଛି କହି ପାରିଲି ନାହିଁ ଲାଜରେ ।

ଆଉ ଜଚ୍ଛ ନ ପଗୃର ଝାଇଦାଶ ସେ ଉଠିଗଲେ । ହାତ ଧୋଇ ଚୁପ୍‌ହୋଇ ଯାଇ ଖଟ ଉପରେ ଶୋଇ ପଡ଼ିଲେ । ମୋର ବି ଅଉ ସାହସ ହେଲନାହିଁ ତାଙ୍କୁ ବିରକ୍ତ କରିବାକୁ ସେ ଦିନ ।

ଦି'ଦିନ ପରେ ଶୁଣିଲି ସେ ଜମିଦାରଘର ଚାକିରି ଛାଡ଼ି ଦେଇଛନ୍ତି ।

( ଛଅ )

ଏଇଯାଏ କହି ଅଳୁଅ ପୁଣି ଥରେ ଚୁପ୍‌ହେଲା । ତେଜ ତାର ଖୁବ୍ ମିଞ୍ଜି ମିଞ୍ଜି ହୋଇ ଆସିଲା, ସତେ କି ଏଇକ୍ଷଣି ଲିଭିଯିବ !

ଗଛ ଉପରୁ ବାଦୁଡ଼ିଟା ବ୍ୟସ୍ତ ହୋଇ ଡାକିଲା; ମଲି ମଲି, କଥାଟା ଏମିତି ଅଧା କଣ ରହିଯିବ କି ? ସେଇଠୁଁ କ'ଣ ହେଲା କୁହ କୁହ—

ଖୁବ୍ ଧୀରେ, ଖୁବ୍ ଚୁପ ଚୁପ, ଅଳୁଅ ସେଇଠୁ ଆରମ୍ଭକଲା; ମୋ କଥା ଆଉ ବେଶୀ ନାହିଁ । ଏଣିକି ଯୋଡ଼କଥା କହିବି, ବଡ଼ କରୁଣ ବଡ଼ ଚକୁଫଟା ସେ କାହାଣୀ । ଏ ଅଳିନ୍ଦ ସ୍ଥାଣରେ ବି ଆଜିଯାଏ ସେ କଥା ଗୁଡ଼ାକ ନିଆଁ ପରି ଜଳୁଚି, ଦିନରାତି !

ତାପରେ ସେ'ତ ଚାକିରି ଛାଡ଼ିଦେଲେ । ମନେ ମନେ ଖୁବ୍ ଖୁସି ହୋଇ ଭାବିଲି ଯା' ହେଉ ଏଥର ବୃନ୍ଦାବନଙ୍କ ହାତରୁ ରକ୍ଷା ପାଇଲି ମୁଁ । କିନ୍ତୁ ଯାହାପାଇଁ ଏତେ ଆନନ୍ଦ ସେ ସ୍ୱାମୀ କାହିଁକି ଅରପର ମୋ ସଙ୍ଗେ ଅଉ ସହଜରେ ମିଶି ପାରିଲେ ନାହିଁ ସେହିଦିନ ଠାରୁଁ । କେମିତି ମତେ ଦେଖିବେଲେ ଭଲକରି କଥା କହନ୍ତି ନାହିଁ, ଖାଲି ଜାରନ୍ଥଡ଼ା ଦେଇ ବୁଲନ୍ତି । ଦରକାର ପଡ଼ିଲେ ଯାହା ଦିଟା ଗୋଟାଏ କଥା କହନ୍ତି ସେତିକି ବି ପୁଣି ମୁହଁ ଖୁରେଇ । ଭାବିଲି ମୋର ସୁଖର ଦିନ ଏଣିକି ସରି ଆସିଲା ।

କାହିଁକି ସେ ମୋ ଉପରେ ଚିଡ଼ିଛନ୍ତି ଦିନେ ଦିନେ ପଚାରିବାକୁ ଭାରି ମନହୁଏ, କିନ୍ତୁ ମୁହଁକୁ ଚାହିଁ ତାଙ୍କର ସାହସ ହୁଏନି ପଚାରିବାକୁ ସେ କଥା । କାନ୍ଦିଲେ ବେଶୀ ଚିଡ଼ିବେ ? ରାତିରେ ସେ ଶୋଇ ପଡ଼ିଲା ପରେ ଚୁପ ଚୁପ ଅନେକ ବେଳଯାଏଁ କାନ୍ଦେ । ବେଳେ ବେଳେ ଭାବେ ଏ ନିଉଛୁଣା ଜୀବନଟାରେ ଅଉ କଅଣ ଦରକାର ? ପୋଖରୀ ଅଥଳ ପାଣିରେ ଗୋଡ଼ ଖସାଇବାକୁ ଭାରି ମନହୁଏ । ଏଇ କଥା ଭାବି ନିଘୁଞ୍ଚିଆ ରାତିଅଧରେ କେତେଥର ପୋଖରୀକି ମଧ୍ୟ ଯାଏ, କିନ୍ତୁ ଯାହା ଲାଗି ମୁଁ ଘରକୁ ଆସିଚି ସେ ଯେ ମୋ ପେଟରେ । ମରିବାର ମୋର କ'ଣ ଅଧିକାର ଅଛି ଏଇକ୍ଷଣି ?

ଆସ୍ତେ ଆସ୍ତେ ଘରକୁ ଲେଉଟି ଆସେ ।

ଆଜି କିନ୍ତୁ ମନେ ହଉଚି, ସେତେବେଳେ ଯଦି ମୁଁ ମରିଥାନ୍ତି, ତାହାହେଲେଁ କାମ ଛିଣ୍ଡି ଯାଇଥାନ୍ତା ଏକା ଥରକେ । ଆହୁରି ହୀନସ୍ତା, ଆହୁରି ଦହଗଞ୍ଜ ହୁଏତ ବଳି, ଯାହା ମୋ କପାଳରେ ଥିଲା ତାକୁ ଭୋଗ କରନ୍ତା କିଏ ?

ଆଉଦିନେ, ସେ ଦିନ ବି ଏମିତି ଝଡ଼, ଏମିତି ବର୍ଷା । ଯାହା ସୃଷ୍ଟି ଉଜାଡ଼ି ଦବାକୁ ଯେଉଁଦିନ ଯେମିତି କଳା ବଉଦ ମେଳରେ ପ୍ରଳୟର ଧାରା ଫିଟିଥାଏ । ପାଣି ପବନ ଜୋରରେ ଗଛପତ୍ର ଗୁଡ଼ାକ ଠକ ଠକ ହୋଇ କମ୍ପୁଥାନ୍ତି । ସକାଳୁ ମୋ ସ୍ୱାମୀ କ'ଣ ଗୋଟାଏ ଅଳ୍ପ କଥାରେ ମୋ ଉପରେ ଭାରି ରାଗି କୁଆଡ଼େ ଚାଲି ଯାଇଥିଲେ । ସଞ୍ଜ ଆସି ହୋଇଗଲା; ଘର ବାହାର ଚାହିଁ ଚାହିଁ ଆଖିରୁ ମୋର ପାଣି ମଲା, ସେ ଫେରିଲେ ନାହିଁ । ମୋ ମନ ଭାରି ଛଟାଟ ହୋଇଗଲା । କାହିଁକି ମିଛରେ ତାଙ୍କ କଥାରେ ଜବାବ ଦେଇ ମଲି । ଏତେବେଳ ଯାଏ କୁଆଡ଼େ ଗଲେ ! କ'ଣ କଲେ ।

ଦାଣ୍ଡ ପିଣ୍ଡାରେ କାହା ପାଟି ଶୁଭିଲା । ସେ ଆସିଲେ କି ଆଉ, ଦଉଡ଼ି ଗଲି ଦାଣ୍ଡ ପିଣ୍ଡାକୁ । କିନ୍ତୁ ସେ କାହାନ୍ତି ? ଏ'ତ ବୃନ୍ଦାବନ !

ମତେ ଦେଖି ବୃନ୍ଦାବନ ଭାରି ବ୍ୟସ୍ତ ହୋଇ କହିଲେ, ରତି, ଆଲୁଅଟା ନେଇ ଆସିବୁଟି ବାଡ଼ି ଆଡ଼କୁ । ସାପ ଭାଇଙ୍କ ବାଟରେ କ'ଣ ଗୋଟାଏ କାମୁଡ଼ି ଦେଲା । ଜଲଦି ।

ଦଣ୍ଡକେ ଆଖି ଆଗରେ ମତେ ସବୁ ଅନ୍ଧାର ଦିଶିଗଲା । ଭାବିବାର ସେତେବେଳେ ମୋର ଆଉ ବେଳ ନ ଥିଲା । ଘର ଭିତରୁ ଆଲୁଅଟା ନେଇ ମୁଁ ପଦାକୁ ବାହାରି ପଡ଼ିଲି, ମୋ ଆଗେ ଆଗେ ବୃନ୍ଦାବନ !

କ'ଣ କାମୁଡ଼ିଲା, କେମିତି କାମୁଡ଼ିଲା । ସାପ ହେଲେକା ନୁହେଁ ତ ! ଏଇ ଚିନ୍ତା ମୋ ମୁଣ୍ଡରେ ପଶି ବୁଦ୍ଧି ଜ୍ଞାନ ସବୁ ମୋର କୁଆଡ଼େ ହଜାଇ ଦେଲା । ଉତ୍କଣ୍ଠାରେ କେତେ ବାଟ ଚାଲି ଆସିଲି ଜଣାଗଲା ନାହିଁ । ହଠାତ୍ ମନେ ହେଲା ମୁଁ କୁଆଡ଼େ ଆସୁଚି । ଏଟା ସେ ଗାଁ' ଦାଣ୍ଡ, ଆମ ବାଡ଼ି ତ ରହିଲାଣି କେତେ ପଛରେ । ଆଉ ଆଗକୁ ଗଲି ନାହିଁ, ସେଇଠି ଠିଆ ହୋଇ ଡାକିଲି; ବୃନ୍ଦାବନ ଭାଇ !

କାହାନ୍ତି କିଏ । ଏ ବଣ ବାଟ ଭିତରେ ମୁଁ ଏକା । ଡରରେ ଛାତି ଭିତର ରକ୍ତ ମୋର ପାଣି ହୋଇଗଲା ।

ମେଘ ଛାଡ଼ି ଯାଇଥିଲା ସେତେବେଳକୁ । ବାଟ ଘାଟ ସୁ ତୁରି କରି ବଉଦ ଫାଙ୍କରେ ଯେତେବେଳେ ଚାନ୍ଦନୀର ଚୂନ କାମ ହଉଥିଲା ଅନ୍ଧାରର ଶିଉଳିଲଗା ଗାଇଜରେ । ମନରେ ଖୁବ୍ ହେମତ କରି ଆଖି ବୁଜି ଘର ଆଡ଼କୁ ପଳେଇ ଆସିଲି ଏକା ଦଉଡ଼ରେ । କବାଟ ପାଖେ ଆସି ଥକା ହୋଇ ଠିଆ ହୋଇଗଲି ।

ଘର ଭିତରେ ଅଳୁଅ ଜଳୁଛି । ମୋ ସ୍ୱାମୀ ଘର ମଝିରେ ଠିଆ ହୋଇଛନ୍ତି କବାଟ ଆଡ଼କୁ ଚାହିଁ ।

ସାପ ଫାପ କାମୁଡ଼ିବା କଥା ତାହାହେଲେ ସବୁ ମିଛ । ଏତକ ବୃନ୍ଦାବନଙ୍କ ଫିକର୍ !

ମତେ ଦେଖି ସେ ପାଖକୁ ଆସିଲେ । ରାଗରେ ଦାନ୍ତ କାମୁଡ଼ି ପଚାରିଲେ; କୁଆଡ଼େ ଯାଇଥିଲୁ ଏତେ କନ୍ଧ ।

ମୋ ମୁଣ୍ଡ ସେତେବେଳକୁ ବୁଲିଯାଉଥାଏ । କିଛି କହି ପାରିଲି ନାହିଁ । ସେ ଗର୍ଜ୍ଜନ କରି କହିଲେ, ମୁଁ ସବୁ ଜାଣେ । ଦରକାର ନାହିଁ ଶୁଣିବା । ଗୁଲି ଯା ମୋ ଆଗରୁ । ହଠାତ୍ ସେ ମୋତେ ଖୁବ୍ ଜୋରରେ ପଛକୁ ପେଲି ଦେଲେ ।

ଟାଳ ସମ୍ଭାଳି ନ ପାରି ମୁଁ ମୁହିଁମାଡ଼ି ପଡ଼ିଗଲି । ଦୁଆର ବନ୍ଧରେ ପେଟଟା ଖୁବ୍ ଜୋରରେ ବାଡ଼େଇ ହୋଇଗଲା ପଡ଼ିଲାବେଳେ । ଝୁଣ୍ଟି ଚରିହୋଇ ପାଣିଧାର ପରି ପାଚି ବାଟେ ରକ୍ତ ବୋହିଗଲା ଏତିକି ମୋର ମନେ ଅଛି, ତା ପରେ ଆଉ କ'ଣ ହେଲା ଜାଣେ ନା, ଧୀରେ ଧୀରେ ମୋର ଚେତା ହଜିଗଲା । ସେମିତି ଅଚେତା ଅବସ୍ଥାରେ ପେଟରୁ କୁଆଡ଼େ ମୋର ମଲା ପିଲାଟିଏ ଜନ୍ମ ହେଲା, ତା ଧାଙ୍ଗେ ଧାଙ୍ଗେ ସନ୍ନିପାତ । ଏତେ କଷ୍ଟରେ ବଞ୍ଚିବା ଆଶା ଯାହା ଟିକେ ଥିଲା, ତା' ବି ଗଲା ।

ତହିଁ ଆରଦିନ ବୃନ୍ଦାବନ ଅଉ ସମ୍ଭାଳି ନ ପାରି ସବୁ କଥା ମୋ ସ୍ୱାମୀଙ୍କ ପାଖେ ମାନିଗଲେ । ସ୍ୱାମୀ ପାଗଳ ପରି ଦୌଡ଼ି ଆସି ମୋ ହାତ ଧରି ଭୋ ଭୋ ହୋଇ କାନ୍ଦି ପକାଇଲେ । କହିଲେ; ରତି ! ଏଇ ଥରକ ମତେ ତୁ କ୍ଷମା ଦେ । ମୁଁ ମଣିଷ ନୁହେଁ—ମୁଁ ପଶୁ । ତାଙ୍କ ବଦଳ ଦେଖି ଏତେ କଷ୍ଟରେ ପୁଣି ବଞ୍ଚିବାକୁ ମୋର ମନହେଲା । କିନ୍ତୁ କ'ଣ ହେବ; ଦିନ ତ ମୋର ସରି ଆସିଥିଲା । ଅଉ ଦଣ୍ଡକ ପରେ ମୋର ସବୁ ଶେଷ ହୋଇଗଲା ।

ପିଲାଙ୍କ ପରି ମତେ ଦି ହାତରେ କୁଣ୍ଢାଇ ଧରି ସେ କହିଲେ ରତି, ରତି ! ଆ ଫେରିଆ । ଅଉ ତୋ ଉପରେ ରାଗିବି ନାହିଁ ଫେରିଆ ।

ସେହିଦିନୁ ସେ ପାଗଳ ହୋଇ କୁଆଡ଼େ ଚାଲିଗଲେ ।

ତା ପରେ ମତେ ସମସ୍ତେ ନେଇ ନଦୀ ଆରପଟ ମଶାଣିକି ଆଣିଲେ । ମୋର ସେ ମଲା ପିଲାଟିକି ଆଗରୁ ଆଣି ଏଇ ମଶାଣିରେ ଆଉ ଠାଏ କେଉଁଠି ପୋତିଥିଲେ । ଜୁଇନିଆଁର ସର୍ବଗ୍ରାସୀ ବାହୁ ବେଢ଼ାରେ ଘଡ଼ିକେ ଏ ଦେହ ଜଳିପୋଡ଼ି ପାଉଁଶ ହୋଇଗଲା । ବାକି ରହିଗଲା ଖାଲି ଗୋଟାଏ ଆଲୁଅ; ଇମିତି ମୋର ଦେହ ପରି, ଖୁବ୍ ବଡ, ଖୁବ୍ ତେଜ ।

ଆଲୁଅ ଚୁପ ହେଲା ।

ଗଛ ଉପରୁ ବାଦୁଡ଼ିଟା ପାଟିକରି ପଚାରିଲା—ସେଥିପାଇଁ, ଅନ୍ଧାର ହେଲେ ଏଇ ପଡ଼ିଆରେ ଆଲୁଅ ଜଳାଇ ତୁମର ପିଲାଟିକି ଖୋଜି ବୁଲୁଛ ସବୁଦିନେ ?

ଉତ୍ତର ନାହିଁ । ଆଲୁଅ ସେତେବେଳକୁ ଲିଭି ଯାଇଥିଲା ।

ତୋଟା ଆଡ଼େ, ଗଛପତ୍ରଙ୍କୁ ଘୁରାଇ ବତାସ ପବନ ବାହୁନି ଗଲା ସୁ-ସୁ-ସୁଁ...

---

[ 'ବାରୁଣୀ', ବସନ୍ତ ସଂଖ୍ୟା, ୧ମ ବର୍ଷ, ୧ମ ସଂଖ୍ୟା, ୧୩୩୩ ଜାନୁଆରୀ ୧୯୬୬ ]

# ଶିକାର

—ଭଗବତୀ ପାଣିଗ୍ରାହୀ

ସେ ଅଞ୍ଚଳରେ ଘିନୁଆର ନାମ ବିଖ୍ୟାତ—ଶିକାରୀ ହିସାବରେ । ତାର ପ୍ରଧାନ ଅସ୍ତ୍ର ତାର ହାତ ତିଆରି ଧନୁଶର । ସେ ଶର ମାରିଲା ବେଳେ ଚିତ୍ ହୋଇ ଶୋଇପଡ଼େ, ଗୋଟିଏ ପାଦଟି ଧନୁରେ ଲଗାଇ ଦେଇ କାନ ପର୍ଯ୍ୟନ୍ତ ଶରଟି ଟାଣି ନେଇ ଛାଡ଼ିଦିଏ । ମାଇଲିଏ ଦୂରରୁ ଶର ମାରି ସେ ଲକ୍ଷ୍ୟ ବିନ୍ଧି ପାରେ । ଏହି ଧନୁରେ ସାହାଯ୍ୟରେ ସେ ହରିଣ, ସମ୍ବର, ବାରହା, ଭାଲୁ ମାରିଛି ଅଗଣିତ; ଚିତା ବାଘ ବି ମାରିଛି ଅନେକ । କିନ୍ତୁ ମହାବଳ ମାରିଛି ମୋଟେ ଦୁଇଟି । ମହାବଳ ଦୁଇଟି ମାରି ସେ ଡେପୁଟି କମିଶନରଙ୍କ ଠାରୁ ବେଶ୍ ପୁରସ୍କାର ପାଇଛି ମଧ୍ୟ ।

ସେଦିନ ଭୋରରୁ ସେ ଏକ ଅଦ୍ଭୁତ ଶିକାର ନେଇ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର । ଗୋଟିଏ କାନ୍ଧରେ ତାର ଧନୁଟି ଝୁଲୁଛି, ହାତରେ ଦି' ତିନିଟା ଶର, ଆର କାନ୍ଧରେ ଟାଙ୍ଗିଟି ପଡ଼ିଛି । ଘିନୁଆକୁ ଏ ବେଶରେ ଦେଖିଲା ଅର୍ଦ୍ଦଳି ପଚାରିଲା—

"କିରେ, ଆଜି କି ଶିକାର ଆଣିଛୁ ?"

ଘିନୁଆ ସଙ୍ଗେ ତାର ଭଲ ଜଣାଶୁଣା । ତାର ବକ୍ସିସ୍‌ର ଅଂଶୀଦାର ସେ କେତେ ଥର ହୋଇଛି । ଉତ୍ତରରେ ଘିନୁଆ ତାର ମଇଳା ଦାନ୍ତ ଦୁଇଧାଡ଼ି କେବଳ ଦେଖାଇଲା । ସେ ହସିଲା କି କାନ୍ଦିଲା ଜାଣିବାର ଉପାୟ ନାହିଁ । ପ୍ରକୃତରେ ହସ ବୋଲି ଯାହାକୁ କୁହାଯାଏ, ଘିନୁଆ ଠାରେ ତାହା କେହିଁ କେବେ ଦେଖିନାହିଁ । ବେଳେ ବେଳେ ସେ ଏହିପରି ଦାନ୍ତ ଦେଖାଏ । ତାହା ହସ ନୁହେଁ କି କାନ୍ଦ ନୁହେଁ—କେବଳ ଦାନ୍ତଦେଖା ।

ଅର୍ଦ୍ଦଳି ପଚାରିଲେ, "କହେ, କି ଶିକାର ଆଣିଛୁ ?"

ଘିନୁଆ ତାହାର ଗାମୁଛାରେ ବନ୍ଧା ହୋଇଥିବା ଗୋଟିଏ ପଦାର୍ଥକୁ ଦେଖାଇ କହିଲା ଯେ, ସେ ଆଜି ଏକ ମସ୍ତ ଜାନୁଆର ଶିକାର କରିଛି ।

ଅର୍ଦ୍ଦଳି ପଚାରିଲେ, "ବାଘ ?"

ଘିନୁଆ ମୁଣ୍ଡ ହଲାଇ ନାହିଁ ଜଣାଇଲା ।

"ତେବେ କଣ, ଚିତା— ଭାଲୁ— ବାରହା—

ଘିନୁଆ କେବଳ ମୁଣ୍ଡ ହଲାଇ ଗଲା ।

"ଆଉ ତେବେ କଅଣ ବେ ?"

ଗୋଳମାଳ ଶୁଣି ସାହେବ ବଙ୍ଗଳା ଭିତରୁ ବାହାରି ଆସିଲେ । ଘିନୁଆ ମୁଣ୍ଡିଆ ମାରି ପୁଣି ସାହେବଙ୍କୁ ସେପରି ଦାନ୍ତ ଦେଖାଇଲା । ସାହେବ ଶିକାରର ଚେହେରା ଦେଖିବାକୁ ଔତ୍ସୁକ୍ୟ ପ୍ରକାଶ କରିବାରୁ ଘିନୁଆ ଗାମୁଛା ଭିତରୁ ବାହାର କରି ସାହେବଙ୍କ ପାଦତଳେ ଥୋଇଲା ଗୋଟିଏ ସଦ୍ୟକଟା ମଣିଷମୁଣ୍ଡ ।

ସାହେବ ଚମକି ପଡ଼ି ପାଦୁଣ୍ଡେ ଦୂରକୁ ପାଦୁଣ୍ଡେ ପଛେଇ ଗଲେ । ଘିନୁଆ ହାତ ବଢ଼ାଇ ମାଗିଲା, "ସାହେବ, ବକ୍‌ସିସ୍ ।" କିଛିକ୍ଷଣ ପରେ ମନକୁ ସମ୍ଭାଳି ନେଇ ସାହେବ ଘିନୁଆକୁ ବକ୍‌ସିସ୍ ପାଇଁ ଅପେକ୍ଷା କରିବାକୁ ଇସାରା କଲେ ଓ ଭିତରକୁ ଯାଇ ଫୋନ୍‌ଦ୍ୱାରା ସଶସ୍ତ୍ର ପୋଲିସ ଫୌଜ ଡକାଇଲେ । ଏହା ବ୍ୟତୀତ ଘିନୁଆକୁ ଜବତ୍ କରିବାର ଉପାୟ ନାହିଁ । ଦେହରେ ତାର ଗୋଟାଏ ଅସୁରର ବଳ । ହାତରେ ପୁଣି ତାର ଧନୁଶର ଓ ଟାଙ୍ଗିଆ ରହିଛି ।

ଯେତେବେଳେ ହାତକଡ଼ି ଗୋଡ଼କଡ଼ି ପିନ୍ଧି ଘିନୁଆକୁ ହାଜତରେ ରହିବାକୁ ହେଲା, ସେ କିଛି ବୁଝି ପାରିଲା ନାହିଁ । ତାକୁ ଏପରି ଭାବରେ ଅଟକାଇ ରଖିବାର ମତଲବ କଅଣ ? ସୁବିଧା ପାଇଲେ ସେ କାହାରି କାହାରିକି ଏ ବିଷୟରେ ପଚାରେ । କିଏ କହେ ତାର ଫାଶି ହେବ, କିଏ କହେ ସେ ଯିବ କଳାପାଣି, କାହିଁକି ସେ ଏମିତି କି ଅପରାଧ କରିଛି କି ? କିଛି ବୁଝି ନ ପାରି ସେମାନଙ୍କ କଥାକୁ ସେ ବିଶ୍ୱାସ କରିପାରେ ନାହିଁ । ଶେଷରେ ଦିନେ ଡେପୁଟି କମିଶନର ପରିଦର୍ଶନ କରିବାକୁ ଆସିଥିଲେ । ସେ ତାଙ୍କୁ ହିଁ ସବୁ ହାଲ୍ ପଚାରିଲା । ସେ କହିଲେ ଯେ, ପୂର୍ବରୁ ସେ ବାଘ ଭାଲୁ ମାରୁଥିଲା ବୋଲି ସଙ୍ଗେ ସଙ୍ଗେ ବକ୍‌ସିସ୍ ପାଉଥିଲା । ଏବେ ମାରିଛି ମଣିଷ । ଏଥର କି ବକ୍‌ସିସ୍ ପାଇବ ତାହା ସାହେବ, ଛ'ଜଣ ତ ଫେର ବୁଝି ବିଚାରି ଠିକ୍ କରିବେ । ଏଇ କଥାଟାହିଁ ଘିନୁଆ ମନକୁ ମାନିଲା ।

ଯେଉଁ ଦିନ ତାର ବିଚାର ହେଲା, ଘିନୁଆ, ମନେ ମନେ ଭାବିଲା ସେ ଦିନ ତାକୁ ବକ୍‌ସିସ୍ ମିଳିବ । ସେ ଉତ୍ସାହିତ ହୋଇ ଜଜ୍‌ଙ୍କ ଆଗରେ ସବୁ ବିବରଣୀ କହିବାକୁ ଲାଗିଲା, "ସେ ଯେ ଗୋବିନ୍ଦ ସରଦାରକୁ ମାରିଲା, ସେଥିପାଇଁ ତାକୁ କମ୍ କଷ୍ଟ କରିବାକୁ ପଡ଼ି ନାହିଁ । ଆଉ ଅନେକ ଲୋକ ତାକୁ ମାରିବାକୁ ଛକିଥିଲେ, କିନ୍ତୁ କେହି ପାରି ନ ଥିଲେ । ଗୋବିନ୍ଦ ସରଦାର ସେ ସବୁବେଳେ ମଟରରେ ଯିବା ଆସିବା କରେ । ସେ ତାର ଧନ ସମ୍ପତ୍ତି କମେଇଛି ଅନ୍ୟ ସମସ୍ତଙ୍କୁ ଲୁଟି କରି; ବଡ଼ ସଇତାନ ଲୋକ ଥିଲା ସେ । କେତେ ଲୋକଙ୍କୁ ସେ ମାରିଛି, କେତେ ଲୋକଙ୍କୁ ଉଚ୍ଛନ୍ନ କରିଛି, କେତେ ସ୍ତ୍ରୀ ଲୋକଙ୍କର ଇଜ୍ଜତ ନେଇଛି, ତାହାର ଠିକଣା ନାହିଁ—ଘିନୁଆର ସବୁ ଜମିବାଡ଼ି ମଧ୍ୟ ନେଇ ନିଜର କରିଛି । ସେ ଦିନ ସନ୍ଧ୍ୟାରେ ଘିନୁଆର ସ୍ତ୍ରୀ ଉପରେ ଅତ୍ୟାଚାର କରିବାକୁ ବସିଥିଲା । ଏତେ ବଡ଼ ବିପଦ । ଘିନୁଆକୁ ଦେଖି ମଟରରେ ପଳାଉଥିଲା । ତା ହାତରୁ ଖସି ପଳାଇବ ! ତୀର ମଟର ଚକକୁ ତୀର ମାରି ଘିନୁଆ ମଟରକୁ ଅଚଳ କରିଥିଲା । ତା ପରେ ଟାଙ୍ଗିରେ ତାର ମୁଣ୍ଡଟି କାଟି ଦେଇ ସିଧା ଦୌଡ଼ିଲା, ଗହନ ଗହନ ବଣ ଜଙ୍ଗଲ ଭିତର ଦେଇ । ତାପରେ

ମାଇଲ ଶୁଦ୍ଧା ଏକା ନିଃଶ୍ୱାସରେ ଦୌଡ଼ି ସେ ଡେପୁଟି କମିଶନରଙ୍କ ବଙ୍ଗଳା ପାଖରେ ହାଜର ହେଲା ।

ଗୋବିନ୍ଦ ସରଦାର ସାମାନ୍ୟ ଲୋକ ନୁହେଁ । ହାତରେ ତାର ଥାଏ ସବୁବେଳେ ବନ୍ଧୁକ । ବାଘ, ଭାଲୁଙ୍କ ଅପେକ୍ଷା ଲୋକେ ତାକୁ ବେଶି ଭୟ କରନ୍ତି । ବାଘ ଭାଲୁଙ୍କ ଅପେକ୍ଷା ସେ ଲୋକଙ୍କର କ୍ଷତି କରେ ଢେର ବେଶୀ, ତାକୁ ମାରିବା ପାଇଁ ଘିନୁଆ କମ୍ ସାହସ ଓ ବିଚକ୍ଷଣତା ଖର୍ଚ୍ଚ କରି ନାହିଁ ।

"କିଛି ବର୍ଷ ତଳେ ମେଲିଆ ଝପଟସିଂର ମୁଣ୍ଡ କାଟି ଥିବାରୁ ସାହେବ ତୋରାକୁ ପାଁଚ ଟଙ୍କା ବକ୍‌ସିସ୍ ଦେଇଥିଲେ । ଝପଟସିଂ ତ ଏକ ରକମ୍ ଭଲ ଲୋକ ଥିଲା । ସେ ଗରୀବ ଲୋକଙ୍କ ଇଜ୍ଜତ ନେଇନାହିଁ, କି କାହାର ଜମିବାଡ଼ି ଦଖଲ କରି ନାହିଁ । ସେ କେବଳ ଖଜଣାଖାନା ଲୁଟି କରିଥିଲା, ଆଉ କେତେ ଜଣ ସିପାହୀଙ୍କୁ ମାରିଥିଲା । ଗୋବିନ୍ଦ ସରଦାର କିନ୍ତୁ ବଡ଼ ଭୟଙ୍କର ଲୋକ । ତାକୁ ମାରିଥିବାରୁ ଘିନୁଆକୁ ଅଧିକ ବକ୍‌ସିସ୍ ମିଳିବା ଉଚିତ ।"

ଘିନୁଆର ଗଳ୍ପ ଶୁଣି ସମସ୍ତେ ହୋ ହୋ ହୋଇ ହସିଉଠିଲେ । ଜଜ ସାହେବ ହସି ହସି କହିଲେ, "ହଁ, ଉପଯୁକ୍ତ ବକ୍‌ସିସ୍ ଦିଆଯିବ ।" ସରକାରୀ ଓକିଲ କହିଲେ, "ତେବେ ଏଠାକୁ ଖାସ୍ ଅଣା ହୋଇଛି ବକ୍‌ସିସ୍ ଦିଆଯିବା ଲାଗି ।"

ଘିନୁଆ ଏହାକୁ ପରିହାସ ନ ମଣି ସତ ବୋଲି ମନେ କଲା । କାରଣ ହସ କୌତୁକ, ଥଟ୍ଟା ପରିହାସ ସେ ଜାଣେ ନାହିଁ । ତାର ସେ ନିତାନ୍ତ ନିରସ ରସ ଶୂନ୍ୟ ପ୍ରକୃତି ।

ଶେଷରେ ରାୟ ଦିଆଗଲା—ପ୍ରାଣଦଣ୍ଡ । ଘିନୁଆ ଏହାର କୌଣସି ଅର୍ଥ ବୁଝିଲା ନାହିଁ । ପୁଣି ଜେଲକୁ ଫେରାଇ ତାକୁ ବୁଝାଇ ଦିଆଗଲା ଯେ, ତାର ବକ୍‌ସିସ୍ ପାଇବାର ଦିନ ଆସୁଛି ।

ଘିନୁଆ ସେ ପର୍ଯ୍ୟନ୍ତ ବୁଝିଲା ନାହିଁ ଯେ, ସେ ଜଣେ ଅପରାଧୀ ଓ ସେଥିଲାଗି ତାକୁ ପ୍ରାଣଦଣ୍ଡ ଆଦେଶ ହୋଇଛି । ଝପଟସିଂକୁ ମାରିବା ଓ ଗୋବିନ୍ଦ ସରଦାରକୁ ମାରିବା ସେ ଏକା କଥା ନୁହେଁ, ତାହା ସେ ବୁଝିବ କାହିଁ ? ସେ ଜାଣିଲା ନାହିଁ ଯେ, ଗୋଟିଏ ଗୌରବର ବିଷୟ, ଅନ୍ୟଟି ଦୋଷାବହ । ଆଇନର ସୂକ୍ଷ୍ମ ଜାଲ ଭିତରେ ପଶିବାକୁ ତାର ମୁଣ୍ଡ ନାହିଁ । ସେ ଯେ ବଣୁଆ ସାନ୍ତାଳ ।

ସେ ମନେ ମନେ ଭାବେ, ତୋରା ପାଁଚ ଟଙ୍କା ପାଇଛି ଝପଟ ସିଂହକୁ ମାରି । ସେଥିରୁ ବେଶୀ ନ ଦେଲେ କାହିଁକି ନେବ ? ସବୁ ଫେରାଇ ଦେଇ କହିବ, "କିଛି ନ ଦିଅ ପଛକେ ସାହେବ, ତୋରା ଠାରୁ ବେଶି ପାଇବା ମୋର ହକ୍ ।"

ଜେଲର ଅନ୍ଧାରିଆ ନିର୍ଜନ କୁଠରୀରେ ରହି ସେ କେତେ କ'ଣ ଭାବେ । କଥାବାର୍ତ୍ତା କରିବାକୁ ସେ କାହାରିକି ଦେଖେ ନାହିଁ । କଥାବାର୍ତ୍ତା କରିବାକୁ ବି ତାର ଆଗ୍ରହ ନ ଥାଏ । କେବଳ ବକ୍‌ସିସ୍ ପାଇ ଘରକୁ ଫେରିବାକୁ ତାର ମନ ଛଟପଟ ହେଉଥାଏ ।

ଶେଷରେ ତାର ଫାସିର ଦିନ ଆସିଲା । ତାକୁ ପଚରା ଗଲା, ତାର ଶେଷରେ କ'ଣ ଦରକାର । ସେ କହିଲା, "ମୋର ବକ୍‌ସିସ୍ ।" "ଆଚ୍ଛା ବକ୍‌ସିସ୍ ପାଇବୁ ଆ" କହି ତାକୁ ନେଇ ଗଲେ । ମୁଣ୍ଡରେ ତାର ଗୋଟିଏ କଳା କନାର ଖୋଳ ଟିକାଇ ଦିଆଗଲା । ଘିନୁଆ ମନେ ମନେ ଭାବୁଥିଲା—ଆଖିରେ ଅନ୍ଧ ପୋଟଳା ଦେଇ ହାତରେ ତାର ସୁନା ରୂପା ଥାଳି ଦିଆଯିବ । ସରକାର ଘରର କେତେ ଫନ୍ଦି ଫିକର, କାଇଦା କଟକଣା ଅଛି । ଖାଲି ସିମିତ କ'ଣ ବକ୍‌ସିସ୍ ଦିଆଯିବ ସେ ଘରକୁ ଫେରି ସବୁ ଦେଖାଇବ । କି ଖୁସି ହେବ ସ୍ତ୍ରୀ ତାର ସେ ସବୁ ଦେଖି ! ଭଲ ଘରଦ୍ୱାର କରି, ଜମିବାଡ଼ି ଚଷି ସେ ସୁଖରେ ରହିବ । ଆଉ ତ ଗୋବିନ୍ଦ ସରଦାର ନାହିଁ ଯେ ସବୁ ଲୁଟି କରିନେବ ।

ହଠାତ୍ କ'ଣ ଗୋଟାଏ ଆସି ତା ବେକରେ ବାଜିଲା ।

---

[ 'ଆଧୁନିକ' ପ୍ରଥମ ସଂଖ୍ୟା, ମଇ ୧୯୩୭ ]

# ବାଦୀ ପାଲା

—କାଳନ୍ଦୀଚରଣ ପାଣିଗ୍ରାହୀ

ବଣ ପାହାଡ଼ ଅଞ୍ଚଳରେ କୁକୁଡ଼ା ଲଢ଼େଇ ବିଖ୍ୟାତ ବ୍ୟସନ । ଆଦିବାସୀ ଭାଇମାନଙ୍କର ଏହା ଗୋଟିଏ ବଡ଼ ଆମୋଦ । ଦି' ପାଖରୁ ଦି'ଜଣ ଦୁଇଟା ଗଞ୍ଜା କୁକୁଡ଼ା ଧରି ଏହି ଲଢ଼େଇରେ ଯୋଗ ଦିଅନ୍ତି । ଚାରିପଟେ ଶହ ଶହ ଲୋକ ରୁଣ୍ଡ ହୋଇ ଚାହିଁ ରହିଥାନ୍ତି ଉତ୍ସୁକ ଦୃଷ୍ଟିରେ । କେଉଁ କୁକୁଡ଼ା ଜିତିବ, କିଏ ହାରିବ, ସେଥିପାଇଁ ଦର୍ଶକମାନଙ୍କ ଭିତରେ ଚାଲେ ବାଜି ମରାମରି । କୁକୁଡ଼ାର ଗୋଟିଏ ଗୋଡ଼ରେ ବନ୍ଧା ହୋଇଥାଏ ଶାଣଦିଆ ଲୁହା ଛୁରି ।

ମାଲିକ ଦୁହେଁ ସେଠା ଚଢ଼େଇଙ୍କୁ ଧରି ଆଗେଇ ଆସନ୍ତି ରଣଭୂମିର ମଝିକୁ । ଦୁଇଟା ଲଢ଼େଇ-କୁକୁଡ଼ାଙ୍କୁ ମୁହାଁମୁହିଁ କରିଦେଇ ମାଲିକ ଦୁହେଁ ପଛକୁ ହଟି ଆସନ୍ତି । ମାଟି ଟିକିଏ ନେଇ କୁକୁଡ଼ା ମୁଣ୍ଡରେ ପକାଇ ଦିଅନ୍ତି । ତାହାର ଦିହ ମୁଣ୍ଡ ଆଉଁସି ପକାନ୍ତି । ସେତେବେଳକୁ ଏହି ମୂର୍ଖ ଚଢ଼େଇ ଦିଓଟା ଉଚ୍ଛନ୍ନ ହୋଇ ମୁଣ୍ଡର ନାଲିଫୁଲ ଓ ନାଲି ଚୂଳିକୁ ଥରାଇ ଗୋଡ଼ ଟେକୁଥାନ୍ତି ଲଢ଼େଇ କରିବାପାଇଁ । ତାହାପରେ ଦି' ପାଖରୁ ଦୁହିଁଙ୍କୁ ଛାଡ଼ି ଦିଆଯାଏ ଏବଂ ଚାରିପଟର ତାଳି ଓ ରଣଶବ୍ଦ ଭିତରେ ଦୁହିଁଙ୍କର ଚାଲେ ହାତାହାତି ଲଢ଼େଇ । ଯେ ଲଢ଼େଇରେ ପକ୍ଷୀ ଦି'ଟା ଅବା ତାଙ୍କ ମାଲିକ ଦୁହିଁଙ୍କର କାହାର ଯାଉଛି କାହାର ମାନ ଅପମାନ କି ସରସେପ ନାହିଁ । ନିଜ ନିଜର ଇଚ୍ଛା ବାହାଦୁରୀ ଓ ଦେଖଣାହାରିମାନଙ୍କୁ ଖୁସି କରିବା ହିଁ ଅସଲ ମତଲବ । ସେଥିପାଇଁ ଗୋଟାଏ ପକ୍ଷ ନିଜ ଜୀବନ ହାରିବାକୁ ବି ତିଆର ।'

ଖୁବ୍ ଛକାପଞ୍ଝାରେ ଲଢ଼ୁ ଲଢ଼ୁ କେତେବେଳେ ତଳେ, କେତେବେଳେ ଉପରେ ଉଠି ଗୋଟାକ ଦେହରେ ଛୁରି ଲାଗିଯାଏ । ଯାହାଙ୍କ ସାଙ୍ଗେ ଯେ ମୁହଁକୁ ପୋତି ତଳେ ପଡ଼ିଯାଏ । ଗତ ମହାଯୁଦ୍ଧରେ ହିଟ୍ଲର କୁଆଡ଼େ ହାରିଲାବେଳେ ଏମିତି ନଇଁ ପଡ଼ିଥିଲେ । କୁକୁଡ଼ାର ଜୀବନ ଯାଏ; କିନ୍ତୁ ପ୍ରକୃତରେ ପରାସ୍ତ ହୁଅନ୍ତି ତା'ର ମାଲିକ—ଯଦ୍ୟପି ସେ ବିଚରାର ମାଂସରେ ଲଢ଼େଇ କରି ନ ଥିବା ଆଉ କେତୋଟା ପକ୍ଷୀର ମାଂସ ମିଶାଇ ରାତିରେ ଏକ ବଡ଼ ରକମର ଭୋଜିଭାତ କରାଯାଏ । ପୁଣି ବାଜି ମାରିଥିବା ଦର୍ଶକମାନଙ୍କ ଭିତରୁ ଯେଉଁ ପକ୍ଷ ଜିତିଯାନ୍ତି, ତାଙ୍କର ମଧ୍ୟ ହୁଏ ଗୋଟାଏ ଉତ୍ସବ ।

ମାଳ ଜଙ୍ଗଲ ଅଞ୍ଚଳର କୁକୁଡ଼ା ଲଢ଼େଇଠାରୁ ଆରମ୍ଭ କରି ଆମ ଗାଁ ଗଣ୍ଡା ଭିତରେ ତାସ, ପଶା, ବାଦୀପାଲା ଓ ସାନ ବଡ଼ ସହରମାନଙ୍କରେ ଫୁଟ୍‌ବଲ, କ୍ରିକେଟ, ଘୋଡ଼ାଦୌଡ଼ ଖେଳରେ ଏମିତି କେତେ ବାଜି ମରାମରି ଚାଲେ, କେତେ ଲଟେରୀ ଟିକେଟ୍ ଉଠେ । ଖେଳ

ଖେଳନ୍ତି ଦଳେ ଲୋକ; କିନ୍ତୁ ତାଙ୍କ ପକ୍ଷ ସମର୍ଥନ କରନ୍ତି ଆହୁରି ଦଳେ, ଯେଉଁମାନେ କୁକୁଡ଼ା ଭଳି ଆପଣା ଆପଣା ଜୀବନ ଦିଅନ୍ତି, ଲକ୍ଷେଶ୍ୱର କଣି ହାରନ୍ତି—ଖୁବ୍ କମ୍ ଲୋକଙ୍କୁ କୁକୁଡ଼ା ମାଉଁସ ଖୁଆଇବା ପାଇଁ ଅବା ଲକ୍ଷେଶ୍ୱର ଖେଳରେ ଜିତେଇବା ପାଇଁ !

ରାଜନୀତିରେ ଏମିତି ଖେଳ ମଧ୍ୟ ବରାବର ଚାଲେ । ଭୋଟ ଦିଆନିଆ ବ୍ୟାପାରରେ ସୁଦ୍ଧା । ପୁଣି ସାହିତ୍ୟରେ ମଧ୍ୟ ଦେଖୁଚୁ ତ କିଛି କମ୍ ନୁହେଁ !

ଏମିତି ଯେତେ ନୂଆ ପୁରୁଣା ଲଢ଼େଇର ପର୍ଯ୍ୟାୟ ଅଛି, ତାହାକୁ ଲକ୍ଷ୍ୟ କରି ଜଣେ ପ୍ରାଚୀନ ପଣ୍ଡିତ କହିଥିଲେ, "ବିଦ୍ୟା ବିବାଦାୟ" । ଆମ ଦେଶର ବାଦୀପାଲା ଏମିତି ଗୋଟାଏ ପୁରୁଣାକାଳିଆ ଅନୁଷ୍ଠାନ—ଯାହା ଭିତରେ ସାହିତ୍ୟିକ ଲଢ଼େଇର ଖାସା ଉପଭୋଗ୍ୟ ଅଭିନୟ ଦେଖାଯାଏ ।

ସେଥର ଆମ ଗାଁରେ ବିଚାର ଚାଲିଲା, ଗୋଟାଏ ବାଦୀପାଲା କରେଇବାକୁ । ବସ୍ତି ହେଲେ ଓଡ଼ିଶାର ଦି'ଜଣ ବିଖ୍ୟାତ ପାଲାଦଳ । ଘର ଘରକେ ଅସୁଲ ହେଲା ଭେଦା ଚାନ୍ଦା । ଗାଁର ଉତ୍ସାହୀ ଯୁବକ ଚାରି ପାଞ୍ଚ ଜଣ ବାହାରିଲେ, ପାଲାବାଲାଙ୍କୁ ଆଣିବା ପାଇଁ । ଆଉମାନେ ଲାଗି ପଡ଼ିଲେ ପଡ଼ିଆ ଚେଞ୍ଚା, ଚାନ୍ଦୁଆ ବନ୍ଧା, ଆଲୁଅ ଟଙ୍ଗା ଓ ପାଲାବାଲାଙ୍କ ପାଇଁ ଖାଦ୍ୟ ଯୋଗାଡ଼ କରିବା କାମରେ ।

ଧାନକଟା, ଧାନ ଅମଳ ସରିଥାଏ । ଘରେ ଧାନ ଚାଉଳ ଭର୍ତ୍ତି । ଗାଁରେ ପାଲା ହେବ । ଚାନ୍ଦା ନ ଦେବ କିଏ ? ଗୋଟାଏ ମସ୍ତ ଚାନ୍ଦୁଆ ତିଆରି ହେଲା । ଦୁଇଟା ଶୌଖୀ ଶୌଖୀ ପାଲାବାଲା ଦଳ ଡକା ହୋଇ ଆସିଲେ । ଗାଁ ଭିତରେ ଯେତେ ବାଦବିବାଦ ମନାନ୍ତର କଳି ତକରାଳ ଥିଲା, ପାଲା ଦେଖିବାକୁ ସମସ୍ତେ ସେ ସବୁ କଥା ପାସୋରି ପକାଇଲେ । ଯେ ଯାହା ପାରିଲେ, ଚାନ୍ଦା ଦେଲେ । ଦୁଇ ଜଣ ବଡ଼ ଗାୟକ—ସୁବଳ ଆଉ ସୁବୁଦ୍ଧି । ଦୁହିଁଙ୍କର ନାମ ଓଡ଼ିଶାର ଚାରିଆଡ଼େ । ସବ ଶୁଭରେ ପାଲା ଆରମ୍ଭ ହେଲା ।

ସେଇ ସନ୍ଧ୍ୟାରେ ବେଗି ବେଗି ଖିଆପିଆ ସାରି ପିଲା ବୁଢ଼ା ଝିଅ ବୋହୂ ରୁଣ୍ଡ ହୁଅନ୍ତି ଯାଇ ପାଲା ପଡ଼ିଆରେ । ସବୁରି ଘରେ ତାଲା ପଡ଼େ । ଏମିତି କି ଦୂର ଗାଁମାନଙ୍କରୁ ହଜାର ହଜାର ଶ୍ରୋତା ଚାଲି ଆସନ୍ତି ସୁବୁଦ୍ଧିର ସଙ୍ଗୀତ ଶୁଣିବାପାଇଁ ଆଉ ଦେଖିବାପାଇଁ ସୁବଳର ଚଉଁର ହଲା ନାଚ ।

ଶହ ଶହ ଝିଅ ବୋହୂଙ୍କ ଭିତରେ ଶୋଭା ମଧ୍ୟ ଆସେ; ଆମ୍ବଗଛ ଆଢୁଆଳରେ ବସି ଗୀତ ଶୁଣେ, ନାଚ ଦେଖେ । ସାଇପଡ଼ିଶା ଦୂର ଗାଁ ଝିଅ ବୋହୂଙ୍କ ସଙ୍ଗେ ଚିହ୍ନା ପରିଚୟ ହୁଏ । ଗେଟେହେଲେଇ, ମାଳତୀ ଦାହା ଆଡ଼କୁ ଚାହିଁ କେଜାଣି ଠରାଠରି ଚମୁଟା ଚମୁଟି ହୋଇ ହସି ଆଉଟ ପାଉଟ ହେଉଥାଆନ୍ତି । ଫୁଲବୋଉ ବୁଢ଼ୀ ପାଟିକରି ଉଠେ, ମଲା, ତମେ ପାଲା ଶୁଣିବାକୁ ଆସିଛ ନା ନିଜେ ନାଚିବ ବୋଲି ଆସିଛ କି ଲୋ ? ଗଦାଧର

ପୁରୁଷମାନଙ୍କ ପାଖରେ ବସି ପାଲବାଲଙ୍କ ଗୀତ ବଖାଣ କରେ । ସୁଦାମ ପାନ ଦୋକାନ ମେଲାଦେଇ ପାନ, ବିଡ଼ି, ସିଗାରେଟ୍, ଦିଆସିଲି, ଚନାବାଦାମ ବିକେ । ସଉଦାପାଳି ଗୋଟିକ ପରେ ଅନ୍ୟ ପାଲଦଳର ଗୀତ ନାଚ — କିଏ ହାରିଲା, କିଏ ଜିତିଲା, ସେ ବିଷୟର ଛିଡ଼ା-ଦିଆଯାଏ ଶ୍ରୋତାମାନଙ୍କ ଉପରେ ।

ଗାଁ ମାଇନର ସ୍କୁଲ ସୁଧାକର ପଣ୍ଡିତଙ୍କର ବହୁତ ଶ୍ଳୋକ, ବହୁତ ଛାନ୍ଦ ମୁଖସ୍ଥ । ସବୁରି ନେତା ହୋଇ ସେ ଗାଁର ବୁଢ଼ାଙ୍କ ମଝିରେ ମଝିରେ ପରୀକ୍ଷା କରନ୍ତି । ଦୟାନିଧି ଦାସଙ୍କର କଣ୍ଠ ହେଲେ ପାଠ ମୁଖସ୍ଥ ନ ଥିଲେ କ'ଣ ହେଲା, ବହୁତ ବଡ଼ ବଡ଼ ବାଦିପାଲି ସେ ଦେଖିଛନ୍ତି । ଜଗନ୍ନାଥପୁରରେ ପନ୍ଦର ବର୍ଷ ତଳେ ଯେଉଁ ବାଦିପାଲି ହୋଇଥିଲା, ସେଇଠାରୁ ପାଲି ମରିଯାଇଛି ବୋଲି ତାଙ୍କର ମତ । କାର୍ତ୍ତିକ ସାହୁଠାରୁ ବଳି ଆଉ ଗାୟକ ନାହିଁ, କି ସାଧୁ ଖଣ୍ଡିଆଠାରୁ ବଳି ଆଉ ବାଦକ ନାହିଁ । ପଞ୍ଚମବଗାଡ଼ ସ୍ୱରରେ କାର୍ତ୍ତିକ ଯେତେବେଳେ ଡାହାଣ ହାତରେ ଗିନି ଟିଁ ଟିଣି କରି ଓ ବାଁ କାଖରେ ଚାମର ମୁଠାଟା ଯାକି ଗାଇଉଠେ—'ଏ ଘନ କାଳରେ କାନ୍ତ, କରି ଯା ଗଲେ ଏକାନ୍ତ'—ସେତେବେଳେ ଗଛରୁ ପତ୍ର ଝଡ଼ିପଡ଼େ । ଆଉ ବାଦକ ସାଧୁ ଖଣ୍ଡିଆ ତାଳ ଛନ୍ଦାଇଲା ବେଳେ ଯେମିତି ମୃଦଙ୍ଗଟାକୁ ମୁଣ୍ଡ ଉପରେ ଥୋଇ ଚିଲିଏ ଚକା ଉପରେ ଖେଳିଲା ଭଳି ଘୂରି ଘୂରି ନାଚଯାଏ ସେତେବେଳେ କୁଢ଼େଇ ହୋଇପଡ଼େ—ତାଳି ଉପରେ ତାଳି, ହରିବୋଲ, ହୁଳହୁଳି ।

ଦୟାନିଧି ଦାସ ଗାଁ ଭିତରେ ବଡ଼ ମାମଲତକାର । ତାଙ୍କ ମୁହଁ ଉପରେ ଅବା କଥା କହନ୍ତା କିଏ ? କିନ୍ତୁ ପଛରେ ଦୋଟର ବାହାଦୁରୀ ଦେଖାଏ—ଏ ବୁଢ଼ା ଖାଲି ମିଛ ଭଡ଼ଙ୍ଗ । ସତେ କି କାର୍ତ୍ତିକ ସାହୁର ପାଲି କେହି ଦେଖିନାହିଁ ! ସୁବଳ ନାଚ ପାଖରେ ତା' ନାଚ ଲାଭ ଦିଆ ହେବ, ନା ସୁବୁଦ୍ଧି ଆଗରେ ସେ ପାଟି ଫିଟାଇ ପାରିବ ଭଲା ? ନ ଦେଖିଲା ଓହ ଛ ଫଡ଼ା ।

ଆରେ ତୁ ବାଲିକା ନଣ୍ଡି କ'ଣ ଦେଖିଛୁ ମ ! ନ ଦେଖିଲା ଲୋକ ଦେଖ ନା କହିଛ ବାଛିଛ ବେଳ—ଗୋବିନ୍ଦ ମହାରଣା ଆକଟେଇ ବାର ବାହେ—କରେ ସୁବୁଦ୍ଧି ଆଜି ବୁଢ଼ା ହୋଇଗଲେ ବୋଲି ସିନା, ତା' କଣ୍ଠ ଭିତରେ କେଉଁଠି ସୁବଳ ଗଳିଯିବେ ଜାଣୁ ? ଖାଲି ଟିକିଏ ଅଙ୍ଗ ହଲେଇ ନାଚ ଦେଲେ କ'ଣ ହେବ ଏମିତି କେତେ କେଲୁଣି ନାଚ ଦେଖା ନାହିଁ କି ?

ହଁ ମ, ତମେ କେତେ ଦେଖି ନ ଥିବ କି ? ଗୁଳିଲି, ଦାଦଙ୍କୁ ପଚାରିବା । ଖାଲି ବାହାଦିଆ କଥା କହିଦେଲେ ହେବ କ'ଣ ? ସୁବଳର ଝଣ୍ଡେ ନାଚକୁ ଖାଲି ଲକ୍ଷେ ଟଙ୍କା—ବୁଝିଲ ?

ହଇରେ କଣ କହିଲୁ ବାହାଦିଆ ? ତୁ କି ମୁଁ, କିଏ ବାହାଦିଆ ଗୁଳିଲି ପଚାରିବା ? କିନ୍ତୁ ତୁବ ଭିତରେ ପଚାରିବାକୁ ଯାଏନାହିଁ ସେ । କାରଣ ଦାଦଙ୍କ ନାଁ ଶୁଣି ଗୋବିନ୍ଦ ଦବିଯାଏ ।

ଦାସେ ହେଲେ ଗାଁର ଟାଉଟର, ପୁରୁଣା ମାମଲତକାରିଆ ଲୋକ। ତାଙ୍କ କଥାରେ ଆଉ କଏ ପଦେ ଉତ୍ତର ଦେଲେ ସେ ତ ସାଙ୍ଗେ ସାଙ୍ଗେ ହୁଡ଼ି ପକାଇବେ। ଗାଁର ହୁଣ୍ଡା ଟୋକାଗୁଡ଼ାକ ଯେତେବେଳେ ତାଙ୍କୁ ଚିଡ଼ାନ୍ତି 'ଦାସେ, ପାଣିରେ ପଇଲେ ମାସେ, ପାଣି ହେଲା ହେମ କାକର, ଦାସେ ହେଲେ ବୁଢ଼ା ମାଙ୍କଡ଼'—ସେତେବେଳେ ନଥି ଦାସେ ପାଦୁଆ ପାଟିରେ ଯେଉଁ ଅଭିଷାରେ ଶୋଧନ୍ତି, ଆଜିକାଲିର ଦେଡେ ସାହିତ୍ୟଠାରୁ ଅନେକାଂଶରେ ତାହା ଶ୍ଳୀଳ ଓ ଶିଷ୍ଟ ହେଲେ ମଧ ଗାଉଁଲି ଲୋକେ ଶୁଣିବାକୁ ସୁଂପାନ୍ତି ନାହିଁ ସେଥିରୁ। କି ଦରକାର ଗୋବିନ୍ଦର, ବୁଢ଼ା କଥାରେ ଏତେ ବାଟ ଯିବ। ପୁଣି ହେଉକବେଳେ ପାଲାପଡ଼ିଆରେ ଆରମ୍ଭ ହୁଏ—ମୃଦଙ୍ଗ ଉପରେ ଆଙ୍ଗୁଠି ନାଚର ଘୁଁ ଘୁଁ ଟିଣି ଟିଣି ତାଳ ସଙ୍ଗେ ଦୁଇଟା ଝାଞ୍ଜ ଅଗର ଝଣ ଝଣ ପ୍ରାରମ୍ଭିକ ଶବ୍ଦ !

ମଣିପେ ମାଇପେ ଗୁଲନ୍ତି ପାଲା ଦେଖିବାକୁ। ପାଣି ଗରାଟାକୁ କାଙ୍କରୁ ଓହ୍ଲାଇ ଶୋଭା ତରତର ହୋଇ ହାଣ୍ଡିଶାଳ ଭିତରେ ପଶିଯାଏ, ଦୁଆର ମୁହଁରେ ଗଦାଧରକୁ ବସିଥିବାର ଦେଖିପକେଇ ଓଢ଼ଣା ଟାଣିଦିଏ। ସେହି ଓଢ଼ଣା ଭିତରେ ତା'ର ପାନଖିଆ ନାଲି ଓଠରେ ଉକୁଟି ଉଠେ ମୁରୁକି ହସ।

ଗୋବିନ୍ଦ କୌତୁକ କରି କହେ, ଦେଖିଲୁ ମୋ ଘରଣୀକି ତ ? କୃଷ୍ଣଙ୍କ ବଇଁଶୀ ଶୁଣି ଗୋପୀମାନେ କ'ଣ ଘରଦ୍ୱାର ସ୍ୱାମୀ ସଂସାର ଛାଡ଼ି ପଳାଉଥିଲେ ମ ! ଏବେ ଆମ ଗାଁରେ ଯେଉଁ ପାଲା ଭିଆଣ କଲ, ସେଥିରେ ମଣିଷକୁ ପେଟପୂରା ଗଣ୍ଡେ ଖାଇବାକୁ ବି ମିଳୁନି। ଯାହା ମୁଠେ ଆବୁରୁ ଜାବୁରୁ ରାନ୍ଧିଦେଇ ତ ସମସ୍ତେ ଧାଉଁଲେ ପାଲାପଡ଼ିଆକୁ। ଘରେ ଚୋର ପଶି ସବୁ ବୋହି ନେଲେ ବି କେହି ଜଗିବାକୁ ନାହିଁ।

ହାଣ୍ଡିଶାଳ ଭିତରେ ଶୋଭା ମୂଷାଟି ଭଳି ଲୁଚି ରହେ। ନୂଆ ହୋଇ ସେ ଘର-କରଣା କରୁଛି। ଗଦାଧର ତା'ର ଦିଅର ଲେଖା ହେବ ସିନା, ତା' ଆଗକୁ ତ କେଉଁଦିନ ହେଲେ ସେ ବାହାରି ନାହିଁ। ନ ହେଲେ ସ୍ୱାମୀ ସଙ୍ଗେ ଏକ୍ଷଣି ପରସ୍ତେ ଝଟାପଟା ଲଗାଇ ଦିଅନ୍ତା। ଶୋଭାକୁ ଅକର୍ତ୍ତବ୍ୟ ଦେଖି ଗୋବିନ୍ଦ ହାଣ୍ଡିଶାଳକୁ ଚାହିଁ ଆଖି ମିଟିମିଟି କରେ।

କୁହୁ କୁହୁ କୁହୁ ! ଦିନ ନାହିଁ, ରାତି ନାହିଁ, ସଞ୍ଜ ନାହିଁ, ସକାଳ ନାହିଁ ଗାଁ ଭିତରେ ଏତେ ବଡ଼ ପାଲା ଲାଗିଛି—ଏତେ ଲୋକ ଯା ଆସ କରୁଛନ୍ତି, ତେଣିକି ଟିକିଏ ସୁଦ୍ଧା ଭ୍ରୂକ୍ଷେପ ନାହିଁ; ସବୁବେଳେ ସେଇ ଗୋଟାଏ ଶବ୍ଦ ! ଭକାରୀ ସୁରୁଡି ସ୍ୱର ଲମ୍ବେଇ ଗୀତ ଗାଏ—''ଦେଖି ନବ କାଳିକା ବିକାଳିବା ମାଳିକା ଆଳି କାଳିକା କାନ୍ତ ହୃଣ—'' କରତାଳ ଝାଞ୍ଜ ମୃଦଙ୍ଗରେ କାନ ଅତଡ଼ା ପଡେ—କେବଳ ସବୁରି ଉପରେ ଶୁଣାଯାଏ, କୁହୁ କୁହୁ ! ଯୁବକ ସାନ୍ତରୀ ଚଅର ହଲାଇ ନାଚ ଆରମ୍ଭ କରେ—କିଏ ହେବ ମାଁ ମୋର କିଏ ହେବ ଖୁଡ଼ୀ, ହୁଳହୁଳି ନ ଦେଲେ ଲୋ ହେବ ଆଣ୍ଟୁକୁଡ଼ୀ। ତୁଣ୍ଡରୁ ପଦ ନ ସରୁଣୁ ହୁଳହୁଳି ନାଦରେ ପୁଲିଙ୍ଗ ତୋଟା କମ୍ପିଉଠେ; ତଥାପି ଶୁଣାଯାଏ ତାହାରି ଭିତରେ

କୁହୁ କୁହୁ କୁହୁ ! ଚୈତ୍ର ଯାଇ ବୈଶାଖ ଆସିଛି । ଶୁଖିଲା ପତ୍ରଗୁଡ଼ା ଗଛରୁ ଝଡ଼ିପଡ଼ି ଝଣ୍ଟିଆଭୂତ ହୋଇ କାହିଁ ଉଡ଼ିଗଲାଣି । ଆଉ ଫୁଲିଙ୍ଗଫୁଲ ମହକରେ ଗାଁଟାର ଦାଣ୍ଡ ପଡ଼ିଆ ଯେମିତି ଅବା ଉଚ୍ଛନ୍ନ । ତାହାର ଭିତରେ ଗଛଗହଳରୁ କଛିନ ମାନ ଗୋଟାଏ କଦଳୀଖୋରଆ ଶବ୍ଦ ଆସୁଛି, କୁହୁଁ କୁହୁ କୁହୁ— !

ବେଳ ବୁଡ଼ୁ ବୁଡ଼ୁ ଆରମ୍ଭ ହୋଇ ତହୁଁ ଆର ଦିନ ପହରଯାଏ ବାପାପାଲାର ଭିଡ଼ । କେତେ ପୁରୁଷ, ଟୋକା, ଝିଅ, ମାଇପେ ଗାଥଣ ଶୁଣୁ ଶୁଣୁ ଦେଇଁଠି ଢଳେଇ ପଡ଼ନ୍ତି । ଟୋକା ଗୁଡ଼ାକ ତ ଗୁଣକାତ ଲମ୍ବେଇ ଦେଇ ପଡ଼ିଆ ମଝିଟାରେ ଶୋଇପଡ଼ି ଘୁଙ୍ଗୁଡ଼ି ମାରନ୍ତି ।

ଗୋବିନ୍ଦ ମହାରଣା ଯେ କେତେ ଥର ନିଦରେ ଶୋଇ ପୁଣି ଉଠି ପାଲା ଶୁଣେ, ତାହା ଗଣି ହେବ ନାହିଁ । ଗଦାଧର କିନ୍ତୁ ଖିଲ ଉପରେ ଖିଲପାନ ଚୋବାଇ ନିଦକୁ ଘେରେ । ଝିଟିପିଟି ରାତିରେ ଝୁଲୁଝୁଲିଆ ପବନ ବହେ । ଗୋବିନ୍ଦ ନିଦରେ ଶୋଇ ଏଣୁ ତେଣୁ କେତେ କଣ ସପନ ଦେଖେ । ହରିବୋଲ ହୁଳହୁଳିରେ ଝଟ ନିଦ ଭାଙ୍ଗିଯାଏ । ଝିଅ ମାଇପେ ବସିଥିବା ଜାଗାକୁ ଚାହିଁ ତାହାର ଆଖିରେ ପଡ଼େ ଶୋଭା । ସେ ମନ ଦେଇ ଶୁଣୁଛି, ସୁବଳ ସାନ୍ତରାର ଗୀତ, ଗଦାଧର ଝଣ୍ଟେ ମହଲିଦିଆ ପାନ ଆପଣା ଭଉଣୀ ସଉଦା ହାତରେ ପଠାଇଦିଏ ଶୋଭାକୁ ଦେବାପାଇଁ । ଶୋଭା ପାଟିରେ ପାନ ଖିଲଟାକୁ ଯାକିଦେଇ ଗଦାଧର ଆଡ଼କୁ କଣେଇ ଚାହିଁ ହସିଦିଏ । ସତରେ ସେ ହସେ କି ନାହିଁ କେଜାଣି; କିନ୍ତୁ ଗଦାଧରକୁ ଲାଗେ ସେମିତି । ଗର୍ବରେ ଆନନ୍ଦରେ ଛାତିଟା ତା'ର କୁଣ୍ଢେମୋଟ ହୋଇଉଠେ । ହଠାତ୍ ଅବା ସେ ଓଡ଼ିଶାର ଜଣେ ମନ୍ତ୍ରୀ ହେବାକୁ ବସିଲାଣି ହଜାରେ ଦେଖଣାହାରୀଙ୍କ ଭିତରୁ କାହାରିକୁ ସେ ଚାହେଁ ନାହିଁ, ସମସ୍ତେ ଯେମିତି ତା'ର ଏହି ମୁହୂର୍ତ୍ତରେ ଦୟାର ପାତ୍ର, ଅନୁଗ୍ରହପ୍ରାର୍ଥୀ । ଏଥିରେ କି ଆଉ ଗଦେଇ ଆଖିକୁ ନିଦ ଆସେ ?

ସୁବଳ ସାନ୍ତରା ବୋଲିଉଠେ—ଲାଗିଲା ରେ, ଲାବଣ୍ୟ ନିଧିକୁ ଶ୍ୟାମ ନଟ । ଗଦାଧର ଥରେ ସୁବଳ ସାନ୍ତରା ନାଚକୁ ଚାହିଁଦେଇ ଶୋଭାଆଡ଼େ ଆଖି ବୁଲାଇନିଏ । ତାକୁ ଲାଗେ, ହଜାରେ ପୁରୁଷ ସ୍ତ୍ରୀଙ୍କ ଭିତରେ ମାତ୍ର ଦୁଇ ଜଣ ଦେଖୁଛନ୍ତି ନାଚ, ଶୁଣୁଛନ୍ତି ଗୀତ—ସେ ଆଉ ଶୋଭା । ଏହି ଦୁଇଟି ଆଖି ଛଡ଼ା ଆଉ କେହି ଦେଖୁଥିଲା ଭଳି ତା' ମନକୁ ଆସେ ନାହିଁ ।

ବାଁ ଡାହାଣ, ଆଗପଛ ଚାରିଆଡ଼କୁ ଗୋବିନ୍ଦ ମହାରଣାର ମୁଣ୍ଡଟିକୁ ନିଦ ଝାଙ୍କିଦିଏ । ଏଣୁ ତେଣୁ କେତେ ସପନ—ଶୋଭା ଯାଉଛି ପାଣି ଆଣିବାକୁ । ଭାତ ରନ୍ଧା ସରିନାହିଁ । ସେ ଡାକ ପକାଉଛି ଜଲଦି ଦି'ଟା କାଠିଦିଅ । ପାଲା ଆରମ୍ଭ ହୋଇଗଲାଣି । ହାଣ୍ଡିଶାଳ ଭିତରୁ ବାହାରିପଡ଼ି ଶୋଭା ହସି ହସି କହୁଛି—କ'ଣ ଦଣ୍ଡେ ଘଡ଼ିଏ ଡେରି ହୋଇଗଲେ ସବୁ ମାରି ହେଇଯିବ କି ? ଟିକିଏ ସବୁର କର । ଭାତ ଓହ୍ଲାଇ ଦେଇ ସନ୍ତୁଳା ଟିକିଏ କରିଦିଏଁ ।

ମୃଦଙ୍ଗ ତାଳ ଓ ଝାଞ୍ଜ ଭିତରେ ଚମକି ପଡ଼େ ସେ । ଭିକାରି ପୁରୁଷି ବୋଲୁଛି— 'ଆଜ ମୁଁ—ଦେଖିଲି,'ଘନ—ଶ୍ୟାମକୁ ଗୋ ।' ମୃଦଙ୍ଗର ତାଳେ ତାଳେ ବଦ୍ଧାନନ୍ଦ ଦାସଙ୍କର ପାଳୁଆପାଟିଭିତରେ ହେମଦେସ୍ତାରେ ଗୁଣ୍ଡ ହୋଇଥିବା ପାନଟିକକ ନାଚଉଠେ । ଘୁଷୁଆଡ଼ ଫଉଗ୍ର ଦଣ୍ଡେ । ତେଲ-ଲଇଟ୍ ଆଲୁଅର ତେଜ ମଉଳିଯାଏ, କୁଆ କା କା କରେ । କୋଇଲିଟା ସ୍ୱର ବଦଳେଇ ତରବର ହୋଇ କୁଠ ଲୋ କୁଠ ଲୋ ଡାକି ଡାକି ଦେ ଚମ୍ପଟ୍ । ପାଲବାଲାଙ୍କର ମାଗୁଣି ଆରମ୍ଭ ହୁଏ । ସେ ସ୍ୱରର ଅଭିନୟ ସରିଆସେ ।

ପୁରୁଷି ମଣିମା ଗୀତ ବୋଲେ—ମଣିମା ଶୁଣିମା ହେଉ ଗରିବ ଡାକ । ପାଲିଆଙ୍କ ଭିତରୁ ଜଣେ କାନ ପତେଇ ଘୂରିଆଡ଼ୁ ବୁଲି ଆସେ । ପଇସା, ଅଣି, ଦୋଅଣି, ଦୋପଇସି ଯେ ଯାହା ପାରେ କାନ ଭିତରେ ପକେଇଦିଏ । ତାହାପରେ ପାଲ ପଡ଼େ ପୁବଲର । ସେ କଣ୍ଠ ଥରେଇ ଗୀତଗାଏ—'ଜୀବନ ବନ୍ଧୁ ମାଗୁଣି, ମାଗୁଛି ରେ ଏତକି ।' ପୁଣି କାନ ଭିତରେ ଅଣି, ଦୋପଇସି, ଦୋଅଣି ପଡ଼େ ।

ଗୋବିନ୍ଦ କହେ—ବୁଝିଲେ ନଟବାବୁ, ତମେ ସିନା କହୁଥିଲ ପାଲ-ସୁଆଙ୍ଗ ଗୋଟାଏ ବଦଖର୍ଚ୍ଚ ବୋଲି । ଆଚ୍ଛା, ତମର ଏ ଭୋଟ ପାଲ ଭଲ କେଉଁ ଗୁଣରେ ଅଧିକା ?

ନଟବାବୁ ବେଖାତର ହସ ହସି କହନ୍ତି—'ତମେ ଏଇଆ ବୁଝିଲ ମହାରଣା ! ଭୋଟ ଦେବାଟା ପାଲ-ସୁଆଙ୍ଗ ଭଳି ? ଭୋଟ ଦେଇ ଆମେ ସରକାର ଗଢ଼ୁଚେଁ । ରାଜ୍ୟ ଚଳାଇବାକୁ ଭୋଟ ଦେବା ଦରକାର । ତାହା ସଙ୍ଗେ ସଙ୍ଗେ ପାଲ-ସୁଆଙ୍ଗ କଥା ତଉଲ କରୁଛ ତୁମେ ? ଏଡ଼େ ବୁଝିଲା ସୁଝିଲା ଲୋକ ହୋଇ—

ହଁ ବାବୁ, ଠିକ୍ ଏମିତ ବାଦୀପାଲ ଭଳି ତ ଭୋଟ ଦେଲା ବେଳେ ଜଣାପଡ଼େ । ଗୋଟାଏ ପକ୍ଷ ଆଉ ଗୋଟାଏ ପକ୍ଷକୁ ହରେଇଦେବା ହେଲା ଅସଲ କଥା । ତେଣିକି କିଏ ସରକାର ଗଢ଼ୁଛି, ତାହା ଦେଖିବାକୁ କାହାକୁ ଅବା ତର ମିଳେ । ହେଲେ, ଆମେ ତ ଶୁଣୁଚୁଁ, ଗାନ୍ଧି ମହାତ୍ମା କୁଆଡ଼େ ଏମିତ ହଜାର ହଜାର ଲୋକଙ୍କ ଆଗରେ ବକ୍ତୃତା ଦେଇ ସାରି କାନ ପତେଇ ଚାନ୍ଦା ମାଗୁଥିଲେ !

ନଟବାବୁ ଏଥର ସମର୍ଥନ କରି କହନ୍ତି—ହଁ, ଯାହା କହୁଲ ସେ କଥା ସତ ଯେ, ତୁମେ ଭଲା ଆମ ଭିତରୁ କାହାକୁ ଚାନ୍ଦା ଅସୁଲ କରିବାର ଦେଖିଲଣି ?

ନ ହେଲା ବାବୁ, ତମ ଭିତରୁ କିଏ କେଉଁ ଦଳର ଲୋକ, ତାହା ଜାଣିବା ବଡ଼ ମୁସ୍କିଲ । ହେଲେ, ସମସ୍ତେ ମତେ ଲାଗନ୍ତି ଗୋଟାଏ ଗୋଟାଏ ପାଲ ଦଳଭଳି । ଭିକାରି ପୁରୁଷି ଗୀତ ବୋଲୁଛି, ପୁବଲ ସାନ୍ତର ନାଚ କରୁଛି ଗୋଡ଼ ବୁଲାଇ, ଆଉ ତମେ ଅବା

ବକ୍ତୃତା ଝାଡ଼ନ୍ତୁ ହାତ ହଲାଇ—ଫରକ ବେଶି ନୁହେଁ ତ ! ନଟବରଙ୍କ ଆଖି ଯୋଡ଼ାକ ଲାଲ ପଡ଼ିଯାଏ ରାଗ ଓ ବିରକ୍ତିରେ । ଯୁକ୍ତିକୁ ଶୁଣି ନ ଶୁଣିଲା ପରି ଘୃଣାଦୃଷ୍ଟିରେ ସେ ଚାଲିଯାଆନ୍ତି । ଏତିକିବେଳେ ଗଦାଧର ପ୍ରତିବାଦ କରି କହେ, କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ । ସୁବଳ ସାନ୍ତରା ପାଖରେ ତୁମେ ଭିକାରି ସୁବୃଦ୍ଧିକୁ ନ ଥୋଇ ତୁଳିବ ନାହିଁ ପରା ଭାଇ ! ଦେଖିଲନି ସୁଧାକର ବାବୁ ତମ କଥାରେ କେମିତି ରାଗିଗଲେ ?

ଆରେ ରଖ୍ ତୋ ସୁଧାକର ବାବୁ । ତୋର ତ ଖାଲି ରସ ଉଛୁଳିପଡ଼ୁଛି ସୁବଳ ସାନ୍ତରା ପାଇଁରୁ । କରେ ସଲଜ ଗାଏ, ନିଲଜ ବାଏ, ଅତି ଅଲଜୁକ ନାଚଆଁ ଯାଏ । ସେ ଗୋଟାଏ ନାଚୁଆ ମିଲଙ୍କ ଭଳି ଅଣ୍ଟା ଗୋଡ଼ ହଲେଇଲା ବୋଲି ତାକୁ ତୁ କହୁଛୁ ବଡ଼ ।

ଖାଲି କହିଦେବା କଥା ନୁହେଁ ଭାଇ ! ଦୁହିଙ୍କର ମାଗୁଣି ପଇସା ଗଣିଛ ? ମୁଁ ଏଇକ୍ଷଣି ପରା ଗଣି ଆସିଲି, ଦି' ଜଣଙ୍କର ମାଗୁଣି ପଇସା । ସୁବଳର ହେଲା ଚାରିଟଙ୍କା ତେରଅଣା, ସୁବୃଦ୍ଧିର ମୋଟେ ଟଙ୍କାଏ ଉଣେଇଶ ପଇସା । ଏଥିରୁ ବୁଝିବ, କାହାର ଦାମ୍ କେତେ ।

ଆରେ ଯା ତୋ ସୁବଳ ସାନ୍ତରା । ତମ ଭଳିଆ କେଇ ଜଣ ଫକଡ଼ିଆ ତାକୁ ବଡ଼ କରି ଧରିଛ ବୋଲି ସମସ୍ତେ ସେହି କଥା ମାନିବେ ନାହିଁ । ଗୋବିନ୍ଦ ମହାରଣାର ମୁଗୁର-ପିଟା ଟାଣୁଆ ବାହାର ମାଂସପେଶୀ ନାଚଉଠେ ।

ଦୁଇ ଜଣଙ୍କ ଭିତରେ କଥାର ଚଢ଼ାଉତରା ! ଶେଷରେ କଥାବାର୍ତ୍ତା ଆସି ପହଞ୍ଚେ ତର୍ଜ୍ଜନ ଗର୍ଜ୍ଜନ ଉପରେ । ମୁଣ୍ଡ ଗୋଡ଼ ହାତ ସବୁ ହଲିଯାଏ । ସାଇ ପଡ଼ଶା ପାଁଜଣ ରୁଣ୍ଡ ହୋଇ ଯାଆନ୍ତି, ଗୋବିନ୍ଦ ଗଦାଧରଙ୍କର ଏ ନୂଆ ପାଲି ଦେଖିବା ପାଇଁ । ଶୋଭା ଘରର ଭିତରବାହାର ହୋଇ କାହାକୁ କିଛି କହି ପାରେନା । ସୁଧାକର ପଣ୍ଡିତ, ଦୟାନିଧି ଦାସ ଦଉଡ଼ିଆସି ଦୁହିଙ୍କ ଦି' ପାଖରୁ ଛଡ଼ାଇ ପକାନ୍ତି । ଗୋବିନ୍ଦକୁ ତା' ଘର ଭିତରକୁ ନିଧି ଦାସେ ଠେଲି ଦିଅନ୍ତି । ସୁଧାକର ପଣ୍ଡିତେ ଗଦାଧର ବାହାକୁ ଧରି ଓଟାରି ଓଟାରି ନେଇଯାଆନ୍ତି । ଧୋସରାଜିଙ୍କାରେ ଛଡ଼ାଛଡ଼ି ହୋଇ ଗଲାବେଳେ ଦୁହିଙ୍କ ନାକରୁ ଫଁ ଫଁ ନିଃଶ୍ୱାସ ବାହାରେ । ପୁଣି ପାଲି ପଡ଼ିଆରେ ସଣ୍ଢହେଲେ ଦୁହେଁ ବଦନ୍ତି । ଗଦାଧର ବାହା ବାହା କରେ ସୁବଳକୁ, ଗୋବିନ୍ଦ ତାରିଫ ଜଣାଏ ସୁବୃଦ୍ଧିକୁ ।

ଆମ୍ବଗଛ ମୂଳେ ଶୋଭା ଢାଙ୍ଗରେ ଗେହ୍ଲି ମାଳତୀ ଚମ୍ପୁଟା ଚମ୍ପୁଟି ଠେଲା ପେଲା ଲଗାନ୍ତି । ରାତିଯାକ ଅନିଦ୍ରା ରହି ଗଦାଧର ଦିନ ବେଳରେ ନିଦଯାଏ । ସାନ ଭଉଣୀ ସଞ୍ଜୁକ୍ତା ଶୋଇଥାଏ ତା ପାଖରେ । ସପନ ଦେଖୁ ଦେଖୁ ସୁବଳ ସାନ୍ତରା ନାଚରେ ତାହାର ଅଣ୍ଟା ଗୋଡ଼ ହଲିଯାଏ । ଗୋଡ଼ ଉଠିଯାଇ ଅଜାଣତରେ, ପିଟିହୁଏ ସଞ୍ଜୁକ୍ତା ଉପରେ, ସେ ଉଡ଼ୁହୁଁଡ଼ୁଃ ଶବ୍ଦେକ ନିଦ ବୁଝିକନା ଭାଙ୍ଗିଯାଏ । ପୁଣି ଦିନେ ଦି' ଦିନ ପରେ ଗୋବିନ୍ଦ

ଦୁଆରେ ତା'ର ହୁଏ ଭେଟ । ସେ ସଉସ୍ଥାଠାରୁ ଶୁଣିଛି, ଗୋବିନ୍ଦ କାଲି ଶୋଭାକୁ ପିଟିଛି । ଶୋଭା ଦୁଷ୍ଟିକର ଅଖିଆ ଅପିଆ ପଡ଼ିଛି । କଥା କ'ଣ ସଉସ୍ଥାକୁ ପଚାରି ଗୋବିନ୍ଦ ବୁଝିଛି । ଅସଲ କାରଣ, ସେଇ ବାଡ଼ିପାଲି ।

ଶୋଭା ସୁବଳ ସାନ୍ତରା ପକ୍ଷନେଇ ଗୋବିନ୍ଦ ସାଙ୍ଗରେ ଯୁକ୍ତି କଲାରୁ ସେ ବହୁତ ଅଭଦ୍ରା କହି ସ୍ତ୍ରୀକୁ କ୍ଷେତରେ ହାତ ଧୁରାଇ ମାଇଲା । କଥାଟା ଗଦେଇକୁ ବଡ଼ ବାଧିଲା । ଶୋଭାକୁ ସେ ଭଲକରି ପିଲା ଦିନରୁ ଜାଣେ । ତା'ର ମାମୁଁ ଘର ଗାଁ ଝିଅ ସେ । ଭାରି ଗୁଣର ବୋଲି କେତେ ଲୋକଙ୍କ ମୁହଁରୁ ତା'ର ପ୍ରଶଂସା ସେ ଶୁଣିଛି । ଖାଲି ତାଙ୍କ ଗାଁର ବୋହୂ ହୋଇ ଆସିଛି ବୋଲି ଶୋଭା ସଙ୍ଗେ ସିନା ଗଦେଇର କଥାବାର୍ତ୍ତା ନାହିଁ । ନଇଲେ ସେ ତାକୁ ଭାରି ସ୍ନେହପାଏ, ନିଜ ଭଉଣୀଠାରୁ ବି ବେଶି । ଶୋଭାକୁ ଦେଖିଲେ ତା'ମନ କାହିଁକି ଏମିତି ଉଲୁସି ଉଠେ—ଗଦେଇ ତାହା ଆଜଯାକେ ବୁଝିପାରି ନାହିଁ । ସେ ଭାବେ, ତା' ଭଳି ସୁନ୍ଦର ଆଉ ଗୁଣର ଝିଅ ସଂସାର ଭିତରେ ଜଣେ ହେଲେ ନଥିବ ।

ସେଇ ଶୋଭାକୁ ଗୋବିନ୍ଦଗୁଣ୍ଡାଟା ମାରିଛି ! ତାହା ଶୁଣି ଗଦେଇର ହାଡ଼ ଜଳି-ଉଠିଲା । ହଁ, ପୁଣି ସେଇ ସୁବଳସାନ୍ତରା ପକ୍ଷ ନେଇଛି ବୋଲି ଶୋଭାର ସିନା ଏ ଦଶା ! ଗଦାଧର ଆଜି ଯେମିତି ହେଉ ଗୋବିନ୍ଦକୁ ଦେଖିନେବ । ପୋଖରୀ ତୁଠରେ ଦିହେଁଙ୍କର ମୁହାଁମୁହିଁ ଭେଟ । ସେଇଠି ପୁଣି ଲାଗିଗଲା ଲଢ଼େଇ । ଗଦାଧର ତାକୁ ଯାହା ଭାଇ ଲେଖା କରେ, ଆଜି ଏକାଥରେ ରାଗିଯାଇ ମୁହଁ ଉପରେ ତା'ର ହାଣ୍ଡିଲା । ଗୋବିନ୍ଦ ବି ଡୋନାଲ-ମୋନାଲ ହୋଇ ବାହା ଫୁଟିକି ମାରି ଚଢ଼ିକି ଆସିଲା ଗଦେଇ ଆଡ଼କୁ ।

ଆରମ୍ଭ ହୋଇଗଲା ରୀତିମତ ଏକ ଫୌଜଦାରୀ, ମୁଣ୍ଡ ଫଟାଫଟି । ଅର୍ଥାତ୍ କାହାର ମୁଣ୍ଡ ଫାଟିନି, କି ହାତ କଟିନି ଏଇ ଆଜି ମାରପିଟରେ । କେବଳ ଯାହା ଡାକ୍ତର ସାର୍ଟିଫିକେଟ୍ ଦେଇଛନ୍ତି; ଅବଶ୍ୟ କଟାଦାଗ ଓ ରକ୍ତବୁନ୍ଦା ଦେଖି । ସଙ୍ଗେ ସଙ୍ଗେ ଗୋଟାଏ ଗୋଟାଏ ପକ୍ଷନେଇ ମକଦ୍ଦମା ତଦ୍‌ବିର କରିବାକୁ ଗାଁମାମଲତକାର ଦୟାନିଧି, ଶିକ୍ଷାବିତ୍ ସୁଧାକର ପଣ୍ଡିତ ଓ ରାଜନୀତିଜ୍ଞ ନଟବରଙ୍କ ମୌକା ଯୁଟିଯାଏ । କୌଣସି ପକ୍ଷରୁ ସାକ୍ଷୀ ସୁଦ୍ଧା ପ୍ରମାଣ ଅଭାବ ହୁଏ ନାହିଁ । ସେହିଦିନ ସୁବୁଦ୍ଧି ଓ ସୁବଳଙ୍କର ପାଳି ଶେଷ ହୋଇଥାଏ । ଦୁହେଁଯାକ ଯେ ଯାହାର ପାଉଣା ଆଦାୟ କରି ପେଡ଼ି ପେଟରା ବାନ୍ଧି ଗାଁରୁ ବିଦା ହୋଇଗଲେ ମନ ଖୁସିରେ; କିନ୍ତୁ ଗାଁରେ ଆରମ୍ଭ ହେଲା ସେଇ ଦିନଠାରୁ ଦି' ପକ୍ଷର ଯୋଡ଼ାଏ ବଡ଼ ମକଦ୍ଦମା । ସୁବଳ ପକ୍ଷନେଇ ଗାଁର ଅଧେ ଲୋକ ରହିଲେ ଗଦାଧର ମକଦ୍ଦମା ତଦବିର କରିବାକୁ, ବାକି ଅଧିକ ଗୋବିନ୍ଦ ପକ୍ଷରେ ।

ପୁଣି ଚାଲିଲା ମକଦ୍ଦମା ପାଇଁ ଭେଦା ଚାନ୍ଦା ଅସୁଲ; ଦି'ପକ୍ଷର ଥାନାକୁ ଧାଁ ଦଉଡ଼ । ଗାଁ ଭିତରେ ଆଉରି ଗୋଟାଏ କିସମର ବାଡ଼ିପାଲି ! ଡାକ୍ତରଖାନା, ପୁଣି ପୋଲିସଥାନାରୁ ଜିଲ୍ଲା ହାକିମଙ୍କ ଇଜଲାସ ପର୍ଯ୍ୟନ୍ତ । ସେଇଠି ଯାଇଁ ଉଭୟ ପକ୍ଷର ଭେଟ

ସିନା, ନ ହେଲେ ଗାଁ ଭିତରେ କାହାର ହେଲେ ମୁହଁ ସୁହାଁସୁହିଁ କି କଥା କୁହାକୁହି ନାହିଁ । ତେବେ, ହେଲେ ଖାଲି ଏକ ପକ୍ଷ ଅପର ପକ୍ଷକୁ ବାଟରେ ଘାଟରେ ଛୁଗୁଲେଇ ବିସୁଲେଇ କେବେ କେମିତି ବାଁରେଇ ପଦେ କହିଦଅନ୍ତି ।

ହେମଦସ୍ତାରେ ପାନ ଛେଚୁ ଛେଚୁ ଦୟାନିଧି ଦାସ କଚେରି ହତାରେ ଟହଲ କରନ୍ତି । ପଛେ ପଛେ ଚାଲିଥାନ୍ତି ଗଦେଇ, ଘୁଣ, ଅପର୍ତ୍ତି । କଚେରି ସରିଆସେ । ହେମଦସ୍ତାରୁ ଛେଚା ପାନ ପାଟିକୁ ପକେଇ ଦୟାନିଧି ଖୁସି ହୋଇ କହନ୍ତି—ଦେଖିଲ ତ, ଓକିଲ ଚିଲା ଗଣେଶ୍ୱର ବାବୁ—ଟଙ୍କାତ ହାଣ୍ଡି କମଉଛୁ, ହେଲେ ଜବାବ ସୁଆଲ ବେଳେ ତ ଗୋଟାଏ ବାଘ ! ଘୁଣ ପଟଉଡ଼ା ସାକ୍ଷୀ ଯୋଗ ଦେଇ କହେ, କାହିଁକି ଜେରା ଜମାନ-ବନ୍ଦିରେ ସେ ପକ୍ଷ ଓକିଲ ତାଙ୍କ ଆଗରେ ଛୁଡ଼ା ହେବ ଭଲା ! ଗୋବିନ୍ଦ ମହାରଣାର ପାଟି ତ ଖାଲି ମାରିଗଲା । ଗଦେଇ ବିଚରା ସବୁ କଥା ଶୁଣି ନ ଶୁଣିଲା ଭଳି ପଛେ ପଛେ ଚାଲିଥାଏ । ଯୋଡ଼ାଏ ତାରିଖ ନ ହେଉଣୁ ଦାସଙ୍କ ପାଖେ ଶହେ ଟଙ୍କାର ହାଣ୍ଡ୍ ନୋଟ୍ ଲେଖା ସରିଲଣି । ଆହୁରି ତ ଅଛୁ !

ଏତିକିବେଳେ ତାଙ୍କ ସାମନାରେ ଚାଲି ଯାଆନ୍ତି କଳାକୋଟ୍ ପିନ୍ଧା ଦୁ'ଜଣ ଓକିଲ । ତାଙ୍କ ଭିତରୁ ଜଣେ ହେଉଛନ୍ତି ଗଣେଶ୍ୱର ବାବୁ, ଆଉ ଜଣକ ଅପର ପକ୍ଷର ଓକିଲ । ଦୁହେଁ ଦୁହିଁଙ୍କ କାନ୍ଧରେ ହାତ ପକାପକି ହୋଇ ବେଶ୍ ହସ ଖୁସିରେ କଥାବାର୍ତ୍ତା କରି ଚାଲିଯାଆନ୍ତି ତ ! କାହିଁ ? ମିସଲ ଉପରେ ସେଇ ଦୁ' ଓକିଲଙ୍କର ଯେଉଁ ଧମାଧୋଟ ଲଢ଼େଇ ଚାଲିଥିଲା—ସେଇଠି ଅବା ଦୁହିଁଙ୍କ ଭିତରେ ମାରପିଟ୍ ଫୌଦାରି ହୋଇଯିବ ! ଅଥଚ ସେଠାରୁ ବାହାରି ଆସି ତ ଘଣ୍ଟାକ ପରେ ଦୁହେଁ ତାହା ପାସୋରି ପକାଇଛନ୍ତି । ଗଦେଇର ମନେ ପଡ଼ିଲା, ଘୁବଲ ସାନ୍ତରା ଭିକାରି ଘୁରୁଛିଙ୍କ ପାଲି ଲଢ଼େଇର ଚିତ୍ର—ଆଉ ଶେଷ ଦିନ ଗାଁରୁ ବିଦା ହୋଇ ଗଲାବେଳେ ଦୁହିଁଙ୍କର ହସ ଖୁସିରେ ଯେ ଯାହା ପାଉଣା ପତ୍ର ବଣ୍ଟାକୁଣ୍ଟା କରି ଗଣ୍ଠିଲି ବାନ୍ଧି ବାହାରିବା ଚିତ୍ର । ସତେକି ଆଜନ୍ମରୁ ଦୁହିଁଙ୍କ ଭିତରେ ମହା ଦୋସ୍ତି !

---

( "ନବଜୀବନ" ୧୯୫୭ )

# ଦୁର୍ବଳ ଦେବାଳୟ

—ରାଜକିଶୋର ରାୟ

ଘଟଣାଟି ଘଟିଯିବା ପରେ ଚିରସ୍ମରଣୀୟ ସ୍ତରକୁ ଆସିବା ବେଳକୁ ଶ୍ରୀଯୁକ୍ତ ନରସିଂହ ଚୌଧୁରୀ ଭାବିଲେ, କାହାର ଦୁର୍ବଳତା ନାହିଁ ? ମଣିଷ ଶରୀର ଧରି କାହାର ଏପରି ଆସ୍ପର୍ଦ୍ଧା ହେବ ଯେ, ସେ କହିବ ତା'ର ଦୁର୍ବଳତା ନାହିଁ ?

ଦୁର୍ବଳତା ସମସ୍ତଙ୍କର ଅଛି ଏବଂ ଏହି ଦୁର୍ବଳତା ଯୋଗୁ ମଣିଷର ଅଧଃପତନ ଘଟିଥାଏ, କିନ୍ତୁ ଶ୍ରୀଯୁକ୍ତ ନରସିଂହ ଚୌଧୁରୀଙ୍କର ଯେଉଁ ଦୁର୍ବଳତାଜନିତ ଘଟଣା ଜୀବନରେ ଘଟିଗଲା, ଯାହା କି ତାଙ୍କର ଜୀବନୀ-ଲେଖକଙ୍କ ମତରେ ସାହିତ୍ୟରେ ସ୍ଥାନ ପାଇବା ଆବଶ୍ୟକ, ସେ ଦୁର୍ବଳତାର ରୂପରେଖ ଏପରି କିଛି ନୁହେଁ, ଯାହା ପାଇଁ ସେ ଲଜ୍ଜିତ ହେବେ ଅବା ଜୀବନସାରା ଆତ୍ମଗ୍ଲାନିରେ ଭାବ ହେଉଥିବେ ।

ବିଚିତ୍ର ଜୀବନର ବିଚିତ୍ର ଧାରା କେତେ କୁଆଡ଼େ ଭାସିଯାଇଛି । ଛୋଟ ହେଉ ବଡ଼ ହେଉ, ମଣିଷର ଜୀବନ ଗୋଟିଏ ପ୍ରଶସ୍ତ ଗନ୍ତାଘର । ମଣିମାଣିକ୍ୟଠାରୁ ଆରମ୍ଭ କରି ଅତି ତୁଚ୍ଛ ପଦାର୍ଥର ସମ୍ଭାରରେ ଏହା ପରିପୂର୍ଣ୍ଣ ହୁଏ ବୋଲି ଜୀବନ ଏତେ ସୁନ୍ଦର, ପୁଣି ଏତେ କୁତ୍ସିତ ।

ଝିଅ ରମା ଆସି କେତେବେଳୁ ତାଗିଦା କରି ଗଲାଣି—"ବାପା, ଠିକ୍ ଛଅଟା ତିରିଶ ମିନିଟ୍‌ରେ ସଭା, ମନେ ଅଛି ତ ? ଏଇନେ ତ ଛଅଟା ପଚିଶ ମିନିଟ୍ । ଗାଡ଼ି ପ୍ରାୟ ଆସିଗଲା ବୋଲି ଭାବ; ତମେ ବରଂ ବୈଠକଖାନା ଛାଡ଼ି ବାହାର ବାରଣ୍ଡାରେ ବସ । କାର୍ ଆସିବାମାତ୍ରେ ତୁମେ ଉଠିପଡ଼ିବ, ତୁମଆଡୁ ଯିମିତି ଅଡୁଆ କିଛି ନ ଥାଏ ।"

ସ୍ତ୍ରୀ ମୃଦୁଳା ଦେବୀ ଦୁଇଥର ଆସି ଚେତେଇ ଦେଇଛନ୍ତି, "ଶୁଣ, ଗଳାବନ୍ଧାକୋଟର ଗଳା ପାଖ ବୋତାମ ବକ୍ତୃତା ଦେଲାବେଳେ ଖୋଲିଦେବ । ତମର ଅନେକ ସମୟରେ ମନେ ରହେନି । କୋଟ୍‌ଟା ପୁରୁଣା ହେଲାଣି ବା ବୋତାମଟା ଆଣ୍ଟ ହେଉଛି । ମୁଁ ସାଙ୍ଗରେ ଯାଇଥିଲେ ଏତେ କଥା ଭାବିବାକୁ ପଡ଼ନ୍ତା ନାହିଁ; ପେଣ୍ଡାଲ ଉପରେ ନ ବସିଲେ ବି ତଳେ ବସି ଚେୟାର ଉପରୁ ସଙ୍କେତ ଦେଇଦିଅନ୍ତି ବୋତାମଟା ଖୋଲିଦେବାକୁ । ମୁଁ ତ ଯାଉନାହିଁ । ତୁମେ ମନେକରି ସବୁ ଚଳେଇନେବ ।

"ହଁ, ମଝିରେ ମଝିରେ ପାଣି ପିଇବ । ଏବେ ସେମାନେ ଭୁଲିଯାଉଛନ୍ତି ପାଣିଗ୍ଲାସ୍ ଟେବୁଲ ଉପରେ ରଖିବାକୁ । ସଭା ପରେ ଫାଣ୍ଟା ଆଣି ଦେଉଛନ୍ତି, କିଏ ବା ଦେଉନାହାନ୍ତି । ଅଉ କଅଣ ବିସ୍ମୟ ଅଛି ଯେ, ଅନର୍ଗଳ କହୁଥିବ ବିନା ଶୋଷରେ ?"

ଝିଅ ରମା ଫାଟକ ପାଖରୁ ଫେରିଆସି କହିଲା—"ବାପା, କେହି ତ ଆସିଲେ ନାହିଁ, ମଟରଗାଡ଼ି ଦେଖାନାହିଁ । ଠିକ୍ ସମୟରେ ସଭା ଆରମ୍ଭ ନ ହେଲେ ତୁମେ ବିରକ୍ତ ହୁଅ ବୋଲି ସମସ୍ତେ ଜାଣନ୍ତି । ପୁଣି ଏଡ଼େ ବିଖ୍ୟାତ ଲେଖକଙ୍କର ସ୍ମୃତି ଉଦ୍ଦେଶ୍ୟରେ ସଭା !!"

ଗଳାବନ୍ଧା କୋଟ୍‌ର ନିର୍ମମ ଚାପରେ ଯେତେ ନୁହେଁ, ସଭାର ଉଦ୍ୟୋକ୍ତାମାନଙ୍କର ତାଙ୍କ ପ୍ରତି ଏ ଅପମାନର ଚାପ ବହୁଗୁଣରେ ନରସିଂହ ଚୌଧୁରୀଙ୍କୁ ଉତ୍ତପ୍ତ କରିଦେଇଛି । ତଥାପି ସେ ବିମୂର୍ତ୍ତ ହୋଇ ଅପେକ୍ଷମାଣ ଅବସ୍ଥାରେ ଚେୟାରଟି ଉପରେ ବସି ରହି ପ୍ରସ୍ଥାନ୍ମୁମାନ ସନ୍ଧ୍ୟାର ରୂପକୁ ଦେଖୁଥାନ୍ତି ।

ଯୁବକ ଅବସ୍ଥାରୁ ଶିକ୍ଷା ବିଭାଗରେ କାର୍ଯ୍ୟ କରିବା ପ୍ରାରମ୍ଭରୁ ଆଜି ଜୀବନର ସନ୍ଧ୍ୟା ପର୍ଯ୍ୟନ୍ତ ସାଂସ୍କୃତିକ ସଭା-ସମିତିରେ ତାଙ୍କୁ ଖୋଜି ଲୋଡ଼ି ନେଇଛନ୍ତି ଦେଶବାସୀ । ପ୍ରତ୍ୟେକଟିରେ ଯେ ଉପଯୁକ୍ତଭାବରେ ସେ ସମ୍ମାନିତ ହୋଇଛନ୍ତି, ତାହା ନୁହେଁ, ତେବେ ଉଦ୍ୟୋକ୍ତାମାନଙ୍କର ଆଗ୍ରହ ତାଙ୍କୁ ଆକର୍ଷଣ କରିନିଏ ବିଭିନ୍ନ ସ୍ଥାନକୁ । ତାହାହିଁ ତାଙ୍କର ଆନନ୍ଦ; ତରୁଣ, ଯୁବକ, ପ୍ରୌଢ଼ ସମସ୍ତଙ୍କ ସହିତ ମିଶିବେ, ଭାବଧାରା ଗ୍ରହଣ କରିବେ, ଦେବେ ନେବେ, ଏଇଆ ।

ଲାଇବ୍ରେରୀରୁ ବହି ଆଣି ଚୌଧୁରୀ ଟିପିରଖିଛନ୍ତି ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନଙ୍କର ବାଣୀଗୁଡ଼ିଏ—ସଭାରେ ବ୍ୟାଖ୍ୟାନ ଦେବେ । ମହାତ୍ମା ଗାନ୍ଧୀ ଯାହା ଚିନ୍ତା କରିପାରିନଥିଲେ, ଗୋଟାଏ ଓଡ଼ିଆ ତାହା ବହୁ ଆଗରୁ ଚିନ୍ତା କରିଥିଲା—ଏଦ୍ୱାରା ପ୍ରମାଣ ଦେଲାବେଳେ ଶ୍ରୋତୃମଣ୍ଡଳୀ କିପରି ଉଚ୍ଛ୍ୱସିତ କରତାଳି ଦେବେ, ସେ କିପରି ବିନମ୍ର-ଭାବରେ ମଥା ପୋତି ତାହା ଗ୍ରହଣ କରିବେ, ଏହା ଭାବୁ ଭାବୁ ନରସିଂହ ଚୌଧୁରୀ ହାତଘଣ୍ଟା ଦେଖିବାରେ ଜାଣିଲେ ଯେ ସନ୍ଧ୍ୟା ସାତଘଣ୍ଟା ଅତିକ୍ରାନ୍ତ ହୋଇଯାଇଛି ।

ଯଦି କାର୍‌ଟା ବାଟରେ ଖରାପ ହୋଇଯାଇଥାଏ, ଟାଉନ୍ ଜାଗାରେ କଅଣ ଟାକ୍ସିର ଅଭାବ ଅଛି ଯେ, ଏ ପରିସ୍ଥିତିର ସମାଧାନ ହେବ ନାହିଁ ? ଅବା ଫୁଲମାଳ ଆସିବାରେ ଡେରି ହୋଇଥିବ, ତାହା ହେଉ । ଅବଶ୍ୟ ନିଜ ପାଇଁ ନ ହେଲେ ଚଳିଯିବ; କିନ୍ତୁ ପ୍ରୋଗ୍ରାମ୍‌ରେ ଅଛି ବୁତିଏ ପ୍ରଦୀପ ଜଳାଇ ମଧୁସୂଦନଙ୍କର ଆବକ୍ଷ ମୂର୍ତ୍ତି ଉପରେ ବନ୍ଦି ପୁଷ୍ପମାଲ୍ୟ ଅର୍ପଣ କରିବେ ।

ମୃଦୁଲାଦେବୀ ବିରକ୍ତି ଭାବ ଦେଖାଇ ଘରଭିତରୁ ଆସି କହିଲେ—କାହିଁକି ଯେ ତୁମେ ଏ ସଭା-ସମିତିର ଡାକରାରେ ଭୁଲିଯାଇ ସମସ୍ତଙ୍କୁ 'ହଁ' କରିଦେଅ, ମୁଁ ବୁଝିପାରେନା ।

ଆଉ କ'ଣ ସୁନାମ ନା ଯଶର ବାକି ଅଛି ? ବରଂ ସେତିକି ସମସ୍ତ ଘରେ ସୁସ୍ଥଭାବରେ ବସିରହିଥିଲେ ଭଲ ହୁଅନ୍ତା, ଏବେ ଏ ଯେଉଁ ଅପେକ୍ଷା, ତାହା ତ କଷ୍ଟକର ହୁଅନ୍ତା ନାହିଁ !

ଶ୍ରୀ ଚୌଧୁରୀ ଅନ୍ତର୍ଲୀନ ଅବସ୍ଥାରେ ବସିରହିଛନ୍ତି । କ୍ଳାନ୍ତି ଧୀରେ ଧୀରେ ଚକ୍ଷୁପତା ଉପରେ ଆଚ୍ଛନ୍ନ ହୋଇ ଆସୁଛି । ସେହି ସମ୍ୟକ୍ ତନ୍ଦ୍ରା ଭିତରେ ସେ ଅବଲୋକନ କରୁଛନ୍ତି ମଧୁସୂଦନ କପଟି ପ୍ରଚଣ୍ଡ କ୍ରୋଧରେ ତାଙ୍କ କାରଖାନା ତିଆରି ଯୋତାଗୁଡ଼ାକ କାଟିପକାଉଛନ୍ତି ଆଉ କହୁଛନ୍ତି, 'ବିଦେଶକୁ ଏଇ ଯୋତାଗୁଡ଼ାକ ପଠାଇବ ? ଓଡ଼ିଆ କାରିଗର କଅଣ ମରିଗଲେଣି ? ମୋର ସବୁ ସ୍ୱପ୍ନ କଅଣ ବୃଥା ହୋଇଯିବ ?'

ପୁଣି ସେତେବେଳେ କେହି ଜଣେ ତାରକସି କାମର ଗୋଲାପ ଅତରଦାନୀକୁ ବୁଢ଼ାଙ୍କ ଆଖିଆଗକୁ ନେଇଆସୁଛନ୍ତି, ତାକୁ ଦେଖି ସେ ଚିତ୍କାର କରୁଛନ୍ତି—'ସାବାସ୍ ଓଡ଼ିଆପୁଅ ଆରେ, ମୁଁ ମରିଗଲେ ବି ଏ ଶିଳ୍ପୀ ବଞ୍ଚିବ···କାଳ-କାଳକୁ ବଞ୍ଚିବ··· ଗଢ଼ିବେ ସହସ୍ର ଭୁଜା···'

ରମା ପୁଣି ଆସି ସମ୍ବାଦ ଦେଲା—"ବାପା, ଘରଭିତରକୁ ଚାଲ, ସେମାନେ ଆସିବେ ନାହିଁ; ସାଢ଼େ ସାତଘଣ୍ଟା ହୋଇଗଲା । ଆସିଲେ ବି ତମର ଯିବା ଉଚିତ ହେବ ନାହିଁ, କାରଣ ତୁମେ ଜୀବନସାରା ସମୟାନୁବର୍ତ୍ତିତା ଶିଖେଇ ଆସିଛ ଛାତ୍ରମାନଙ୍କୁ । ସେମାନେ କେତେମାତ୍ରାରେ ତାହା ଗ୍ରହଣ କଲେ କି ନକଲେ, ତାହା ଭିନ୍ନ କଥା । ତୁମର ପ୍ରିନ୍‌ସିପ୍‌ଲ ଉପରେ ତୁମେ ଦୃଢ଼ ରୁହ ।"

ମୃଦୁଳା ଦେବୀ ପାଖରେ ଛିଡ଼ା ହୋଇଥିଲେ । ଟିପ୍ପଣୀ ଦେଲେ—"ବାପାଙ୍କର ଏଇ ଗୋଟାଏ ଦୁର୍ବଳତା···ପାନ ନାହିଁ, ସିଗାରେଟ୍ ନାହିଁ କୌଣସି ନିଶା ନାହିଁ···ଏଇ ଗୋଟାଏ ନିଶା···ଯିଏ ଡାକଦେଲା ସଭା-ସମିତି ନାଁରେ, ନାହିଁ କହିବାର ଉପାୟ ନାହିଁ··· କଅଣ ନା ସାଂସ୍କୃତିକ ଚେତନା ପ୍ରସାର କରିବେ ବାପା ! ତୁ ତ ଜାଣୁ, କେତେ ଥର ସଭା ସରେ ବାପା ଚାଲିଚାଲି ଆସିଛନ୍ତି, କେତେ ଥର ଅଖିଆ-ଅପିଆ ଫେରିଛନ୍ତି । ମୁଁ ଜାଣେ ବିରକ୍ତ ହେବ ଭାବି ଚୁପ୍‌ଚାପ୍ ଶୋଇଯାଇଛନ୍ତି କିଛି ନ ଖାଇ । ସଭାର ଉଦ୍ୟୋକ୍ତାମାନେ ସଭା ପରେ ଆଉ ଖୋଜିବାକୁ ଆସିନାହାନ୍ତି । ବାପା ନିଜେ ଟିକେଟ କାଟି ଗାଡ଼ିରେ ବସି ଫେରିଛନ୍ତି; ଅଥଚ ଏ ଅପମାନ ଅସମ୍ମାନର ଚିନ୍ତା ବି ତାଙ୍କୁ ସ୍ପର୍ଶ କରିନାହିଁ । ଉଠ, ଘରକୁ ଆସ । ମଧୁବାବୁଙ୍କ ଜୟନ୍ତୀ ଅବା ଜନ୍ମ-ମୃତ୍ୟୁ ଏ ଦେଶରେ ସବୁ ସମାନ । ଜନ୍ମକୁ ମୃତ୍ୟୁ ବା ମୃତ୍ୟୁକୁ ଜନ୍ମ କହିଲେ ବି ଚଳିଯିବ ।"

ନରସିଂହ ଚୌଧୁରୀ ତଥାପି ସ୍ଥାଣୁ ନିସ୍ପନ୍ଦଭାବରେ ବସି ରହିଲେ ଆକାଶର ଏକ ପ୍ରାନ୍ତ ଉପରେ ଦୃଷ୍ଟି ରଖି । ମନେ ପଡ଼ିଗଲା ଝିଅବେଳର ସେ ଦୃଶ୍ୟ । ସଭାକୁ ନିମନ୍ତ୍ରଣ କରିବାକୁ ଯେ ବ୍ୟକ୍ତି ଆସିଲେ ତାଙ୍କର ଆଗ୍ରହ, ତାଙ୍କର ନମ୍ରତା, ତାଙ୍କର ମିଠାବାଣୀ, ତାଙ୍କର

ବିଗଳିତ ହେବାର ଭଙ୍ଗୀ । ନରସିଂହ ଚୌଧୁରୀଙ୍କୁ ବକ୍ତା ହିସବରେ ନ ନେଲେ ମଧୁସୂଦନ ଦାସଙ୍କର ଆତ୍ମା ଯେ ଅବଶ୍ୟ ଅଶାନ୍ତି ଅନୁଭବ କରିବ, ତାହାର ଚେତନା ଦେଇ ନାମଲକ୍ଷଣକାରୀ ବ୍ୟକ୍ତି ଯେ ଭାଷ୍ୟ ରଚନା କଲେ, ରବିବାସରୀୟ ମଧ୍ୟାହ୍ନରେ,ସେ ସବୁ ଦୃଶ୍ୟ ଓ କଥା ନରସିଂହ ଚୌଧୁରୀଙ୍କର ସ୍ମରଣରେ ଆସିଗଲା ।

ଆଜି ରବିବାର, କଲେଜ ନାହିଁ; କିନ୍ତୁ ଶାନ୍ତି କାହିଁ ? ଏ ଯେ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା, ପୁଲିସ ଫୌଜ, ପିଲାଙ୍କର 'କପି କରିବା ଜନ୍ମଗତ ଅଧିକାର' ସ୍ଲୋଗାନ—ଏସବୁ ଭିତରେ ଶାନ୍ତି କାହିଁ ?

"ଆସିପାରେ କି ?"

"କିଏ ?"

ମୁଣ୍ଡ ଉପରେ ଗାମୁଛା, ପାଦରେ ଚପଲ, କାଖ ତଳେ ଛତା, ହାତରେ ମୁଣି... ଅପୂର୍ବ...

"ଆପଣ ଏ ସମୟରେ ? ଏତେ ଖରାରେ ଆସନ୍ତୁ, ଆସନ୍ତୁ କେବେ ତ ଆସନ୍ତିନି, ହଠାତ୍ ! ସଞ୍ଜବେଳେ ଆସିଥିଲେ ଭଲ ହୋଇଥାନ୍ତା...ଏତେ ଖରାରେ ?" ନରସିଂହ ଚୌଧୁରୀ ଉଠିଯାଇ ସମ୍ଭ୍ରମରେ ଆଗନ୍ତୁକଙ୍କୁ ବୈଠକଖାନାକୁ ନେଇଆସିଲେ ।

ଡାକିଲେ—"ରମା, ଲୋକପ୍ରତିନିଧି ଆସିଛନ୍ତି ମାଆଙ୍କୁ କହ ଖରାବେଳଟାରେ ଆସିଛନ୍ତି...ଫ୍ରିଜ୍ କି ଦହି-ଲୁଣ ଯାହା ଅଛି ଶୀଘ୍ର ଆଣିବେ ।"

ଲୋକପ୍ରତିନିଧିଙ୍କ ଆଡ଼କୁ ମୁହଁ କରି କହିଲେ—ଖାଇସାରି ଆସିଛନ୍ତି ତ...ସେ କଥା କହନ୍ତୁ—ନ ଖାଇଥିଲେ ସବୁ ବ୍ୟବସ୍ଥା ହୋଇଯିବ । ଏତେ ସମ୍ମାନୀୟ ବ୍ୟକ୍ତି, ଏପରିଭାବରେ ଆସିଲେ...

ଚୌଧୁରୀ ସତରେ ସଙ୍କୁଚିତ ହୋଇଗଲେ ।

ଲୋକପ୍ରତିନିଧି ଟିକିଏ ସୁସ୍ଥ ହେବା ପରେ କହିଲେ—ଆଗ ଶପଥ କରନ୍ତୁ, ଆପଣ 'ନାହିଁ' କରିବେ ନାହିଁ ମୁଁ ଯାହା କହିବି । ଆପଣଙ୍କ ବ୍ୟତୀତ ସେ କାର୍ଯ୍ୟ ସୁସମ୍ପାଦିତ ହୋଇ ପାରିବ ନାହିଁ । ପିଲାଏ ଲଗାଇଛନ୍ତି...ଟାଉନ୍‌ର ବାସିନ୍ଦା...ସେଇ ଏକ କଥା—ମାନେ କହିବାକୁ ଗଲେ ଆବାଳବୃଦ୍ଧବନିତା ।

ଚୌଧୁରୀ ଆନନ୍ଦିତ ହେଲେ । ତେବେ ଆଶଙ୍କା ହେଲା, ଯଦି ଲୋକପ୍ରତିନିଧି ଅସମ୍ଭବକୁ ସମ୍ଭବ କରିବା ପାଇଁ କହୁଥିବେ, ଯାହା ଏଇ ଶ୍ରେଣୀୟ ବ୍ୟକ୍ତିଙ୍କର ଖୁବ୍ ଅଭ୍ୟାସ, ତେବେ ଆନନ୍ଦ ପରିବର୍ତ୍ତେ ପରିଶେଷରେ ଦୁଃଖିତ ହେବାକୁ ପଡ଼ିବ ।

ଶ୍ରୀ ମୃଦୁଳା ଦେବୀ ଉପସ୍ଥିତ ହେଲେ ଦହି ଲୁଣ ଓ ଲେମ୍ବୁରସରେ ଗ୍ଲାସ୍ ଭର୍ତ୍ତିକରି । ଲୋକପ୍ରତିନିଧିଙ୍କ ପରିଚୟ କରାଇ ଦେବାରେ ସେ ଆଶ୍ଚର୍ଯ୍ୟ ହେଲେ, କାରଣ ତାଙ୍କୁ କେବେ ସେ ଦେଖିନାହାନ୍ତି, କେବଳ ପତ୍ରପତ୍ରିକାରୁ ଓ ଲୋକମୁଖରୁ

ତାଙ୍କର ନାଁ ଶୁଣିଛନ୍ତି । ତେଣୁ ଏଭଳି ଅପୂର୍ବ ବ୍ୟକ୍ତିପୁରୁଷଙ୍କୁ ଦେଖିବାମାତ୍ରେ ସେ ଯଥୋଚିତ ସମ୍ମାନ ଦେଇ ଉପବେଶନ କଲେ ।

ପାନୀୟ ଶେଷ ହେବା ପରେ ମୃଦୁଲା ଦେୱା ପାତ୍ରଟିକୁ ଧରି ପ୍ରସ୍ଥାନ କରିବାକୁ ଲୋକପ୍ରତିନିଧି କହିଲେ···"କଅଣ ଖବର ?"

ଚୌଧୁରୀ କହିଲେ···ବିଷୟଟା ଜାଣିନାହିଁ; କି ଉତ୍ତର ଦେବ ?

ଲୋକପ୍ରତିନିଧି ହସିଲେ । କହିଲେ 'ଆଜି ସନ୍ଧ୍ୟା ସାଢ଼େ ଛଅଟାରେ ମଧୁବାବୁଙ୍କ ଜୟନ୍ତୀ ଉତ୍ସବ ପାଳିତ ହେବ କ୍ଲବ୍ ଘରେ । ସବୁ ଆୟୋଜନ ଶେଷ, କେବଳ ଆପଣଙ୍କର ସ୍ୱୀକୃତି । ମୁଁ ଜାଣେ, ଅନ୍ୟ କେହି ଆସିଲେ ଆପଣ ମନାକରିଦେଇଥାନ୍ତେ ଏବଂ କହିଥାନ୍ତେ ପରୀକ୍ଷା ପରିଚାଳନା ଦାୟିତ୍ୱ ଯେନି ଆପଣଙ୍କର ମାନସିକ ଶାନ୍ତି ବିନଷ୍ଟ; ତେଣୁ ଆପଣ ସଭା-ସମିତିରେ ଯୋଗ ଦେଇପାରିବେ ନାହିଁ । ମୁଁ ସେଇଥିପାଇଁ ନିଜେ ଆସିଲି । ଆପଣଙ୍କୁ ଯିବାକୁ ହେବ । ଠିକ୍ ସମୟରେ କାର୍ ଆସିଯିବ···ସବୁ ବ୍ୟବସ୍ଥା ହୋଇଛି ।'

ନରସିଂହ ଚୌଧୁରୀ ଅନୁଗୃହୀତ ହେଲେ । ଦୁର୍ବଳତାର ବିଜୟ ହେଲା । ସେ ହଁ ଭରିଲେ ।

ଲୋକପ୍ରତିନିଧି ଯିବା ପାଇଁ ପ୍ରସ୍ତୁତ ହେଲେ; କିନ୍ତୁ ଯାଉ ନ ଥାନ୍ତି । ଶେଷରେ କହିଲେ—

'ପରୀକ୍ଷା କେମିତି ଚାଲିଛି ?'

'ଅଶାନ୍ତିକର ପରିସ୍ଥିତି ।'—ଚୌଧୁରୀ ଉତ୍ତର ଦେଲେ ।

'ପିଲାଏ ଏକ୍ସପେଲ୍ ହେଉଛନ୍ତି ?'

'ହେଉଛନ୍ତି ।'

'ଯାହାହେଉ, ଅଧ୍ୟକ୍ଷ ଭାବରେ ଆପଣ କାମ ଚଳାଇ ନେଉଛନ୍ତି ।'

'ମୋଟେ ନୁହେଁ; ବରଂ ମୁଁ ମର୍ମାହତ ।'

ଲୋକପ୍ରତିନିଧି ହଠାତ୍ ଚମକି ପଡ଼ିଲେ । କଅଣ ତାଙ୍କର ମନେପଡ଼ିଗଲା । ଆଖି ଦୁଇଟାକୁ ବଡ଼ ବଡ଼ କରି କହିଲେ ଶୁଣନ୍ତୁ, ଆସିବାବେଳେ ପୁତୁରା କହିଲା ସେ କଅଣ କପି କରୁଥିବାରୁ ଧରାପଡ଼ିଛି । ସେ ତ କହୁଛି ସେ କପି କରୁ ନ ଥିଲା । ଟ୍ରେଟ ଚିରକୁଟି କାଗଜ ତା ପାଖରୁ ମିଳିଲା । ସେଇଟା ବା କି ଅପରାଧ···ମୁଁ ତାକୁ ବୁଝାଇଦେଲି । ଆପଣ କଅଣ କାର୍ଯ୍ୟାନୁଷ୍ଠାନ କରିଛନ୍ତି ତା ବିଷୟରେ ?

ଚୌଧୁରୀ ଉତ୍ତର ଦେଲେ- ଅଗତ୍ୟା ଯେଉଁମାନେ ଧରାପଡ଼ିଛନ୍ତି ରିପୋର୍ଟ ହୋଇଥିବ ।

'ଘୋଡ଼େଇ ହୋଇ ପାରିବନି ?'

'କ୍ଷମାକରିବେ, ହଲ୍ ଭିତରେ ସମସ୍ତେ ଜାଣିଥିବେ । ଦୁଇଦିନ ତଳର କଥା, ରିପୋର୍ଟ ତ ବାଙ୍କ ପଡ଼େ ନାହିଁ, ସେହିଦିନ ଚାଲିଯାଏ ।'

ଲୋକପ୍ରତିନିଧିଙ୍କର ମୁଖମଣ୍ଡଳରୁ ଜଣାପଡ଼ିଲା ସେ ଆଶାହୀନ ହୋଇପଡ଼ିଲେ । ପୂଜୁରୀର ଦୌତ୍ୟ ସାଜି ଆସିବାରେ ସୁଫଳ ନାହିଁ ବୋଲି ସେ ବୁଝିପାରିଲେ ।

ସେ ଉଠିଲେ ।

ଚୌଧୁରୀ ବି ଉଠିଲେ...ନମସ୍କାର ନିବେଦନ କରି କହିଲେ, 'କ୍ଷମା କରିବେ, ଆପଣଙ୍କ ଅନୁରୋଧ ରକ୍ଷା କରି ପାରିଲି ନାହିଁ ।'

'କିଅଣ ମିଟିଂକୁ ଯିବେ ନାହିଁ ?'

'ନା, ନା, ସେ କିମିତି କଥା, ସେ ତ ମୋର ଆନନ୍ଦ ! ଆପଣ ଯେତେବେଳେ ଏତେ ଖରାରେ ମତେ ନିମନ୍ତ୍ରଣ କରିବାକୁ ଆସିଲେ, ମୁଁ ଏତିକି ସୌଜନ୍ୟ ଦେଖେଇ ପାରିବି ନାହିଁ ? ମୁଁ କହୁଥିଲି, ପୂଜୁରୀ କଥା...'

ଲୋକପ୍ରତିନିଧି ଯେତେବେଳକୁ ଫାଟକ ପାଖରେ ଉଭା । ପଛକୁ ଆଉ ଚାହିଁନାହାନ୍ତି । ନରସିଂହ ଚୌଧୁରୀ ଦୁଇ ଦୁର୍ବଳତାକୁ...ଅର୍ଥାତ୍ ଲୋକପ୍ରତିନିଧିଙ୍କର ଦୁର୍ବଳତାକୁ ତୁଳନା କରି ଭାବୁଥିଲେ...ସମାନ ତ ହେଲାନାହିଁ ।

× × ×

ଦେବାଳୟର ବାହାରେ ଯୋତା ରଖି ଭକ୍ତମାନେ ଦେବଦର୍ଶନ କରିବାକୁ ଯାଆନ୍ତି । ସାଙ୍ଗରେ ନେଉଥାନ୍ତି ଗୋଲାପଗୁଚ୍ଛ—ପ୍ରତିମା ପାଖରେ ସମର୍ପଣ କରିବାକୁ । ମଧୁବାବୁ ଯୋତା କାରଖାନାରେ ଯୋତା ତିଆରି କରୁଥିଲେ; ତାରକସି ଗୋଲାପ ପୁଷ୍ପ ଭିତରେ ଅତର ରଖିଥିଲେ ।

ନରସିଂହ ଚୌଧୁରୀ...ଅଧ୍ୟକ୍ଷ ଓ ଶିକ୍ଷାବିତ୍...ଯୋତାର ସ୍ୱରୂପ ଦେଖିଲେ, ଗୋଲାପକୁ ଆଘ୍ରାଣ କଲେ ।

ତେଣେ ମଧୁ-ଜୟନ୍ତୀ ପର୍ବ ଅନୁଷ୍ଠିତ ହୋଇଗଲା ।

"ବାପା, ଆସ ଘରଭିତରକୁ...ରାତି ନଅଟା ବାଜିଲାଣି ଯେ ! ମାମା କହୁଛନ୍ତି ଯେ ବାପାଙ୍କୁ ଖୁବ୍ ଶିକ୍ଷାଟାଏ ହେଲା"—ରମାର ମନ୍ତବ୍ୟ ।

ଚୌଧୁରୀ ଉଠିଲେ । ଟପ୍ ଟପ୍ କରି ଗଳାବନ୍ଧା କୋଟ୍‌ର ପ୍ରତ୍ୟେକଟି ବୋତାମ ଖୋଲିଲେ । ନିଃଶ୍ୱାସରେ ସେ କଥା କହିଲେ...ଓଃ, ବଡ଼ ଉଶ୍ୱାସ ଲାଗିଲା...ଅହଂଟା ଏତେ-ବେଳଯାଏ ବଡ଼ କଷ୍ଟ ଦେଉଥିଲା; ଏବେ ସେ ଅହଂ ନଷ୍ଟ ହୋଇଯାଇଛି । ଖୁବ୍ ଶାନ୍ତି ।

× × ×

ସମ୍ବାଦପତ୍ରରେ ଦିନକ ପରେ ସମ୍ବାଦ ପରିବେଷଣ—ମଧୁଜୟନ୍ତୀ ଉପଲକ୍ଷେ ସଭାରେ ଲୋକପ୍ରତିନିଧିଙ୍କର ଅନବଦ୍ୟ ଭାଷଣ...

ସମ୍ବାଦପତ୍ର ହାତରେ ଧରି ନରସିଂହ ଚୌଧୁରୀ କ୍ଷୀଣ ହାସ ହସି ମନକୁ ମନ କହିଲେ—

'ଦେବାଳୟଟି ସୁନ୍ଦର...କିନ୍ତୁ ପ୍ରତିମାଟି ଦୁର୍ବଳ ।'

---

[ ଲେଖକଙ୍କର 'ଦୁର୍ବଳ ଦେବାଳୟ' ସଙ୍କଳନରୁ ଆନୀତ ]

# ଅଦିନ ବଉଦ

—ସତ୍ୟାନନ୍ଦ ମହାପାତ୍ର

ଖଞ୍ଜଣି ବଜାଇ ଗୀତ ଗାଇ ଦୁଆରେ ଦୁଆରେ ସେ ଭିକ ମାଗି ବୁଲେ । ସକାଳୁ ଯାଏ ସେ, ଖରା ଲେଉଟିଲେ ଯାଇଁ ଆମ ଗାଁ ସେପଟରେ ଯେଉଁ ଫାଶୀଦିଆ ବରଗଛଟା ନାହିଁ !—ତାରି ମୂଳରେ ଆସି ବସେ । ଅଳପ ଦୂରକୁ ଯେଉଁ ମହାଦେବ ମନ୍ଦିର, ସେଇଟା ତାର ବରଷା କାକରର ନିଠୁର ଦରଦୀ । ଆଉ ଖରାଦିନେ, କି ଦିନ କି ରାତି, ସବୁବେଳେ ସେଇ ଗଛମୂଳ । ସେଇଠି ବସି ସେ ମନ୍ଦିର ଦକ୍ଷିଣକୁ ଯେଉଁ ଚୂଆ ଖଣ୍ଡିକ ଅଛି, ଅନେକ ସମୟରେ ତାକୁହିଁ ଚାହିଁ ବସେ । ସୂର୍ଯ୍ୟ କିରଣରେ ଯେମିତି ସେ ଚୂଆ ଖଣ୍ଡିରୁ ଧୂଆଁ ଭଳି ହୋଇ ଧୀରେ ଧୀରେ ପାଣିର ପ୍ରାଣ ବାହାରି ଯାଉଥାଏ, ଠିକ୍ ସେମିତି ସକାଳୁ ବେଳ ବୁଡ଼ିଯାଏ ତାର ସିକ୍ତ କଣ୍ଠର ଶକ୍ତ ରାଗିଣୀ ଗୋଟାଏ ଅଜଣା ରାଇଜର ଅସୀମ ସରଣୀରେ ଲୀନ ହୋଇଯାଏ । ସେ ବୁଲେ । ବୁକୁ ଭିତର ତାର ପଞ୍ଚୁ ଭୂଇଁର ମାଟି ପରି ଚଡ଼ ଚଡ଼ି ହୋଇ ଫାଟି ପଡ଼େ ।

ବାରମିଶା ଚାଉଳରୁ ଗଣ୍ଡେ ଏଣୁ ତେଣୁ କି ଫୁଟାଇ ମାଗିଅଣା ପୋକା ବାଇଗଣରେ ଭରତା ଦେଇ ସେଦିନ ଉଦୁଉଦିଆ ଦିପହରର ବେଳେ ଖାଉଛି । ମନଟା ବିନା କାରଣରେ ଯେମିତି ଫୁଟିଲା ସେଜ ପରି ଟକ୍ ମକ କରି ଉଠିଲା । ଗୋଟାଏ ଅନାଗତ ଆନନ୍ଦର ଝଙ୍କାରରେ ସେ ଆକଣ୍ଠ ଭୋଜନ କରି ଧରି ବସିଲା ତାର ଖଞ୍ଜଣି । ତାର ମନେ ହେଲା, ସେମିତି ଗୀତ ସେ ଯେମିତି ଗାଇ ନ ଥିଲା କେବେ ।

ଗୀତରେ କୁଆଡ଼େ ବାଘ ଭାଲୁ ବଶ ହୋଇଯାନ୍ତି । କିନ୍ତୁ ବାଘ ଭାଲୁ ଜାଗା ସେ ନୁହେଁ । ମୃଗ କୁଆଡ଼େ ଅପଲକ ନୟନରେ ଆସି ଶୁଣେ । ଆମ ଗାଁର କେହି କେବେ ମୃଗ ଦେଖିଥିବ ଯଦି ସେ କୋଡ଼ିଏ କୋଶ ଦୂରରେ । ସାପ ବି ଭଲ ଗୀତ ଶୁଣିଲେ ଆସି ଖେଳେ । କିନ୍ତୁ ତା ଗୀତରେ ସାପ ବିଲରୁ ବାହାରି ଆସି ନ ଥିଲା—ବାହାରି ଆସିଥିଲା ଗୋଟେ ମଣିପଟୁଆ—ବିଲରୁ ନୁହେଁ, ଘରୁ ।

ସେଇଦିନ ପାଖରୁ ଲତା ନିତି ଆସି ସୁରଥର ଖଞ୍ଜଣି ଗୀତ ଶୁଣେ । କେତେବେଳେ ବସି, କେତେବେଳେ ଶୋଇ, କେତେବେଳେ ହାମୁଡ଼େଇ, କେତେବେଳେ ଓହଳକୁ ଧରି, କେତେବେଳେ ବା ଗଛ ଡାଳରେ ଜହ୍ନୁଣୀ ରଖି, ଗୋଲପୀ ଗୁଲୁଗୁଲିଆ ଗାଲକୁ ତାର

କଅଁଳ ଟିକି ଟିକି ହାତରେ ଭରିଦେଇ ଅନିମେଷ ନୟନରେ ସୁରଥକୁ ଚାହିଁ ରହେ । ସୁରଥ ଗୀତ ଗାଇ ପୁଣି ଭିକ ମାଗି ବାହାରେ - ଲତା ଫେରେ ଘରକୁ ।

ଏମିତି କେତେ ବର୍ଷ ଚାଲିଗଲା । ଦିନେ ଆଉ ଲତା ଆସିଲା ନାହିଁ । ଦିନେ ନୁହେଁ, ଲାଗିଲାଗି ତିନି ଦିନ ଆସିଲା ନାହିଁ । ସୁରଥ ଆକୁଳ ହୋଇ ଉଠିଲା । ତିନିଦିନକୁ ତିନିବର୍ଷ ଗଲା, ଲତାର ଆଉ ଦେଖା ନାହିଁ । ସେ ଲତା ଘରକୁ ଭିକମାଗି ଯାଏ । କେତେ କେତେ ଗଲେ ଶୁଣିବେ ବୋଲି ସେ ସାତ ଦିନେ ଆଠ ଦିନେ ଥରେ ଯାଏ । କିନ୍ତୁ ଲତାକୁ ଆଉ ପାଏ ନାହିଁ ।

ସୁରଥ ଦେଖିଲା, ତା ଆଗରେ ଯେଉଁ ଜଳାଶୟ ଦେଖା ଯାଉଥିଲା, ସେଟା ଗୋଟେ ମରୀଚିକା । କେବେ କେବେ ସେ ଭାବେ ସେ ଯେମିତି ଗୋଟେ ଦୀର୍ଘ ସ୍ୱପ୍ନ ଦେଖୁ ଦେଖୁ ହଠାତ୍ ତାର ନିଦ ଭାଙ୍ଗି ଯାଇଛି ।

ସେ ବୁଝି ପାରିଲା, ଲତାର ଆଉ ବାହାରକୁ ବାହାରିବାର ବୟସ ନାହିଁ । କିନ୍ତୁ ତା ବୋଲି ସେ ତାକୁ ଟିକିଏ ଦେଖା ବି ଦେବ ନାହିଁ ? ସୂର୍ଯ୍ୟ ଦେଖାଯାଉଛି, ଚନ୍ଦ୍ର ଦେଖା ଯାଉଛି, ଗ୍ରହ ତାରା ସମସ୍ତେ ଦେଖା ଯାଉଛନ୍ତି, କିନ୍ତୁ ଲତା କ'ଣ ସତେ ମତେ ଆଉ ଦେଖା ଦେବ ନାହିଁ ?

ତାର ପିଲାଦିନ କଥା ମନେ ପଡ଼େ । ଯେଉଁ ଦିନ ସେ ବାପ ମା ସମସ୍ତଙ୍କୁ ପ୍ରତିମା ଭସାଇଲା ପରି ଜଣକୁ ଜଣକୁ ନିଆଁରେ ଭସାଇଁ ଦେଇ ଆସିଲା—ଭିକ ମାଗି ପେଟ ପୋଷିବା ଛଡ଼ା ତା ଚାରିପାଖରେ ଆଉ କିଛି ବାଟ ଦିଶିଲା ନାହିଁ ତାକୁ—ସେଦିନ କଥା ଆଖି ଆଗରେ ଝରିବେଳର ଝିଲ୍ଲୀ ସାଙ୍ଗରେ ପୁରୁଣା ଛବି ପରି ଝାପ୍‌ସା ଝାପ୍‌ସା ଦେଖାଯାଏ; ଯେତେବେଳେ ମନେପଡ଼େ ସେତେବେଳେ ସେ ଦାଣ୍ଡରେ ଦଣ୍ଡେ ଠିଆ ହୋଇ ଚାରିଆଡ଼କୁ ଚାହେଁ—ସେଦିନ ସେ ଯେମିତି ଥିଲା ଆଜି ବି ସେମିତି —ଏକା—ଦୁନିଆରେ ସେ ଏକା ।

ଏମିତି କେତେ ବର୍ଷର କେତେମଡ଼ା ବାଟ ଉପରେ ଥରେ ଖୁବ ଜୋରରେ ଶୀତ ପଡ଼ିଲା । ସୁରଥ ଫେରିଲା ଅନେକ ରାତିରେ । ଗଛ ମୂଳରେ ଯାଇ ଥର ହୋଇ ବସି ପଡ଼ିଲା —ସେଇ ଫୁଙ୍ଗା ଦେହରେ । ଗୋଟାଏ ଅଦିନ ବଉଦ କଳା ଭୂତ ପରି ହଠାତ୍ ମାଡ଼ି ଆସିଲା । ବର୍ଷା ହେଲା, ତୋଫାନ ହେଲା, ପଥର ପଡ଼ିଲା, ଗଛପତ୍ର ଭାଙ୍ଗି ପଡ଼ିବ ଯେମିତି ।

ଥରି ଥରି ସୁରଥ ସେଇ ଖଣ୍ଡିଆ ଦେଉଳ ପାଖକୁ ଗଲା । ଯାଇ ଦେଖିଲା ଦେଉଳଟି ପଡ଼ିଛି ଚୁପ । ବାଟ ନ ପାଇ ସେ ଦେଉଳ ବାରନ୍ଦାରେ ଠିଆହେଲା—ପାଣି ଚୁଚୁଁଥାଏ ସେମିତି । ଦେଉଳ ଫାଟ ଭିତରେ ପବନ ପଶି ଗୋଟାଏ ଶୁଷ୍କ କାଣ୍ଠାସ ଭଳିଆ ଘଡ଼ ଶବ୍ଦ ହେଉଥାଏ । ସେ ଦୁଇ ହାତକୁ ଛାତି ଉପରେ ରଖି, ପାପୁଲି ଦୁଇକୁ ଚେପିଚାଲେ

ଗୁଣ୍ଡି ଦେଇ, କାନ୍ଥକୁ ଅଉଜା ହେମିତ ଠିଆ ହେଉ ହେଉ ଅଉ ସେହି ନ ପାରେ, ବସି ପଡ଼ିଲା । ସେତିକବେଳେ ତା ଆଖିରେ କେମିତ କେଜାଣି ଟିକିଏ ନିଦ ଆସିଲା ଅତି ଆଶ୍ଚର୍ଯ୍ୟ ଭାବରେ ।

ବାଉଳା ଖାଇଲା ପରେ ସେ ହଠାତ୍ ଚମକି ପଡ଼ି, ଉଠି ଦେଖିଲା କିଏ ଜଣେ ଆସି ତା ଦେହରେ ଗୋଟେ କମଳ ପକାଇ ଦେଇ ଖୁବ୍ ଜୋରରେ ପଳାଉଛି ।

ଲତା—ଲତା ! ସେ ଚିତ୍କାର କରି ଉଠିଲା । କିନ୍ତୁ ସେଠି ସେତେବେଳକୁ ଆଉ କେହି ନ ଥିଲେ ।

ସେ ଦେହ ତୋଫାନରେ ହୁଇ ପରି ଲତାର ଘରଆଡ଼େ ଦଉଡ଼ି ଗଲା । କିନ୍ତୁ ଏ କଣ ? ତାଙ୍କ ଘରେ କାନ୍ଦ ବୋବାଳି ପଡ଼ିଛି କାହିଁକି ?

ଲତା ମରିଗଲା ? ମିଛ କଥା । ସେ ପରା ତା ଦେହରେ କମଳ ଘୋଡ଼ାଇ ତା ଆଗେ ଆଗେ ଆସିଲା ବାହାରି । ସେ ମଲା କେତେବେଳେ ?

ତାର ଏ କଥାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ସମସ୍ତଙ୍କୁ ଦେଖାଇ ଦେଲା —ହେଇଟି, ଦେଖ ମୋ କମଳ—ମୋ ଲତା ମତେ ଦେଇଛି ! ମିଛରେ—ସମସ୍ତେ ଦେଖିଲେ, କମଳ ଫମଳ କିଛି ନାହିଁ, ସେ ଖାଲି ମିଛଟାରେ କମଳ ଘୋଡ଼ି ହୋଇଛି ବୋଲି କହୁଛି । ତା ପର ଦିନଠୁ ସୁରଥର ଗୀତ ଅଉ ସେ ଗାଁରେ କେହି ଶୁଣିବାକୁ ପାଇଲେ ନାହିଁ—ଆଉ ତା ଝଞ୍ଜଣି ବାଜିଲା ନାହିଁ ।

କିନ୍ତୁ ଆଉ ଗୋଟେ ଗାଁଅରେ ଠିକ୍ ତା ପରଦିନ ଗୋଟାଏ ଅଦ୍ଭୁତ ଲୋକର ଆବିର୍ଭାବ ହେଲା । ଲୋକଟା କଣିକଟିଆ କଣ୍ଠରେ ଝଞ୍ଜଣି ବଜାଇ ଗୀତ ଗାଇ ଖାଲି ଦେହରେ ବୁଲେ—ଦୟାକରି କେହି ତାକୁ ଘୋଡ଼ାଇ ଦେବାପାଇଁ ଚିରା ମିରା କି ଗୋଟେ ଅଧେ ଲୁଗା ଯାଚିଲେ କହେ—ମୋ ଲତା ଯେଉଁ କମଳ ଦେଇଛି, ତାଠୁଁ କଅଣ ତୋ ଲୁଗା ବେଶୀ ଗରମ ?

---

[ 'ଏଗାରଟା'ରୁ ଆନୀତ ]

# ପଶୁ

—ରାଜକିଶୋର ପଟ୍ଟନାୟକ

କୁକୁରଟି ବୁଝୁ ନ ବୁଝୁ ତାକୁ ପଶୁ ବୋଲି କୁହାଯାଏ ଘରେ । ସେ ଗେହ୍ଲା ହୁଏ, ଆଦର ପାଏ, ମାଡ଼ ଖାଏ, ଗାଳି ଶୁଣେ । ସବୁଥିରେ ଗୋଟିଏ ଧାରା ଯୋଡ଼ି-ଦିଆଯାଏ, ସେ ପଶୁ । ଅନେକ ଦିନ ହେଲା ଘରେ ରହିଲାଣି । ଘରର ନୂଆ ଚାକର-ମାନଙ୍କଠାରୁ ପୁରୁଣା । ଘରକୁ ଆସିଥିବା କଅଁଳ ପିଲାଟିଠାରୁ ବଡ଼ ଓ ପୁରୁଣା ପିଲାଟି ଜନ୍ମ ହେଲାବେଳେ ମା' ଯେତେବେଳେ କଷ୍ଟ ପାଉଥିଲା, କୁକୁରଟି ସେହି ଦୁଃଖ ସହି ନ ପାରି ନିଜେ ମଧ୍ୟ କାନ୍ଦି କାନ୍ଦି ଘରେ ଜଣକ ପାଖରୁ ଆଉ ଜଣକ ପାଖକୁ ଧାଉଁଥିଲା ଓ ମୁହଁକୁ ଚାହିଁ, ଗୋଡ଼କୁ କାମୁଡ଼ି କହୁଥିଲା ଯେ, ଘରେ ଜଣେ ଦୁଃଖ ପାଉଛି ।

ତାକୁ ପଶୁ କୁହାଯାଏ । ମଣିଷର ଦୁଃଖରେ ମଣିଷ କାନ୍ଦେନାହିଁ । ସେ ତାହାର ଜ୍ଞାନରେ, ବୁଦ୍ଧିରେ, ହୃଦ ଭିତରର କଅଁଳ ରସକୁ ଶୁଖାଇଦେଇ କହେ ସେ ମଣିଷ । ପୋଷା କୁକୁର ଟମି ଗୋଟିଏ ମଣିଷର ଦୁଃଖରେ ଯେତେବେଳେ କାନ୍ଦି ଅସ୍ଥିର ହୋଇ ଏଠି ସେଠି ହେଉଥିଲା ତାକୁ କୁହାହେଉଥିଲା ପଶୁ ।

ବାବୁଘରର ପିଲାମାନେ ବି ବାବୁ । ସେମାନେ ପିଣ୍ଡାରେ ଠିଆ ହୋଇ ଦେଖୁଥାନ୍ତି ଗୋରୁ ଗୁହାଳରୁ ଫିଟିଲେ ଓ ଗୁହାଳକୁ ପଶିଲେ । ଗୋରୁ ଦୁଇଟିଙ୍କର ଲୋଭ ଆଖି ପାଖରେ ଥିବା କଦଳୀ ବୁଦାଟି ଉପରେ । ଗଛକୁ ସବୁବେଳେ ମୁହଁ ପାଏ ନାହିଁ... କିନ୍ତୁ ପାଖରେ ଥିବା ପୁଆଗୁଡ଼ିକୁ ମାଡ଼ି ନେଇ ନିଜ ପେଟ ଭିତରକୁ ଠେଲିଦେବାପାଇଁ ସବୁବେଳେ ଚେଷ୍ଟା ।

ସେତକ ଟମି ଜଗିଥାଏ । ଗାଈର ଟାଣୁଆ ଖୁରା, ମୁନିଆ ଶିଙ୍ଗ ଓ ଫଁ ଫଁକୁ ଡରେ ନାହିଁ—କାମୁଡ଼ିବାକୁ ମାଡ଼ିଯାଏ । ଭୁକି ସମସ୍ତଙ୍କୁ ଡାକି ପକାଏ...ଆସ, ଧାଇଁଆସ...ଏହି ଗାଈମାନେ କଦଳୀ ବୁଦାଟିକୁ ନେଇ ଭୋଜି କରିବାକୁ ବ୍ୟାକୁଳ ।

ବାବୁମାନେ ଚାକରକୁ ଡାକି ପକାନ୍ତି । ଟମି ଲଢ଼ୁଥାଏ ଏକା ଏକା । କେତେବେଳେ ପଛକୁ ହଟି ଆସିଲାବେଳେ ଗାଈ ଖଣ୍ଡେ ପତ୍ର କି ଗୋଟାଏ କଦଳୀ ପୁଆକୁ ଦାନ୍ତରେ ଭିଡ଼ିନିଏ । ଚାକର ଗାଳି ଖାଏ ଓ ଟମି ଗୋଇଠା ଖାଏ । କେହି ହେଲେ ବାବୁଙ୍କର ଗୁହାଳ ପାଖରେ ଯତ୍ନରେ ସପାଦିଥିବା କଦଳୀ ବୁଦାଟିକୁ ରକ୍ଷା କରିପାରିଲେ ନାହିଁ । ଘରେ ରହି ଆଉ କଣ କରିବେ ?

ବୁଦ୍ଧିମାନ୍ ଲୋକର ଇଚ୍ଛା ଯେ, ସମସ୍ତେ ପଶୁପରି ତାହାର ସମ୍ପତ୍ତିକୁ ଜଗି ବସିବେ । ସେଥିପାଇଁ ମଦ୍‌ବୋ ଦରକାର ପଡ଼ିଲେ ଖୁସି ହୋଇ ଝାମ୍ପଦେବେ । ତାହାହେଲେ ସେ ଖୁସି ହୋଇ ଗୋଟିଏ ସାର୍ଟିଫିକେଟ୍ ଦେବ ପଶୁଟାଏ ବୋଲି ଏତିକି ବୁଦ୍ଧି ଖଟେଇଲା ।

ବଣ ଜଙ୍ଗଲର ଦିନ । କୁକୁର ଜାତିରୁ ଏହି ଟମିଟି ଗୋଟିଏ ସହରରେ ରହି ସହରିଆ ହୋଇଯାଇଛି । ତାକୁ ମାଟିରେ ଶୋଇବାକୁ ଭଲଲାଗେ ନାହିଁ । ଏକୁଟିଆ ବଣବୁଦାରେ ବୁଲିବାକୁ ସୁଝିଲାଗେ ନାହିଁ । ସେ ଖୋଜେ ପକ୍କା ଘର ଓ ପିଣ୍ଡା । ସେଠି ପୁଣି ତାକୁ ଖଣ୍ଡେ ଶେଯ ଲୋଡ଼ା ହୁଏ । ଅଖା କି ଛିଣ୍ଡା କମ୍ବଳ ନ ପାଇଲେ ଉପରେ ଶୁଖୁଥିବା ଚଉଲିଆ, ଲୁଗା ଆଦି ଖଣ୍ଡେ ଯୋଗାଡ଼ କରି ସେ ବିଛଣା କରେ । ସେ ଖୋଜେ ଦି'ଜଣ ଜଣେ ମଣିଷଙ୍କ ସାଥିରେ ଯାଇ ନଈକୂଳେ, ପାର୍କରେ, ନଇଲେ କୋଠା ଉପରେ ବୁଲିବାକୁ ।

ବାବୁଘର ଝରକା ଭିତରୁ ଜଣେ ବାବୁ ପରି ରାସ୍ତାକୁ ଚାହିଁଥାଏ । ସେଠି ଲୋକେ ଯା'ଆସ କରୁଛନ୍ତି । ସନ୍ଧ୍ୟାବେଳାଳ ଗଲେ ଟମିର ମନେପଡ଼ିଯାଏ ବାବୁଙ୍କର ଫେରିବା କଣା ହୁଏ ବୋଲି । ଦି'ଥର ଭୁକିଦେଇ ଓହ୍ଲେଇ ଆସେ ସିଡ଼ି ଉପରୁ ପୁଣି ଧାଇଁଯାଏ, ପୁଣି ଓହ୍ଲାଏ । ଏହି ଠାରରୁ ସମସ୍ତେ ଜାଣନ୍ତି କ'ଣ ବାବୁ ଯାଉଛନ୍ତି ଯେ ଘରେ କଣିବାକୁ ଟମି ବରାଦ କରୁଛି ।

ସହରିଆ ବାବୁଙ୍କ ପରି ଟମିକୁ ବି ଖାଲି ଭାତ ଦେଲେ ଅରୁଚି ହୁଏ । ସେ ଖୋଜେ ଡାଲି, ତିଅଣ । ନ ପାଇଲେ ପଡ଼ିଥିବା ଗ୍ଲେସପାତକ ଖାଇ ସେ ତାହାର ଆଶା ମେଣ୍ଟାଏ ।

ଝିଏ ମୁଣ୍ଡ କୁଣ୍ଡାଇଲାବେଳେ ଟମି ଆସି ପାଖରେ ବସି ଦେଖୁଥାଏ । ବୋଧହୁଏ ତାର ଇଚ୍ଛା ହୁଏ ମୁଣ୍ଡ କୁଣ୍ଡାଇବାପାଇଁ । ମଝିରେ ମଝିରେ ଗୋଟିଏ କଡ଼ା ବ୍ରସରେ ତାହାର ଲୋମକୁ ଘସି କଅଁଳ ଓ ସଫା କରାହୁଏ । ଟମିକୁ ଭଣ୍ଡାସିଆ ଲାଗେ । ସେ ଅଖି ବନ୍ଦ କରି ପଡ଼ିଯାଏ । ତାହାର ଇଚ୍ଛାଥିଏ ଦିନ ଦିନ ଧରି ତାହାର ଦେହ ଖାଲି ବ୍ରସରେ ମଜାହେଉଥାନ୍ତା ।

ଲୋକେ ମୁଣ୍ଡ କୁଣ୍ଡାଇଲାବେଳେ ଟମି ପ୍ରତିଦିନ ବସିରହେ । ସୁବିଧା ପାଇଲେ ଦପଣ ପାନିଆକୁ ଚାହେଁ—କିନ୍ତୁ ସୁବିଧା ନ ହେଲେ କୁଣ୍ଡାଉଥିବା ମଣିଷଙ୍କ ଗୋଡ଼କୁ ଚାହୁଁଥାଏ । ମାଡ଼ ଖାଏ ଯେ, କାମ ବେଳେ ଟମି ଏମିତି ହଇରାଣ କରି କାମରେ ଷତି କରୁଚି । ତରକି ଯାଇ ପାନିଆଟା ଲୋକଙ୍କ ମୁଣ୍ଡରେ ଜୋରରେ ଖେଞ୍ଚି ହୋଇଯାଏ । ଟମି ଖାଏ ଗୋଇଠା ।

ବଣୁଆ ଲୋକେ ସହରକୁ ଆସି ସହରିଆ ପାଲଟିଲାପରି ଏହି କୁକୁରଟି ସହରିଆ ହୋଇ ଯାଇଛି । ଟିଣଦୁଧ, ଚକୋଲେଟ, ଜେଲି ଆଦି ତାକୁ ଭଲ ଲାଗେ ଖାଇବାକୁ ।

ଭଙ୍ଗା ଟିଣଦୁଧର ଟିଣରୁ ଲାଗି ରହିଥିବା ଦୁଧକୁ ଘୃଟ୍ଟୁ ଘୃଟ୍ଟୁ ସେ ତାହାର ମୁହଁକୁ ଖଣ୍ଡିଆ କରି ରକ୍ତଦାନ ମଧ୍ୟ କରିଛି । ତାହାର ପୋଷିଲା ବାବୁମାନେ ଦାଢ଼ି ତାଛିଲାବେଳେ ଥରକୁଥର ଖୁରକୁ ନିଜର ମୁହଁର ରକ୍ତ ଦେଇ ମଧ୍ୟ କ୍ଳାନ୍ତ ହୁଅନ୍ତି ନାହିଁ । ଅଶେଷ ମମତାରେ ଖୁରଟିକୁ ପୋଛି ରଖିଦିଅନ୍ତି ।

ସକାଳୁ ଉଠି ଟମି ଗ୍ଳଥାଏ ଗୋଟିଏ ଝରକା ପାଖକୁ—ସିଡ଼ିଘର ଉପରେ ନିଚ୍ଛଟିଆ ଜାଗାରେ ଥିବା ଝରକାଟି । ସେଠି ପ୍ରତିଦିନ ଆଠ ନଅ ଘଣ୍ଟା ସେ ବସେ । ପଦାକୁ ଗ୍ହିଁଥାଏ—ନଇଲେ ଶୋଇଥାଏ । ଦେଖିବାରେ ତାହାର କ୍ଳାନ୍ତ ନାହିଁ । ଭଲ କରି ରାସ୍ତାର ଲୋକଙ୍କୁ ଦେଖିବାକୁ ଝରକାର ରେଲିଂ ମଝିରେ ମୁହଁଟିକୁ ଭରତିକରି ସେ ଗ୍ହିଁଥାଏ ।

ଘରର ଗ୍ରିଆଡ଼େ ବୁଲା କୁକୁର ଦଳଟିଏ ବୁଦା ଭିତରେ ରହିଥାନ୍ତି ଘର କରି । ଖରା ତାତ ସହନ୍ତି । ବର୍ଷାରେ ଓଦା ହୁଅନ୍ତି । ଶୀତ ଦିନର କାକର ତାଙ୍କର ପିଠି ଉପରେ ଟୋପା ଟୋପା ବୋହିଆସି ପେଟ ପାଖର ଭୂଇଁକୁ ତିନ୍ତେଇ ଦିଏ, ଠିକ୍ ଗୋଟିଏ କୁକୁରର ଛବି ତିଆରି କରି ।

ଟମିକୁ ଦୁଆରଟା ବି ଅଣ୍ଡା ଲାଗେ । ସେ ଖୋଜେ ଘର କଣରେ ରହିବାକୁ । ବର୍ଷା ପାଣି ଦେଖିଲେ ତାହାର ନାକରୁ ପାଣି ଗଡ଼େ । ସେ ଝରକା ସେପାଟକୁ ବସି କ'ଣ ଭାବୁଥାଏ କେଜାଣି ?

କାମ ଭରି କମ୍ । କାରଣ ଟମି ଗୋଟିଏ ଗ୍ରେଟିଆ ପୁଞ୍ଜିପତିଙ୍କର ଟହଲିଆ । ତାଙ୍କ ଘରେ ଯେଉଁ ପୁରୁଣା ଲୁଗା, ପୁରୁଣା ଟେବୁଲ, ଚୌକି, ପୁରୁଣା ବାସନ, ଆଉ ପୁରୁଣା ଘଡ଼ି, ଯୋତା ଆଦି ଅଛି ସେତିକ ରାତିରେ ଜଗିବା ଟମିର କାମ । ଏସବୁ ନେବାକୁ କିଏ କାହିଁକି ଆସିବ ? ତେଣୁ ଟମିର କାମ ନାହିଁ । ସେ ବସି ତାହାର ଗୋଡ଼କୁ କାମୁଡ଼ୁଥାଏ, ନଇଲେ ରାସ୍ତାକୁ ଗ୍ହିଁଥାଏ ଅବା ଶୋଇଥାଏ ।

ବାରବୁଲାବୁଡ଼ିକ ନିଜର ପେଟପାଟଣା କରିବାକୁ ଏ ପାଖ ସେ ପାଖ ହେଉଥାନ୍ତି । ଟମି ପରି ତାକୁ କେହି ଯାଚି, ନିମନ୍ତ୍ରଣ କରି ଖୁଆଇବେ ନାହିଁ । ସେମାନଙ୍କୁ ଦୂର ରାସ୍ତାରେ ଦେଖିଲେ ଟମି ଗର୍ଜି ଉଠେ ଘରଭିତରେ ।

ସହରର ବାବୁ ଖାଲି ତାରି ପରି ଜଣକୁ ଦେଖେ ଓ ଶ୍ରଦ୍ଧା କରେ । ଏହି ବାରବୁଲା ଭିକାରିବୁଡ଼ା ତାହାର ଶାନ୍ତି ନଷ୍ଟ କରିଦିଅନ୍ତି । ତାହାର ପୁଞ୍ଜି ଉପରେ ଆକ୍ରମଣ କରିବାକୁ ତିଆରି ।

ପୁରୁଣା କଥା ମନେପକାଇ ଲାଭ ନାହିଁ । କେବେ ଆମ ବାପ ଅଜା ବଣରେ ମଫସଲରେ ପଡ଼ିଥିଲେ । ନଈର କୁମ୍ଭୀର, ବୁଦାର ବାଘ ସେମାନଙ୍କୁ ଖଣ୍ଡିଆ କରୁଥିଲା କି ଖାଇଯାଉଥିଲା । ନଈ ତାହାର ଗୋଳିଆ ପାଣିରେ ତାଙ୍କର ଗ୍ଳିଆ ପଲଗୁଡ଼ିକୁ ସପଣବାରରେ ପିମ୍ପୁଡ଼ି ମନ୍ଦାପରି ଏକାଠି ମେଞ୍ଚା ମେଞ୍ଚା କରି ତାହାର ସୁଅରେ ଠେଲି

ନେଉଥିଲା ଏଠୁ ସେଠିକି । କେବେ ସହରିଆ ସଭ୍ୟ ଲୋକେ ବନ୍ଧୁକ ଧରି, ପୁଲିସ ଧରି ଧାଇଁଆସୁଥିଲେ ତାଙ୍କୁ ଲୁଟିନେବାକୁ—ତାଙ୍କର କ୍ଷୀଣ-ସ୍ୱାସ୍ଥ୍ୟ ମୂଲ୍ୟବତୀମାନଙ୍କୁ ଅବା ଅଳ୍ପ-ହେୟ ଧନଦୌଲତକୁ । ସେ କଥା ମନେପକାଇ ଲାଭ କ'ଣ ?

ଟମିର ବି ସେଇ ମତ । କେବେ ତାହାର ବାପ ଗୋସାପେ ବଣ ଭିତରେ ବାଘ ଭାଲୁଆଙ୍କ ମେଳରେ ଅସହାୟ ହୋଇ ରହୁଥିଲେ; ପାଇଲେ ଖାଉଥିଲେ । ଘଣ୍ଟା ତ ନ ଥିଲା; ବେଳ ଜାଣି କିଏ ଖୁଆଉଥିଲା କାହାକୁ ? ଭବିଷ୍ୟତ ନ ଥିଲା ତ—ସଞ୍ଚୟର କି ପ୍ରୟୋଜନ ? ଆଉ କ'ଣ ଅବା ସଞ୍ଚୟ କରିବେ ?

ଟମି ଆସି କୋଠା ଘରେ ରହିଲାଣି । ସେ ଜାଣେ ବୁଲିବା ଜାଗା କୋଠା ଉପର—ସେଠି ଭଲ ପବନ ବହେ । ଟାଣ ପବନରେ ଟାଣ ହୋଇ ଠିଆ ହୋଇ ସେ ପବନକୁ ଶୁଂଘେ—ପିଇଯିବା ପାଇଁ । ମାଟି ଉପରେ ପାଇଖାନା ନ କରି ସେହି କୋଠାଟିର ବଡ଼ ଚଟାଣରେ ଗୋଟିଏ କଣକୁ ସେ ତାହାର ଲଣ୍ଡି ଗଦା କରୁଛି । ବେଶି ଅସନା ହେଲେ କିଏ ବାବୁ ସେଗୁଡ଼ିକ ସଫାକରୁଛନ୍ତି । କି ଦରକାର ଆଉ ସେ ଦୁଷ୍ଟ ଅତୀତ କାହାଣୀ ଭାବିବା ?

ବାବୁମାନେ ଭାବୁନାହାନ୍ତି ଯେ, କେବେ ବିଦେଶୀ ଶାସନରେ ଚାକର ଥିଲେ । ଏବେ ଦେଶ ସ୍ୱାଧୀନ ହେବା ପରେ ଆଖିବୁଜା ବଢ଼ି ଚାଲିଛନ୍ତି । ଶହେ ଟଙ୍କା ପାଇବା ଲୋକ ଦଶ ପ୍ରାଣୀଙ୍କୁ ଜୀଆଁଇ, ଋଣ କରି ମୋଟା କରିସାରି ବି ହାତୀଶାଳ ପରି ଘରଟି କରିପାରୁଛି । ଗୁଡ଼—ପୁରୁଣା କଥା ।

ତଥାପି ଟମି ପାଏ ଗୋଟିଏ ସାଟିଫିକେଟ—'ସେ ପଶୁ' । ସେଥିରେ କ'ଣ ଯାଏ ଆସେ ? ଭଲ ଖାଇବାକୁ, ପିନ୍ଧିବାକୁ, ସଜିବାକୁ ମିଳୁଚି । ହେଲା ଏବେ ଏଠିକାର କି ଦିଲ୍ଲୀ, ଆଲାହାବାଦର ହାକିମମାନେ କହୁଛନ୍ତି 'ଏମାନେ ପଶୁ' । ସେମାନଙ୍କର ତ କିଛି କ୍ଷତି ହେଉନାହିଁ ! ଟମିର କାହିଁ ଦୁଃଖ ହେବ ? ସେ ବସିକରି ହାଇମାରେ ଓ ଶୋଇପଡ଼େ ଆରାମରେ । ଏହି ଆନନ୍ଦ କ'ଣ ବଣ ଜଙ୍ଗଲର ସ୍ୱାଧୀନତାରେ ମିଳେ ?

କୋଠାଘର ଭିତରେ ରହି ଟମି ସେହି ବାରବୁଲାମାନଙ୍କୁ କେତେ ଥର ଥଟ୍ଟା କରେଣି । କେତେ ଅନୁକମ୍ପା ଦେଖାଇଛି । ଟମିର ଯୌବନ ଆସିଲାଣି—କୁକୁରର ସୌନ୍ଦର୍ଯ୍ୟ ନେଇ ସେ ଠିଆହୁଏ ଝରକା ପାଖରେ । କଅଁଳ ଘନ ଲୋମ—ଯୌବନରଙ୍ଗବୋଳା ମୁହଁ ।

କୁକୁରଗୁଡ଼ିକ ଗଲା ଆଇଲାବେଳେ ଠିଆ ହୋଇଯାନ୍ତି । ତାଙ୍କର ନାକପୁଡ଼ା ଫୁଲି ଉଠେ । ମଣିଷଙ୍କ ପରି ପଶୁ ଜଗତରେ ମଧ୍ୟ ଦେହ ଦେହକୁ ଖୋଜିଲାବେଳେ ଧନଦୌଲତ ଅଢ ଭୁଚ୍ଛ ପରି ଜଣାଯାଏ ।

ହେଇ, ଜଗିଥାଅ ଟମିକୁ ଏହି ଦୁଇ ମାସ—ବୁଲାକୁକୁରଙ୍କ ସାଙ୍ଗରେ ମିଶି ଖରାପ ହୋଇଯିବ । ଏହି ବାରବୁଲାଙ୍କର ଉତ୍ପାତ ଶୁଣିଥାଉ୍ ତ । ସହର ବଜାରରେ, ସିନେମା ଥିଏଟରରେ, ବ୍ୟବସାୟ ଶୃଙ୍କରରେ, ସବୁ ପ୍ରକାରର ସ୍ତରରେ ଏହି ବାରବୁଲାଙ୍କର ଉତ୍ପାତ ।

ବାହାରେ ବାରବୁଲାଙ୍କର କଳରବ ଓ କାକୁତି । 'ଆ—ପଦାକୁ । ଏଠି ପବନ ଫୁଲ୍‌ଫୁଲିଆ ହୋଇ ବହୁଚି । କଅଁଳ ଖରା ଖୁବ୍ ଭଲ ଲାଗୁଚି । ଭୁଇଁଆଁଶ୍ର ଲଟାରେ ପ୍ରଜାପତି ଉଡ଼ୁଚନ୍ତି । ସ୍ୱଚ୍ଛନ୍ଦ ଗତି ଅନ୍ଧାରକୁ ଠେଲି ଠେଲି ଚାଲୁଚି ବଣ ବୁଦାବୁ ମଧ୍ୟ—ଏଠି ରହିବାରେ ଆନନ୍ଦ ।' ବାରବୁଲାଙ୍କର ଫସାର ଲୋପ ପାଏ ନାହିଁ । ଯେତେ ଧନସମ୍ପତ୍ତି ଫସାରରେ ବଢ଼ିଲେ ବି ବାରବୁଲା ସରନ୍ତି ନାହିଁ ।

ଟମିର ଅନ୍ତ ନିଭୃତରେ ପୁଣି ପ୍ରକୃତି ଜାଗିଉଠେ । ସେ ଉତ୍ତର ଦିଏ । ବିକଳ ହୋଇପଡ଼େ କୋଠାଘରର ଶୃଙ୍ଖଳାକୁ ଭୁଲି ପୁଣି ଡେଇଁ ପଡ଼ିବାକୁ ବୁଦା ଭିତରକୁ ।

ଏଠି ସଭ୍ୟତାର ପୋଷାକ ଖାଲି ବୋହିଗଲା ନଈକୁ ବନ୍ଧାଇ ସେଥିରୁ ସ୍ୱାସ୍ଥ୍ୟବର୍ଦ୍ଧର ବିଜୁଳି ପରି ଶକ୍ତି କାଢ଼ିବାରେ ଲାଗିଚି । ପ୍ରକୃତି କୋଳରେ ଏହି ଜୀବଟି ଯେମିତି ମଣିଷଙ୍କର ଆଶ୍ରୟକୁ ଏତେ ଚହ୍ନି ଯାଇଚି ଯେ ଛାଡ଼ିପାରୁନାହିଁ । ଲୋକ ଯେମିତି ଗୃହକର୍ମ, ବ୍ୟାଙ୍କ-ପୁଞ୍ଜିର ସୁଖ, କି ସ୍ତ୍ରୀ ଧନର ନିର୍ଭରରେ ରହି ଚଳିବା ଶିଖିଗଲେ ସେସବୁ ଛାଡ଼ିପାରେ ନାହିଁ । ଜ୍ଞାନୀ ବୋଲାଉଥିବା ଡାକ୍ତର, ଇଞ୍ଜିନିୟର, କିରାଣି, ଓକିଲ ଥରେ ଗୋଟିକୁ ନିର୍ଭର କରିବା ଶିଖିଗଲେ ଯେତେ ମାଡ଼, ଗାଳି, ଗୋଇଠା ଖାଇଲେ ବି ଆଉ କି ଛାଡ଼ିପାରନ୍ତି ?

ତଥାପି ଟମି ତାହାର ବନ୍ଧନକୁ, ଶାସନକୁ ଗୋଇଠା ମାରି ସେହି କୁକୁର ଦଳରେ ମିଶିଯାଏ । ଏହି ଅବାଧତା ପାଇଁ ମାଡ଼ ଖାଏ । କିନ୍ତୁ ବନ୍ଧନକୁ ଠେଲିଦେଇ ଯିବାକୁ ଅସମର୍ଥ ହୋଇ ସେହି କୋଠା ଘରର ଶିକୁଳିରେ ବାନ୍ଧିହୋଇ ରହେ । ବୋଧହୁଏ ଏହି ବନ୍ଧନରେ ଆନନ୍ଦ ଅଛି ।

ଟମିର ଛୁଆ ହବ—କେଡ଼େ ଅପନା, ଅଜାତିଆଗୁଡ଼ାଏ ହେବେ । ଟମିଟା ଅବାଗିଆ ଦଶିବ । —ପଶୁଜାତି କ'ଣ ବୁଝେ ?

ମଣିଷ ଛୁଆ କରିବା ଟମି ଦେଖିଥିଲା । କେତେ ସେବାଯତ୍ନ ! ସେମିତି ଧାଁଦୌଡ଼ କରୁଥାଏ । ଯାହା ମିଳେ ଗିଳିଦିଏ । ପିଲାଗୁଡ଼ାଙ୍କର ଅନେକ ଦିନ ଆଖି ଫିଟିବ ନାହିଁ । ତାକୁ ଖାଇ ଜୀଇଁବେ । ତାହାର ଇଚ୍ଛା ଧୁଏ ଦିନଯାକ ଖାଇବା ପାଇଁ ।

ଏହ୍ୱୈତି ଛୁଆ—ନିଜର ଅଣଓପାଣିଆ କୋଳରେ ସେମାନଙ୍କୁ ସେ ସ୍ଥାନ ଦେଇଛି । ଉଦ ଦାଦାଙ୍କ ଘରଟିର ଉପର ବରଗାରେ ଉଇ ଧରିଗଲେଣି । ଖଣ୍ଡେ ଖଣ୍ଡେ ଚୂନ ଖସେ । ତାହାର କିଛି ଭୟ ନାହିଁ ଏହି ଉପେଇଁ ହୋଇ ପଡ଼ୁଥିବା ଘରଟିକୁ । ଡର ତାହାର ମଣିଷଙ୍କୁ । ତାହାର ଦୁର୍ବଳ ପଞ୍ଜରର ଘୋଡ଼ଣୀରେ ସେ ନିଜ' କୋଳ ତଳେ ଏହ୍ୱୈତି ଅନାଥ ଶିଶୁଙ୍କୁ ଭଙ୍ଗାଘରର ଆକ୍ରମଣରୁ ରକ୍ଷା କରି ପାରିବ । କିନ୍ତୁ ମଣିଷ ?

ଖାଇଲା ପରେ ସବୁଦିନ ପରି ତାକୁ ଡକାଯାଏ — ଟମି, ଟମି ! ସେକ ଚମକିଯାଏ ଘୋଟ ଭିତରେ । ଛୁଆଗୁଡ଼ିକ ଟିକିଏ ହଲଚଲ ହୋଇଯାଆନ୍ତି । ତାଙ୍କୁ ଥରେ ଚାଟିଦେଇ ସେ ପୁଣି ଶୋଇରହେ । ପିଲାମାନେ ନିଜର ସେକଠାରୁ ବଡ଼ ।

ତାହାର ସେହି କଳା ମଚ ମଚ ଛୁଆଙ୍କୁ ଦେଖିବାକୁ କେହି ଝରକା ପାଖେ ଆସିଲେ ଟମିର ଦୁର୍ବଳ ଭୟାର୍ତ୍ତ ଆଖି ହିଂସାରେ ଜଳିଉଠେ । ଧଳା ଦାନ୍ତଗୁଡ଼ିକ ତାର ଦିଶିଯାଏ କଙ୍କାଳର ଭୟ ଦେଖାଇ । ଉପର ଓଠ ନାକପାଖେ ଉଠିଯାଏ — 'ନେଇଯିବେ — ନେଇ ଯିବେ ସମସ୍ତେ' ।

ଦିନଯାକ ଲୋକେ ଖାଉଥାଆନ୍ତି—ଥାଳି ଧୂଆ ଚାଲିଥାଏ । ସେ ପ୍ରଥମଥର ଦି'ଟା ଚାରିଟା ଖାଉଥିଲା । ସେ ଛୁଆଙ୍କ ପ୍ରତି ସେହି ଆଶା ମେଣ୍ଟାଏ । ଏଣେ ଛୁଆଯାକ ଆନନ୍ଦରେ ଆଉରି ଜୋର୍‌ରେ ଦୁଧ ଖାଇବାରେ ଲାଗିଯାଆନ୍ତି । ଦୁଧ ସରିଗଲେ ତା'ର ପଞ୍ଜରାର ଚେରଗୁଡ଼ାକ ଖଣ୍ଡି ଆକରିଦିଅନ୍ତି ।

ତଥାପି ତାଙ୍କୁ ସେ ଆଉ ଟିକିଏ ଜାକିଧରେ କୋଳରେ । ସେତିକି ତାହାର ସମ୍ବଳ—କାରଣ ସେ ପଶୁ ।

ଅଭ୍ୟାସ କରି ଟମି ତାହାର କୁକୁରର କୃତଜ୍ଞତା ଦିନକୁ ଅନ୍ତତଃ ଥରେ ଦେଖାଉ-ଥିଲା ଘରର ମାଲିକଙ୍କ ପାଖରେ । ସେ କାମରୁ ଫେରିଲେ ଟମି ତାଙ୍କୁ ସମ୍ଭୋଳିବାକୁ ଧାଇଁଆସେ । ଘରେ ପିଲାମାନେ କି ସ୍ତ୍ରୀ କେବେ କେମିତି ଥିଲେ ଥାଆନ୍ତି । କିନ୍ତୁ ଏହି କାମଟିରେ ଟମି କେବେ ହେଳା କରେ ନାହିଁ । ବାବୁ ଆସିଲାବେଳେ ସେ ଘରେ ନଥିଲେ ଦୂରରୁ କେବେ କେମିତି ଧାଇଁଥାଏ ଜୋର୍‌ରେ ବାବୁଙ୍କ ଆଗରୁ ଆସି ପହଞ୍ଚିବାପାଇଁ ।

ଛୁଆ ହେବାର ଦୁଇ ତିନି ଦିନ ହୋଇଗଲାଣି । ଟମି ଆସି ଦେଖା କରି ନାହିଁ । ରାତିରେ ସେ ଖାଇ ହାତ ଧୋଇଲାବେଳେ ଅନ୍ଧାରରେ ଟମି ତାର ଛୁଆ ଚାରୋଟିଙ୍କୁ ଲୁଚାଇ ଦେଇ ଧାଇଁଆସିଲା । କୁଉଁ କୁଉଁ ହୋଇ ଦୁଆରେ ଦି'ହାତ ଖାଲି ଗଡ଼ିଗଲା । ସେହି ତାହାର କୁଶଳ, କୃତଜ୍ଞତା, ଦୁଇଦିନ ନ ଆସିବାର କ୍ଷମାପ୍ରାର୍ଥନା ଓ ଦେଖିବାର ଆନନ୍ଦ ।

ନଖାଇ ଫେରି ଧାଇଁଗଲା ଛୁଆଙ୍କ ପାଖକୁ । ପୁଣି ଆସିଲା ଦି'ଟା ଖାଇବା ପାଇଁ । ବଣର ଆତ୍ମନିର୍ଭରଶୀଳ ପ୍ରାଣୀଟି ଆଜି ସହରର କୋଠାରେ ଭିକାରି ।

ସେହି ଖଣ୍ଡିଆ ଘରର ଦୁଆର ମୁହଁରେ ବସିଥାଏ ଟମି, ଭିତରେ ଛୁଆଗୁଡ଼ାକ କେଁ କେଁ ହେଉଥାଆନ୍ତି । ସମସ୍ତେ ମନେକରନ୍ତି ଯେ ଟମି ଦୁଧ ଦେବାକୁ ପଡ଼ିବ ବୋଲି ସେ ଲୁଚୁଛି । ଆଉ ତେଣେ କେହି ଗଲେ କାମୁଡ଼ିବାକୁ ଧାଇଁ ଆସୁଛି ।

ମାଡ଼ ଡର ଦେଖାଇ ତାକୁ ଭିତରେ ପୂରାଇ କବାଟ ବନ୍ଦ କରିଦିଅନ୍ତି । ଆଉ ସେ ଭିତରେ ଛୁଆମାନେ ତାକୁ ଝୁଣି ଝୁଣି ଖାଉଥାଆନ୍ତି । ଏବେ ପଳେଇବ କାହିଁକି ?

ହାଡ଼ ପଞ୍ଜରାରେ ଯେତକ କ୍ଷୀର ସମ୍ଭବ, ଖାଇସାରିଲେ ଛୁଆଯାକ ତାହାର ଲାଞ୍ଜ, କାନ, ଗୋଡ଼କୁ କାମୁଡ଼ୁଥାନ୍ତି । ସେ ପ୍ରତିବାଦ କରେ ନାହିଁ । ଏହି ସଭ୍ୟ ସହରର ଜାଣିବା ଶୁଣିବା ମା'ମାନେ ଛୁଆଙ୍କର ଏତକ ସେବା କରୁଥିଲେ କଷ୍ଟରବା ପାଣ୍ଡିରେ ପ୍ରସ୍ତର କାହିଁକି ଚାଲନ୍ତା ସେମାନଙ୍କପାଇଁ ?

ଗୋଟିଏ ଛୁଆ ମରିଗଲା ।

ମରିବା ଆଗରୁ ମା' ପାଙ୍ଗରେ ଧାଇଁ ନ ପାରି ଖାଲି ଠା'କରେ ବସି କେଁ କେଁ ହେଉଥାଏ । ଟମି ଯାଇ ଥରେ ଚାଟିଦିଏ ଚାଲିଆସେ । ମନେକରେ ସେହି ଛୁଆଟିର ମା' ପାଙ୍ଗରେ ଧାଇଁବାକୁ ଇଚ୍ଛା ନାହିଁ । ମା'କୁ ଡାକ ଡାକ ମରିଗଲା । ବିଚରା କୋଠାଘରର ଅଇଁଠା ଚାଖି ଶିଖିଲା ନାହିଁ ।

ଟମି ତାକୁ ପାଟିରେ କାମୁଡ଼ି ଏଠି ସେଠି ହୁଏ ଆଉ ଚାହେଁ । ଲୋକ ସେପାଖକୁ ଗଲେ ଗଁ ଗଁ ହୁଏ । ଦେଖାଗଲା ଯେ, ଛୁଆକୁ ବଞ୍ଚାଇବା ବାହାନାରେ ଚାଟି ଚାଟି ସେ ଚାରିପଣ ଖାଇଦେଇ ସାରିଲାଣି ।

ଆରେ ଦେଖ ଦେଖ ଟମି ଏଥର ପାଗଳା ହୋଇଗଲା ବୋଧହୁଏ ! ନିଜର ଛୁଆଙ୍କୁ କ'ଣ ପଶୁମାନେ ଖାଆନ୍ତି ? ଆରଗୁଡ଼ାଙ୍କୁ ବି ଖାଇଯିବ । ମଣିଷଙ୍କୁ ହୁଏତ ଛକିବ ।

ଲମ୍ବା ଠେଙ୍ଗାର ସାହାଯ୍ୟରେ ସେ ମଲା ଛୁଆଟି ତାହାଠାରୁ କଢ଼ାହୋଇ ପାଚେରି ଡିଆଁଇ ଦିଆଗଲା । ଟମି ଦେଖିଲା ଉଚ୍ଚା ପାଚେରି ତାହାର ପେଟ ଭିତର ଛୁଆକୁ ନେଇଗଲା ।

ବେଳେବେଳେ ଠିଆହୋଇ ସେ ପାଚେରିକୁ ଶୁଙ୍ଘେ ।

ଆଉ ଯୋଡ଼ିଏ ମଲେ । ସେମିତି ପାଚେରି ଆରପାଖେ ଲୁଚିଗଲେ ତାହାର ଆଖିର ଆଗେ ଆଗେ ।

ଗୋଟିଏ ଛୁଆ ରହିଲା । ଟମି ତାକୁ ଖୁଆଇ ବଳୁଆ କଲା । ଏଇଟି ତାହାର ପାଖେ ପାଖେ ରହିବ । କୁକୁର-ଜଗତକୁ ଏତକ ତାହାର ଦାନ ।

ସୁନେଲି ଖରା, ରୁପେଲି ଜହ୍ନ, 'ଫୁଲର ବାସନା, ପ୍ରଜାପତିର ରଙ୍ଗ ଭିତରେ ସେ ଯାହା ଧାଇଥିଲା, ସେଗୁଡ଼ିକ ଏମିତିରେ ଚାଲିଗଲେ । ଆସିଥିଲେ ତାହାର କାହ୍ନଣା ଭିତରେ, ପୁଣି ଫେରିଗଲେ ତାକୁ କନ୍ଦାଇ ।

ତଥାପି ବାବୁମାନେ କହନ୍ତି, ସେ ପଶୁ···ସେ ହସ କାନ୍ଦ କ'ଣ ଜାଣେନାହିଁ ।

ତାହାର କୌତୁକିଆ ଗ୍ରେଡ଼ିଆ ଛୁଆଟି ପଡ଼ିଶାଘର ନେଇଗଲେ ପାଳିବେ ବୋଲି । ନେଲାବେଳେ ଟମିକୁ ଜଣାନାହିଁ । ଛୁଆକୁ ଚାରିଆଡ଼ ଖୋଜିଲା । ସମସ୍ତଙ୍କ ମୁହଁକୁ ଚାହେଁ— କିଏ ନେଇଯାଇଛି ଜାଣିପାରେ ନାହିଁ । ଏଠି ସେଠି କୁଉଁ କୁଉଁ ହୋଇ କହେ ଛୁଆଟିକୁ ଫେରାଇବା ପାଇଁ ।

ପାଚେରୀର ଚୂନକୁ ଶୁଙ୍ଘି ଯେମିତି କୁଉଁ କୁଉଁ ହୁଏ । ଏହି ପାଚେରୀ ତାହାର ଶତ୍ରୁ । ତାହାର କାନ୍ଥକୁ ନଜର ଦୁର୍ବଳ ଗୋଡ଼ ନଖରେ ରାମ୍ପେ ।

ରାସ୍ତାରେ ଗହଳ । ଶ୍ରେଷ୍ଠ ଛୁଆଟି ପାଖ ପଡ଼ୋଶୀ ଘରେ ପିଲାଙ୍କ ସାଙ୍ଗରେ ଖେଳୁଥାଏ । କେତେବେଳେ ମା'କୁ ଡାକିବା ପାଇଁ ତାହାର ଦୁର୍ବଳ ସ୍ୱର କାଢ଼େ, ସେତିକ ସଂସାରର ଗୋଳମାଳକୁ ବୃଡ଼େଇ ଉଠିପାରେ ନାହିଁ ।

ରାତି ଅଧିକ ହୋଇଗଲା । ରାସ୍ତାର ଗହଳ ଭାଙ୍ଗିଗଲାଣି । ପଡ଼ୋଶୀଘରେ ଶୋଇଲେଣି । ଟମିର ନିଦ ଭାଙ୍ଗିଗଲା । ସନ୍ଦେହ ଘୁଞ୍ଚିଗଲା । ଛୁଆ କାନ୍ଦୁଚି ଠିକ୍ ସେହି ପାଚେରୀ ଆରପାଖେ ।

ଘରଯାକ ଧାଁ ଦଉଡ଼ କଲା । ପାଟିକରି, ଭୁକି, ବୋବେଇ ସମସ୍ତଙ୍କୁ ଉଠାଇଲା । ପାଚେରୀଯାଏ ଧାଇଁଯାଏ ଓ ଲୋକଙ୍କ ମୁହଁକୁ ଅନାଏ—'ଛୁଆଟି ସେ ପାଖରେ ଅଛି—ଦେଖ ।'

ନିଦ ଭଙ୍ଗାଇଥିବାରୁ ମାଡ଼ଖାଇଲା । ଛୁଆଟିର କାନ୍ଦଣା ବନ୍ଦ ହୋଇଯାଏ, ପୁଣି ହୁଏ । ଟମି ନ ଶୋଇ ବାହୁନେ । ଘରେ ଶୁଭେ 'ଆଜି ଏଇଟା ଆଉ ଶୁଆଇ ଦେବନାହିଁ—ଗୋଟାଏ ଛୁଆକୁ ଖାଇଗଲା । ଆଜି ଦେଖ ପୁଣି ସୋହାଗ !'

ପାଚେରୀର ଗୃହଆଡ଼େ ନିବୁଜ । ଘରର ସବୁ କବାଟ ବନ୍ଦ । ସେଥିରେ ଟମି ବନ୍ଦୀ । ପାଚେରୀ ଆରପାଖେ ଠିକ୍ ତାହାର ଛୁଆର କାନ୍ଦଣା—ହଁ, ତାହାର ଛୁଆ ତ !

ସେହି ପାଚେରୀରେ ଗୋଟିଏ ବର୍ଷାପାଣି ଯିବାର କଣା ଥାଏ । ସେଥିରେ ମୁହଁ ପୂରେଇ ଟମି ଅନେକ ସମୟ ରହେ । ଛୁଆ କାନ୍ଦିଲେ ବୋବାଏ । କିନ୍ତୁ ସେହି କଣା ଭିତରକୁ ପଶିପାରେ ନାହିଁ ।

ନିଶୂନ ରାତି—ସବୁଆଡ଼େ ଶୋଇଚନ୍ତି—ଟମିର ଖାଉନ୍ଦଘର ଓ ଛୁଆ ରହିଥିବା ପଡ଼ୋଶୀଘରର ସମସ୍ତେ । ଛୁଆଟି ବେଳେବେଳେ ବୋବାଇ ଉଠେ । ଗହନ ରାତିର ଥଣ୍ଡା ପବନ ସେହି ସ୍ୱରକୁ ବୋହିଆଣେ ଟମିର କାନ ପାଖକୁ । ଛୁଆଟିକୁ ଶୀତ କରୁଚି, ମା'କୋଳର ଆଶ୍ରୟ ନାହିଁ । ଟମିକୁ ଶୀତ କରୁଚି । ଛୁଆଟି କେଇଦିନ ହେଲାଣି ତାହାର କୋଳକୁ ଉଷୁମ କରିନାହିଁ ।

ଗୋଟାଏ ଖିଆଲରେ ସେହି ପାଚେରୀ କଣା ଭିତରେ ଟମି ଗଳିଯାଇଚି ସେ ପାଖରୁ ତାହାର ଛୁଆକୁ ଉଦ୍ଧାର କରିବ ବୋଲି । ପଶିଯାଇ ପୂରା ସେ ପାଖକୁ ଯାଇପାରିଲା ନାହିଁ—ଫେରିପାରିଲା ନାହିଁ । ଅଣଓସାରିଆ ନାଳରେ ତାହାର ଦୁର୍ବଳ ପଞ୍ଜରା ଚପି ହୋଇ ରହିଗଲା ।

ବାତ୍ସଲ୍ୟର ଯନ୍ତ୍ରା । ଏହାର ଭିତରେ ତାହାର ପୂର୍ବପୁରୁଷମାନେ ବଣରେ ଜନ୍ତୁଙ୍କ ସାଙ୍ଗରେ ଲଢ଼ି ଅସହାୟ ଶିଶୁମାନଙ୍କ ପାଇଁ କେତେ ଥର ମରିଥିଲେ । ମା ବଞ୍ଚିଥିବାଯାଏ

ଛୁଆମାନଙ୍କର କ୍ଷତ ହୋଇନଥିଲା । ସେହି ଯନ୍ତ୍ରାରେ ଚପି ହୋଇ ପଡ଼ିଥିବାବେଳେ ଛୁଆର କାନ୍ଦଣା ବାଜେ ଆଖି ଆଗରେ । କାନ ଦୁ'ଟା ଚପିହୋଇ ଖଣ୍ଡିଆ ହୋଇଯାଇଚି ।

ତାହାର ଠିକ ହୃଦୟଟି ଚିଲ୍ଲଙ୍କ ପାଇଁ ବୋଧହୁଏ ଆକାର ପ୍ରକାରରେ ବଢ଼ି-ଯାଇଥିଲା । ସେଇଟି ଚପି ହୋଇ ହାଡ଼ ତଳେ ପୁଣି ସଙ୍କୁଚିତ ହୋଇଯାଇଚି ।

ସକାଳ ହେଲାବେଳକୁ ଜଣାଗଲା । ତାହାର ମେଲା ଆଖିକୁ ଦେଖି ସମସ୍ତେ ମନେକଲେ ସେ ଜୀଇଁଚି । ତାକୁ ମୁକୁଳେଇବା ପାଇଁ ପାଚେରୀର ଇଟା ଖୋଲି ବାହାର କଲାବେଳେ ଟଣ୍ଡେ ଭୁଷୁଡ଼ି ପଡ଼ିଲା କୁଢ଼ଟିଏ ହୋଇ ତାହାର ମଲା ଦେହ ଉପରେ ।

ଏହି ଇଟା ଚନର ପାଚେରୀ ତାକୁ ବାଧା ଦେଉଥିଲା ଯେତେବେଳେ ବୁଲବୁଲମାନେ ଯୌବନର ଗୀତ ଗାଇ ତାହାର ଚେତନା ଖୋଲିଥିଲେ । ସେଇ ପୁଣି ତାର ଛୁଆକୁ ନେଇଥିଲା । ସେହି ପାଚେରୀ ଆରପାଖେ ଛୁଆ କାନ୍ଦୁଥିଲାବେଳେ ତାହାର ଦୁର୍ବଳ ସ୍ୱରକୁ ପାଚେରୀ ବାଧାଦେଉଥିଲା ମା' ପାଖରେ ନ ପହଞ୍ଚାଇବା ପାଇଁ । ସେହି ପାଚେରୀ ପୁଣି ଗୋଟିଏ ମା'କୁ ନିଜ ଛୁଆକୁ ଦେଖିବାକୁ ଗଲାବେଳେ ବାଧା ଦେଇ ଏକାବେଳକେ ନେଇଗଲା ଆରପୁରକୁ ।

'ଆରେ ଦେଖ—ଟମିଟା ମରିଗଲା କେମିତି ! ଆଃ, ପଶୁଜାତି ତ—କ'ଣ ବୁଝନ୍ତି ?'

ମଣିଷ ତାହାର ଗ୍ରେଟିଆ ଛୁଆଟିକୁ ଚୋରେଇ ନେଲେ—ସେମାନେ ବଳୁଆ ବୋଲି । ତାକୁ ତାହାର ମରିବାର ରାସ୍ତା ଦେଖାଇଦେଲେ ସେମାନେ ବୁଦ୍ଧିଆ ବୋଲି । ମଲା ପରେ ତାକୁ ମୁକୁଳେଇବାର ଚେଷ୍ଟା କଲେ—ସେମାନେ ହୃଦୟବାନ୍ ବୋଲି ।

ଧନୀ ସାହୁକାର ଠିକ୍ ଏମିତି ମଣିଷକୁ ପଶୁପରି ଗଢ଼ି ଦିଏ । ତା'ପରେ ତାହାକୁ ମାରିସାରି ତାହାର ଶ୍ରାଦ୍ଧରେ ସାହାଯ୍ୟ କରି ନିଜର ଧର୍ମ ଅର୍ଜନ କରେ ଓ ବଡ଼େଇ କରି ବୁଲେ ।

---

[ ଲେଖକଙ୍କର 'ଜଣାଣଖଣ୍ଡ'ରୁ ସଂଗୃହୀତ ]

# ମଧୁମତ୍ତାର ରାତ୍ରି

—ସୁରେନ୍ଦ୍ର ମହାନ୍ତି

ଚରୈବେତି, ଚରୈବେତି···ଚାଲ, ଚାଲ, ଆଗେଇ ଚାଲ ।

ଉପକ ଚାଲିଛି । ଗତ ତିରିଶ ବର୍ଷ ଧରି ଚାଲିଛି । ରାଜଗୃହରୁ ନାଳନ୍ଦା, ନାଳନ୍ଦାରୁ ଉରୁବିଲ୍ୱ, ଉରୁବିଲ୍ୱରୁ ପାଟଳିପୁତ୍ର, ପାଟଳିପୁତ୍ରରୁ ବୈଶାଳୀ, ବୈଶାଳୀରୁ ବିଦେହ, ବିଦେହରୁ କୌଶଳୀ, କୌଶଳୀରୁ କାଶୀ, କାଶୀରୁ ସାକେତ, ସାକେତରୁ ଶିବ ଚମ୍ପା···ତା' ପରେ ? କିଏ ଜାଣେ ? ଅନନ୍ତ, ଅଫୁରନ୍ତ ଯାତ୍ରାପଥ । ସେ ଯାତ୍ରାର ଶେଷ ନାହିଁ । କାହିଁକି ବା ନେଲା ସେ ଏ ବିରାମହୀନ ଯାତ୍ରାର ଦୀକ୍ଷା ?

ବେତ୍ରବତୀର ସୁଗଭୀର ଜଳରେ ସୁନୀଳ ପ୍ରଶାନ୍ତି । ଦଳ ଦଳ ସାରସ ଦମ୍ପତି, ନୀଳ ଶୀତଳ ଜଳରେ, ଅଳସ ଆନନ୍ଦରେ ଦେହ ମେଲି ଦେଇଛନ୍ତି । ଉପକ ବେତ୍ରବତୀର ଜଳରେ ସନ୍ତରଣ କରିବାର ଲୋଭ ସମ୍ବରଣ କରି ପାରିଲା ନାହିଁ ।

ବେତ୍ରବତୀର ଜଳଧାର ପରି ମଣିଷର ଜୀବନ—ଏକ ଅନିଶ୍ଚିତ ଗହ୍ୱରରୁ ବାହାରି, ଅନ୍ୟ ଏକ ଅନିଶ୍ଚିତ ପରିଣତି ଆଡ଼େ ଗତି କରି ଚାଲିଛି । ଏହି ନିଃସଙ୍ଗ ପଥ ଓ ବିରାମହୀନ ଯାତ୍ରା ହିଁ ଏକମାତ୍ର ସତ୍ୟ । ଆଉ ସବୁ ମିଥ୍ୟା, ସବୁ ଦୁଃଖ ।

ଅପରାହ୍ନର ଛାୟା ବେତ୍ରବତୀର ତଟଭୂମି ଉପରେ ଧୀରେ ଧୀରେ ଢଳି ଆସିଲାଣି । ଦଳ ଦଳ ବଧୂ ଓ ବାଳିକା କଳାଙ୍କିତ କଟୀରେ ଜଳକୁମ୍ଭ ରଖି ବେତ୍ରବତୀରୁ ଜଳ ଆହରଣ ପାଇଁ ଆସୁଛନ୍ତି । କୌତୁକମୟୀମାନଙ୍କର କୌତୁକ ଓ ପରିହାସ ପ୍ରମୋଦରେ ନିର୍ଜନ, ରୁକ୍ଷ ତଟ ଦେଶ ପ୍ରାଣବନ୍ତ ହୋଇ ଉଠିଲା ।

+ + + +

ନାରୀର ଦେହ, ଚିରକାଳ ଉପକକୁ ଆକୃଷ୍ଟ କରିଛି···ଦୁର୍ବାର ଆକର୍ଷଣରେ । ସେଥର ବିଦେହରେ···

ଚାତୁର୍ମାସ୍ୟ ପାଇଁ, ଜଣେ ଶ୍ରେଷ୍ଠୀ, ସାଧୁ ସମ୍ମତ, ତୀର୍ଥଙ୍କର, ଚିରପରିଜ୍ଞାତ ବେଲଥୀ ପୁତ୍ର ଓ ତାଙ୍କର ଶିଷ୍ୟମାନଙ୍କୁ ବିଦେହର ଉପକଣ୍ଠରେ ଏକ ସଂଘାରାମ ସମର୍ପଣ କରିଥିଲେ । ବେଲଥୀ ପୁତ୍ର ସେଠାରେ ବହୁ ଶିଷ୍ୟଙ୍କ ସହିତ ରହି ଚାତୁର୍ମାସ୍ୟ ପାଳନ କରୁଥିଲେ ।

ଏବେ ସେହି ସଂଘାରାମକୁ ଆସିଥିଲା ବଜ୍ଜୀକନ୍ୟା, ଗଣିକା ମଧୁମଣ୍ଡା ବେଲଥୀ ପୁତ୍ରଙ୍କ ପାଇଁ ପୂଜାର୍ଘ୍ୟ ନେଇ । ସେତେବେଳେ ଉପକ, ସଂଘାରାମର ଉଦ୍ୟାନରେ ତୃଣଶଯ୍ୟା ଉପରେ ଶୋଇ ରହି "ଶୁଷ୍କ ପାଣ୍ଡ୍ୟ" ବ୍ରତ ପାଳନ କରୁଥିଲା । ଦୀର୍ଘ ଦୁଇମାସ ଏହିପରି ଦୁର୍ବାଶଯ୍ୟା ଉପରେ, ପୂର୍ଣ୍ଣ ଉପବାସରେ ପଡ଼ିରହି ଆଜୀବକମାନଙ୍କୁ ସାଧନା କରିବାକୁ ପଡ଼େ । ମଧୁମଣ୍ଡା ଫେରିଲାବେଳେ, ତୃଣଶଯ୍ୟା ଉପରେ ଶାୟିତ, ଉଲଙ୍ଗ ତ୍ରାସ୍ତ, ତରୁଣ ଉପକକୁ ଦେଖି, ସଙ୍କୋଚରେ ଦଣ୍ଡେକ ପାଇଁ ମୁହଁ ତଳକୁ ନୁଆଁଇ ରହିଗଲା । ଉପକ ପାର୍ଶ୍ୱରେ, ଦୁର୍ବାଶଯ୍ୟା ଉପରେ, ସଦ୍ୟସ୍ନାତା ମଧୁମଣ୍ଡାର ବିସ୍ମୃତ କବରୀରୁ କେତୋଟି ଅଶୋକ କଳି ତଳେ ଝରି ପଡ଼ିଲା । ଉପକ ମୁଗ୍ଧ ଦୃଷ୍ଟିରେ ମଧୁମଣ୍ଡା ଆଡ଼େ ଚାହିଁ ପଚାରିଲା—"ତୁମକୁ କେଉଁ ନାମରେ ସମ୍ବୋଧନ କରିବ ଭଦ୍ରେ ?"

ମଧୁମଣ୍ଡା କହିଲା—"ବଜ୍ଜୀକନ୍ୟା ମଧୁମଣ୍ଡା ।"

ଉପକ କ୍ଷୁଧିତ କଣ୍ଠରେ ପଚାରିଲା—"ଅବ୍ରୁହଙ୍କ ପାଇଁ କି ପୂଜାର୍ଘ୍ୟ ଆଣିଥିଲ ମଧୁମଣ୍ଡା ?"

ମଧୁମଣ୍ଡା କହିଲା—"ପାୟସ ।"

ମଧୁମଣ୍ଡାର ବୀଣାନିନ୍ଦୀ କଣ୍ଠରେ ପାୟସ ଉଚ୍ଚାରଣ ଶୁଣି, ଉପକର ଜିହ୍ୱା ଲାଳସିକ୍ତ ହୋଇଗଲା ।

ଉପକ କହିଲା—"ଭଦ୍ରେ, ମୁଁ ବଡ଼ କ୍ଷୁଧାର୍ତ୍ତ । ଗତ ଏକ ମାସରୁ ଊର୍ଦ୍ଧ୍ୱକାଳ ଧରି ଏହି ଦୁର୍ବାଶଯ୍ୟା ଉପରେ ଉପବାସରେ ପଡ଼ି, ମୁଁ ଶୁଷ୍କ ପାଣ୍ଡ୍ୟ ବ୍ରତ ପାଳନ କରୁଅଛି ।"

ମଧୁମଣ୍ଡା ଚପଳ କଣ୍ଠରେ ହସି ପଚାରିଲେ—"ଆଜୀବକର ପୁଣି କ୍ଷୁଧା କ'ଣ ଶମଣ ? ଶୁଷ୍କପାଣ୍ଡ୍ୟ ବ୍ରତ କରି ଅନ୍ନ ଚିନ୍ତା କଲେ ନିର୍ବାଣ ହେବ ନାହିଁ ଯେ ।"

ଉପକ କହିଲା—"ନିର୍ବାଣ ପ୍ରାପ୍ତିର ପଥ ଯଦି ଅନ୍ନ ଭୋଜନରେ ରୁଦ୍ଧ ହୋଇଯିବ, ତାହାହେଲେ ସେ ନିର୍ବାଣ ଅନ୍ନ କଣିକାଠାରୁ ସୁଦ୍ଧା ସୁଲଭ୍ୟ । ଅର୍ହତ ମଙ୍ଖଲୀ ଗୋଶାଳ ପ୍ରଚାର କରିଥିଲେ, ଅଜୀବକ ବ୍ରତ, ଉପବାସ, ଗଙ୍ଗାସ୍ନାନ ଓ ସୁକର୍ମ କଲେ ପୁଣ୍ୟ ପ୍ରାପ୍ତି ହୁଏ ନାହିଁ କି ବ୍ରତ ଉପବାସ ନ କରି ଧର୍ମ ଆଚରଣ ନ କଲେ ପାପର କାଳିମା ସୁଦ୍ଧା ଲାଗେ ନାହିଁ ।"

ମଧୁମଣ୍ଡା ସ୍ମିତ ହସି କହିଲା—"ଶୁଷ୍କ ପାଣ୍ଡ୍ୟ ବ୍ରତ ବେଳେ ଲୁଚିକି ଖାଇବା ପାଇଁ ମଙ୍ଖଲୀ ଗୋଶାଳ ଯଦି କହିଥିବେ, ଅଜିତ କେଶ କମ୍ବଳୀ ଶୁଷ୍କ ପାଣ୍ଡ୍ୟ ବେଳେ ଜଳ ସୁଦ୍ଧା ସ୍ପର୍ଶ ନ କରିବା ପାଇଁ ନିଶ୍ଚୟ କେଉଁଠି ସୂତ୍ର ବାନ୍ଧିଥିବେ ! ସଞ୍ଜୟ ବେଲଥୀ ପୁତ୍ର କେଜାଣି ତାହାର ମୀମାଂସା ଜାଣିଥିବେ ! ତାଙ୍କୁ ପଚାରିବ ?"

ମଧୁମଣ୍ଡାର ଦୁଇ ବିମ୍ବୋଷ୍ଠ କୁଟିଳ ଭ୍ରୂକୁଟିରେ କୁଞ୍ଚିତ ହୋଇଗଲା । ଉପକ, ମଧୁମଣ୍ଡା ଆଡେ ମୁଗ୍ଧ ଦୃଷ୍ଟିରେ ଚାହିଁ ଭାବୁଥିଲା, କଳା ଭଅଁର ପରି ସେ ମଧୁମଣ୍ଡାର ବଦନ କମଳକୁ ଉଡ଼ିଯାଇ ପାରନ୍ତା କି !

ମଧୁମନ୍ତ୍ରୀ ପଚାରିଲା — "କି କହିଲ ନାହିଁ ଯେ ! ମୋ ଆଡ଼କୁ ଚାହିଁ କ'ଣ ଏତେ ଦେଖୁଛ !"

ମଧୁମନ୍ତ୍ରୀର ସ୍ମିତ ହାସ୍ୟ ଉପକର ମର୍ମ ଦେଶରେ ମୃଗୟୁର ଶର ପରି ବିନ୍ଧିଗଲା ।

ମଧୁମନ୍ତ୍ରୀ ଚାଲି ଯାଉଥିଲା, ପଛରୁ ଉପକ ଡାକିଲା — 'ଭଦ୍ରେ' !

ମଧୁମନ୍ତ୍ରୀ, ପଛକୁ ଫେରି ଚାହିଁ ଉଚ୍ଛ୍ୱାସିତ କଣ୍ଠରେ ପଚାରିଲା — "ପୁଣି କ'ଣ କହୁଛ ଶ୍ରମଣ ?"

ଉପକ କହିଲା — 'ଶ୍ରମଣକୁ ଭିକ୍ଷା ନ ଦେଇ ଚାଲିଯିବ ମଧୁମନ୍ତ୍ରୀ ? ପୁଣ୍ୟ ସଞ୍ଚୟ ପାଇଁ କାମନା ନାହିଁ ତମର ? "

ମଧୁମନ୍ତ୍ରୀ ସ୍ମିତ ହସି ପଚାରିଲା — "କି ଭିକ୍ଷା ନେବ ଶ୍ରମଣ ?"

ଉପକ ଭୀରୁ କଣ୍ଠରେ କହିଲା — "ତୁମ ପାଦ ତଳେ ମୋତେ ପୂଜା କରିବ ସୁନ୍ଦରୀ ?"

ମଧୁମନ୍ତ୍ରୀ ସଲଜ୍ଜ କଣ୍ଠରେ କହିଲା — "ତୁମର ବିପରୀତ ରୀତି ମୋତେ ଜଣା ନ ଥିଲା ଶ୍ରମଣ ।"

ମଧୁମନ୍ତ୍ରୀ ତା'ପରେ ନିତମ୍ବ ଦୋଳାଇ ପୁଣି ଥରେ ଉପକ ଆଡ଼େ ବକ୍ର ଦୃଷ୍ଟିରେ ଚାହିଁ କୌତୁକରେ ଦନ୍ତ ପୀଡ଼ିତ ଜିହ୍ୱାଗ୍ର ଦେଖାଇ ଲୀଳାୟିତ ପାଦରେ ଚାଲିଗଲା ।

ଉପକର ମନେ ହେଉଥିଲା ଶୁଷ୍କ ପାଷାଣର ଏ ନିର୍ବୋଧ ଅଭିନୟ ଛାଡ଼ି, ଅଷାଢ଼ର ମେଘାକ୍ରାନ୍ତା ସନ୍ଧ୍ୟାର ଦେହରେ ବଳାକା ପରି, ନୀଳ ଦୁକୁଳାବୃତା ମଧୁମନ୍ତ୍ରୀର ଦେହରେ ବୁଲିଯିବା ପାଇଁ ।

ସେଦିନ ରାତି...

ସଂଘାରାମରେ ସମସ୍ତେ ପ୍ରାୟ ନିଦ୍ରା ଚେତନ । ଉପକ ଉଦ୍ୟାନର ଗୋଟିଏ ଆମ୍ର ବୃକ୍ଷ କୋଟରର ପାଖରେ ବସି ହିଂସ୍ର ପଶୁ ପରି, ବେଲଥୀ ପୁତ୍ରଙ୍କ ଉଦ୍ଦେଶ୍ୟରେ ନିବେଦିତ ପାୟସ ଓ ମିଷ୍ଟାନ୍ନ ଗଳାଧଃକରଣ କରୁଥିଲା । ସଂଘାରାମରେ ଅଧିକାଂଶ ଶ୍ରମଣ ଏବେ ଆଉ ହିଁ ନାଚ କରୁଥାନ୍ତି । ମୋକ୍ଷ ଓ ନିର୍ବାଣର ପାଇଁ ଉପବାସ ରହିବାର କୌଣସି ଅର୍ଥ ନାହିଁ । ଗୌତମ ଯେ ନିର୍ବାଣର ସନ୍ଧାନ ପାଇଛନ୍ତି ବୋଲି ଏତେ ପ୍ରଚାର କରି ବୁଲୁଛନ୍ତି, ସେ ସୁଦ୍ଧା ତ ନୂଆ ଉପବାସ ଛିଡ଼ି ରହି, ଶେଷକୁ ଧରମା ହାତରୁ ପାୟସାନ୍ନ ଭୁଞ୍ଜିଥିଲେ । ଏବେ ବଡ଼ାଇ କରି ବୁଲୁଛନ୍ତି । ସେଇଥିପାଇଁ ତ ଉପକ ତାଙ୍କୁ ମୁହେଁ ମୁହେଁ ମୁଣ୍ଡଗହପତିକ (ଲଣ୍ଡିତ ମସ୍ତକ ଗୃହସ୍ଥ ବା ଛଦ୍ମବେଶୀ ଶ୍ରମଣ) ବୋଲି ସେଦିନ ଉରୁବିଲ୍ୱ ପଥରେ କହି ଦେଇଥିଲା । ସବୁ ଯଦି ମାୟା, ସବୁ ଯଦି ଅଳୀକ, ତା ହେଲେ ନିର୍ବାଣ ଯେ ସତ୍ୟ ତାହାର ପ୍ରମାଣ କ'ଣ ?"

ଉପକର ଦେହର କ୍ଷୁଧା କଥଞ୍ଚିତ ଶାନ୍ତ ହେବା ପରେ, ମଧୁମନ୍ତ୍ରୀକୁ କେନ୍ଦ୍ର କରି ମନର କ୍ଷୁଧା ପ୍ରବଳ ହୋଇ ଉଠିଲା । ଦନ୍ତ ପୀଡ଼ିତ ଜିହ୍ୱାଗ୍ର ଦେଖାଇ, ମଧୁମନ୍ତ୍ରୀର କୌତୁକ ପରିହାସ ଉପକକୁ ଅନବସ୍ଥିତ କରିଦେଲା ।

ନିଶାର୍ଦ୍ଧର ସୁପ୍ତ ଆକାଶରେ ଅଗଣିତ ତାରା—ଜୀବନରେ ବହୁ ଅତୃପ୍ତ କାମନା ପରି । ତାର ଜ୍ୱାଲାମୟ ଦୀପ୍ତି ଉପକକୁ ଯେପରି ତିଳେ ତିଳେ ଦଗ୍ଧ କରି ଦେଲା ।

× × ×

ଋତୁ ମାସିଆ ଶେଷ ହେଲା । ମେଘମୁକ୍ତ ଆକାଶରେ ଶରତ୍‌ର ଖଣ୍ଡ ଖଣ୍ଡ ଲଘୁ ମେଘ ଭାସି ବୁଲିଲଣି, ନିଃସମ୍ବଳ, ନିରୁଦ୍ଦିଷ୍ଟ, ଅନବସ୍ଥିତ ଶ୍ରମଣମାନଙ୍କ ପରି । ଏଥର ସଂଘାରାମ ଛାଡ଼ିବେ । ଶ୍ରମଣମାନେ ନିଜ ନିଜ ପଥ ଧରି ପୁଣି ପ୍ରବ୍ରଜ୍ୟା ଆରମ୍ଭ କରିବେ । ଉପକ ମଧ୍ୟ ଚାଲିଯିବ । କିନ୍ତୁ ବିଦେହ ଛାଡ଼ିବା ପୂର୍ବରୁ ଥରେ ମଧୁମଲ୍ଲୀର ସାହଚର୍ଯ୍ୟ ପାଇଁ ଉପକର ଚିତ୍ତ ଆକୁଳ ହୋଇ ଉଠିଲା ।

...ଶରତର ଗୋଟିଏ ସ୍ନିଗ୍ଧ, କୋମଳ ଗୋଧୂଳି । ଉପକ ଭିକ୍ଷା ଶେଷରେ ବିଦେହର ରାଜ ପଥରେ ଫେରୁଥିଲା ସଂଘାରାମ ଆଡ଼େ । ସେତିକିବେଳେ ମଧୁମଲ୍ଲୀ ନିଜ ଭବନ-ଶିଖରରେ କିଙ୍କରୀମାନଙ୍କର ଗହଣରେ ପାଦ ଚାରଣା କରି ରାଜପଥରେ ବେଳେ ବେଳେ ରଥାରୂଢ଼ ହୋଇ ଯାଉଥିବା ଶ୍ରେଷ୍ଠୀ ଓ ରାଜକୁମାରମାନଙ୍କୁ ନାନା ଅଙ୍ଗ ଭଙ୍ଗୀଦ୍ୱାରା ପ୍ରଲୁବ୍ଧ କରୁଥିଲା । ଉପକକୁ ରାଜପଥରେ ଦେଖି ମଧୁମଲ୍ଲୀ କବରୀରୁ ଗୋଟିଏ ଦଳିତ ଚମ୍ପା କାଢ଼ି ଉପକର କମଣ୍ଡଳୁ ଭିତରକୁ ଫିଙ୍ଗି ଦେଲା ।

ଭବନ-ଶିଖରରେ ଭୁବନ-ମୋହିନୀ ମଧୁମଲ୍ଲୀକୁ ଦେଖି, ଉପକର ସାରା ଦେହ ଏକ ଉତ୍ତେଜନାରେ ଦୀପର ଶିଖା ପରି ପ୍ରକମ୍ପିତ ହୋଇଗଲା । କିନ୍ତୁ ପର ମୁହୂର୍ତ୍ତରେ ନିଜର ରୁକ୍ଷ ବେଶବାସ, ମଳିନ କୌପୀନ, ଛିନ୍ନ ଚୀବର ଓ ଅର୍ଦ୍ଧ ଦଗ୍ଧ ବିକଳ ହସ୍ତରେ ଶୂନ୍ୟ କମଣ୍ଡଳୁ ଦେଖି ମନ ତାର ସଙ୍କୁଚିତ ହୋଇଗଲା । ବହୁ···ବହୁବର୍ଷ ତଳେ, ଆଜୀବକ ସଂଘରେ ପ୍ରଥମ ଦୀକ୍ଷା ଗ୍ରହଣ ବେଳେ, ରୂପ, ସ୍ପର୍ଶ ଓ ଅନୁଭୂତି ଜୟ କରିବା ପାଇଁ, ଆଜୀବକ ଦୀକ୍ଷା ଗ୍ରହଣ ବିଧି ଅନୁସାରେ, ସେ ତପ୍ତ ଲୌହଖଣ୍ଡ ଦୁଇ ହାତରେ ଅଞ୍ଜଳିବଦ୍ଧ କରି ଧରିଥିଲା । ସେହିଦିନୁ ଦୁଇ ହାତରେ ଅଙ୍ଗୁଳିଗୁଡ଼ିକ ଦଗ୍ଧ ହୋଇ, କେବଳ ଅର୍ଦ୍ଧ ଦଗ୍ଧ, କୁଞ୍ଚିତ ଚର୍ମ ତଳେ ଅସ୍ଥି ଖଣ୍ଡମାନ ଅବଶିଷ୍ଟ ରହିଅଛି ।

ଉପକ ଇତଃସ୍ତତଃ ହେଉଥିଲା; ଏତିକିବେଳେ ମଧୁମଲ୍ଲୀର ପରିଚାରିକା କାମଦା ବାହାରିକି ଆସି କହିଲା "ଅଭ୍ୟନ୍ତରକୁ ପଦାର୍ପଣ କରନ୍ତୁ ଶ୍ରମଣ । ସଖୀ ଅର୍ହତଙ୍କୁ କାମନା କରି ଅଛନ୍ତି ।" କାମଦାର ପରିହାସ-ଚପଳ ଆମନ୍ତ୍ରଣ ଉପକକୁ ଆହୁରି କାମଦଗ୍ଧ କରିଦେଲା ।

ଉପକ ପଚାରିଲେ—"ତୁମକୁ କେଉଁ ନାମରେ ସମ୍ବୋଧନ କରିବି ଭଦ୍ରେ ?"

କାମଦା ସ୍ମିତ ହସି କହିଲା—"କାମଦା ।"

ଉପକ ଶୁଷ୍କ ଦୁଇ ଓଷ୍ଠ ଉପରେ କ୍ଷୁଧିତ ପଶୁ ପରି ଜିହ୍ୱାଗ୍ର ବୁଲାଇ ଅସ୍ପଷ୍ଟ ସ୍ୱରରେ ମନେ ମନେ ଉଚ୍ଚାରଣ କଲା—"କାମଦା—କାମଦା ।"

ଅପ୍ରଶସ୍ତ ଅଳିନ୍ଦ ପଥରେ ଗଲାବେଳେ ଉପକର ମନ ହେଉଥିଲା ଥରେ କାମଦାକୁ ନିବିଡ଼ ବାହୁ ପାଶରେ ଆଲିଙ୍ଗନ କରିବା ପାଇଁ । ମାତ୍ର ଅଳିନ୍ଦ ପଥର ଶେଷରେ ସ୍ମିତହାସିନୀ ମଧୁମଞ୍ଜରୀ, କେଳି ମନ୍ଦିର ଦ୍ୱାରରେ ଯେପରି ଉପକର ପଥ ଗୁହିଁ ଠିଆ ହୋଇଥିଲା । କୁସୁମ, ଅଗୁରୁ ଓ ସୁବାସ ସହିତ ସ୍ମିତ ଚନ୍ଦନ ଲେପିତ ନାରୀ ଦେହର ଲୋଭନୀୟ ଗନ୍ଧ, କ୍ଷୁଧିତ ଉପକର ଦୁଇ ଆଖିରେ ଏକ ଅନିର୍ବଚନୀୟ କଳ୍ପଲୋକ ସୃଷ୍ଟି କରିଥିଲା ।

ମଧୁମଞ୍ଜରୀ କହିଲା—"ଭିତରକୁ ଆସ ଶମଣ ।"

କୁସୁମ ବିଚିତ୍ରିତ, ଅଗୁରୁ ସୁବାସିତ, ଦୀପାଲୋକିତ, ବୀଣା ଓ ବିପଞ୍ଚୀ ନିନ୍ଦିତ କେଳି ମନ୍ଦିର, ମଧୁମଞ୍ଜରୀ ଛିନ୍ନ କମଳର ଶଯ୍ୟା ଉପରେ ଦେହ ଢ଼ାଳି ଦେଇ, କିଂ କର୍ତ୍ତବ୍ୟ ବିମୂଢ଼ ଉପକ ଆଡ଼େ ଗୁହିଁ ସ୍ମିତ ହସି କହିଲା—"ଏଠାରେ ଉପବେଶନ କରନ୍ତୁ ଶମଣ ।"

ଉପକ ଗୁହିଁ ଦେଖୁଥିଲା——ନବଶିକ୍ଷେମାଲ୍ୟଭୂଷିତା, ନବମଣିବନ୍ଧମତ କାଞ୍ଚୀ, କେୟୂର, କଙ୍କଣ ଓ ନୂପୁରଭୂଷିତା, ସୁଧାରସ ତରଙ୍ଗାୟିତନୟନା, ମଦାବେଶବିହ୍ୱଳା ଏହି ରତିଆକାଂକ୍ଷିଣୀ ନାରୀ, ନାରୀ ନୁହେଁ; ବିଶ୍ୱର ପୁଞ୍ଜୀଭୂତ କାମନା ଯେପରି ଅଗଣିତ ଜୀନ ତୀର୍ଥଙ୍କରଙ୍କ ନିର୍ବାଣ ସାଧନାକୁ ଉପହାସ କରି କମଳଦଳାବୃତ ଶଯ୍ୟାରେ ଅଳସ ଅପରାହ୍ନ ପରି ଦେହ ଢାଳି ଶୋଇଛି । ମଧୁମଞ୍ଜରୀ କାମଦାକୁ ଡାକି କହିଲା; "ଆଲୋ କାମଦା ଶମଣଙ୍କୁ ଆସବ ନିବେଦନ କର ।"

କାମଦା ସ୍ଫଟିକର ଦୁଇଟି ପାନ ପାତ୍ରରେ ଆସବ ଆଣି ଉପକ ଓ ମଧୁମଞ୍ଜରୀଙ୍କ ମଝିରେ ରଖିଦେଲା । ଉପକ କମ୍ପିତ ହସ୍ତରେ ଗୋଟିଏ ପାତ୍ର ଉଠାଇ ମୁହୂର୍ତ୍ତକ ମଧ୍ୟରେ ନିଃଶେଷ କରି ଦେଇଥିଲା; ମଧୁମଞ୍ଜରୀ କହିଲା—"ଭୟ ନାହିଁ ଶମଣ, ଏ ସନ୍ଧ୍ୟା ବେଳଥୀ—ପୁରଙ୍କ ସଂଘାରାମ ନୁହେଁ ବା ନିଗ୍ରନ୍ଥ ର ଅପହୃତ ପାନ୍ଥଶାଳା ନୁହେଁ । ଧୀରେ ଧୀରେ ମୋ ଆଡ଼େ ଗୁହିଁ, ସ୍ମିତ ହସି ପାନ କରନ୍ତୁ ।" ମଧୁମଞ୍ଜରୀ ତା ପରେ ନିଜେ ଗୋଟିଏ ପାତ୍ର ଦୁଇ ଓଠ ପାଖରେ ଟେକି ଧରି ଧୀରେ ଧୀରେ ଆସବ ପାନ କଲା । ଏହା ପୂର୍ବରୁ ଉପକ, କେତେବାର ଅବଶ୍ୟ ଲୁଚାଇ ଆସବ ପାନ କରିଛି । ଆସବପାନ କରିବା ଆଜୀବକମାନଙ୍କ ପକ୍ଷରେ ଏକାନ୍ତ ନିଷିଦ୍ଧ ନୁହେଁ । ମାତ୍ର ଆଜି ମଧୁମଞ୍ଜରୀର ସ୍ଫୁରିତ ବିମ୍ବାଧର ଓ ନୀଳୋତ୍ପଳ-ନିନ୍ଦୀ କୁରଙ୍ଗୀନୟନ ଆଡ଼େ ଗୁହିଁ ଆସବ ପାନ କଲାବେଳେ ଏକ ଅପୂର୍ବ ତୃପ୍ତିରେ ଉପକକୁ ଅବସନ୍ନ ପରି ଲାଗିଲା ।

ନୀଳ ଚୀନାଂଶୁକର ଅବଗୁଣ୍ଠନ ତଳେ ମଧୁମଞ୍ଜରୀର ଏ କ ରୂପଶ୍ରୀ—ଜ୍ୟୋତ୍ସ୍ନାର୍ଚ୍ଚିତ ଆକାଶ ତଳେ ଭୁବନମୋହିନୀ ରାତ୍ରି ପରି !

ମଧୁମଞ୍ଜରୀ ପଚାରିଲା—"ଏ ଜନ୍ମ ପରେ ଆଉ ପୁନର୍ଜନ୍ମ ଅଛି ଶମଣ ?"

ଉପକ କହିଲା—"ଏଠି ଜନ୍ମ ପୁନର୍ଜନ୍ମର କଥା କାହିଁକି ମଧୁମଞ୍ଜରୀ ?"

ମଧୁମନ୍ତ୍ରୀ ଗୋଟିଏ କମଳ କଳିକା କଞ୍ଚୁକପୀଡ଼ିତ ଦୁଇ ବକ୍ଷୋଜ ଉପରେ ଧୀରେ ଧୀରେ ନଗ୍ରଇ ପଗ୍ଚରିଲା—"ତା ହେଲେ ଏ ଜନ୍ମ ପରେ ଆଉ ପୁନର୍ଜନ୍ମ ନାହିଁ ଶମଣ ?"

ଉପକ କହିଲା—"ମୁଁ ଜାଣେ ନା, କେହି ଜାଣେ ନାହିଁ । ପୁନର୍ଜନ୍ମ ଥିବା ମୁଁ ଜାଣେ ନାହିଁ, ନ ଥିବା ମଧ ଜାଣେ ନାହିଁ । ମୁଁ ଜାଣେ ଜନ୍ମ ମିଥ୍ୟା, ପୁନର୍ଜନ୍ମ କଳ୍ପନା, ସତ୍ୟ କେବଳ ଧାବମାନ ଏହି ମୁହୂର୍ତ୍ତ, ଆଉ ତୁମେ ! ତୁମ ଠାରେ ମୋର ଭିକ୍ଷା କ'ଣ କାଳେ କାଳେ ଅତୃପ୍ତ ରହିଯିବ ମଧୁମନ୍ତ୍ରୀ ?"

ମଧୁମନ୍ତ୍ରୀ ସ୍ମିତ ହସି, ଉପକକୁ ଆହୁରି ପ୍ରଲୁବ୍ଧ କରି ପଚାରିଲା—"ତୁମର କି ଭିକ୍ଷା ଶମଣ ?"

ଉପକ କହିଲା—"ଥରେ ଦୁଇ ହାତରେ ତୁମକୁ ଅନୁଭବ କରିବାକୁ ଦେବ ମୋତେ ସୁନ୍ଦରୀ ?"

ମଧୁମନ୍ତ୍ରୀ କହିଲା, "ଶମଣ, ବିଦେହ ରାଜକୋଷର ଦୈନିକ ଆୟ, ମୋର ଏକ ରାତ୍ରିର ଆୟର ଅର୍ଦ୍ଧାଂଶରୁ ସୁଦ୍ଧା କମ । ମୋର ପ୍ରଶ୍ନର ଉତ୍ତରରେହିଁ ତୁମକୁ ମୂଲ୍ୟ ଦେବା ପାଇଁ ପଡ଼ିବ ।"

ମଧୁମନ୍ତ୍ରୀର ଦୁଇ ଆଖି, ମୁହୂର୍ତ୍ତିକ ପୂର୍ବର ସ୍ନିଗ୍ଧତା ହରାଇ କଠୋର ହୋଇଗଲା ।

ଉପକ ଆକୁଳ କଣ୍ଠରେ ପଚାରିଲା—"କିନ୍ତୁ ସେ ପ୍ରଶ୍ନରେ କି ପ୍ରୟୋଜନ ମଧୁମନ୍ତ୍ରୀ ?

ମଧୁମନ୍ତ୍ରୀ କହିଲା—"ତୁମେ କ'ଣ ଭାବୁଛ ଶମଣ ଅନ୍ୟର ପାଦତଳେ କେବଳ ଅସହାୟ ଭାବରେ ନିବେଦିତ ହେବାହିଁ କୁସୁମର ଭବିତବ୍ୟ ? ପୁନର୍ଜନ୍ମ କଳ୍ପନା ହୋଇ-ପାରେ । ମାତ୍ର ପୁନର୍ଜନ୍ମରେହିଁ ମୋର ପୂର୍ଣ୍ଣତା । ଆଉ ଛଳନା ନ କରି କୁହ ଶମଣ, ପୁନର୍ଜନ୍ମ ଅଛି କି ନାହିଁ ?"

ଉପକ କିଂକର୍ତ୍ତବ୍ୟବିମୂଢ଼ ହୋଇ କହିଲା "ଥାଇପାରେ, ହୁଏତ ଅଛି ।"

ମଧୁମନ୍ତ୍ରୀ କେତୋଟି ମୁହୂର୍ତ୍ତ ଉପକ ଆଡ଼େ ସ୍ଥିର, ଅବିଚଳିତ ଦୃଷ୍ଟିରେ ଚାହିଁ ରହିଲା । ଉପକ ଆକୁଳ ଆବେଗରେ ମଧୁମନ୍ତ୍ରୀକୁ ଆଲିଙ୍ଗନ କରିବା ପାଇଁ ଦୁଇବାହୁ ପ୍ରସାରିତ କରିବା ମାତ୍ରେ ମଧୁମନ୍ତ୍ରୀ ଉପକର ଦୁଇ ଅର୍ଦ୍ଧଦଗ୍ଧ ହାତ ଦେଖି ଆର୍ତ୍ତ ଚିତ୍କାର କରି ଉଠିଲା । ଉପକ ନିଜର ଦୁଇ ଅର୍ଦ୍ଧଦଗ୍ଧ ହାତର ବିଭତ୍ସତାରେ ନିଜେ ସୁଦ୍ଧା ଏକ ଅବ୍ୟକ୍ତ ଆତଙ୍କରେ ଆତଙ୍କିତ ହୋଇ ପଡ଼ିଲା । ମଧୁମନ୍ତ୍ରୀ ନିଜର ଦୁଇ କୋମଳ ରକ୍ତିମ କରପଲ୍ଲବ ଦୁଇ ଆଖି ଉପରେ ଚାପି ଧରି କାମଦାକୁ ଡାକି କହିଲା "ଆଲୋ କାମଦା, କାହିଁ ଗଲୁ କାମଦା ! ଶମଣଙ୍କୁ ବିଦାୟ କରିଦେ' ଏଠୁ ।"

କାମଦା ମଧ ଉପକର ଦୁଇ ଅର୍ଦ୍ଧଦଗ୍ଧ ହାତ ଦେଖି ଭୟରେ ଆର୍ତ୍ତ ଚିତ୍କାର କଲା । ଉପକ ବେତ୍ରାହତ ଶିଶୁ ପରି ମଧୁମନ୍ତ୍ରୀର କେଳି ମନ୍ଦିର ଛାଡ଼ି ରାଜପଥକୁ ପଳାଇ ଆସିଲା ।

ବେତ୍ରବତୀର ତଟ ଭୂମି ଆସନ୍ନ ସନ୍ଧ୍ୟାର ପ୍ରାଧ୍ୱାନ୍ଧକାର ମଧ୍ୟରେ ଅସ୍ପଷ୍ଟ ଦିଶିଲାଣି । ଜଳାର୍ଥିନୀମାନେ କେତେବେଳୁଁ ବିଦାୟ ନେଇ ସାରିଲେଣି । ବେତ୍ରବତୀର ତଟ ଭୂମି, ନିଃଶବ୍ଦ ଓ ନିର୍ଜନ । ସମାଧିସ୍ଥ ଶ୍ରମଣ ପରି ଆକାଶ ଗମ୍ଭୀର, ଗମ୍ଭୀର ଓ ଅବିଚଳିତ । ଉପକ ବେତ୍ରବତୀ ଅତିକ୍ରମ କରି ଅପର ପାର୍ଶ୍ୱରେ ପହଞ୍ଚିଲା ବେଳକୁ, ଆକାଶରେ ଗୋଟିଏ ଦିଓଟି ହୋଇ ସନ୍ଧ୍ୟାର ତାରା ଫୁଟି ଉଠିଥିଲା ।

ଏଠୁ, ଅଦୂରରେ ଏଇ ଦେଖାଯାଏ···ଚମ୍ପା ଜନପଦ । ଧୂସର ଦିଗ୍‌ବଳୟର ପୃଷ୍ଠ ଭୂମିରେ, ଚମ୍ପାର ଆଜୀବକ ସଂଘର ସ୍ତୂପଚୂଡ଼ା, ତଥାପି ଅସ୍ପଷ୍ଟ ଭାବରେ ଦେଖା ଯାଉଅଛି । ଆଜି ରାତି ହୁଏତ, ସେଇଠାରେ କଟିବ ।

—ଆଜି ତଥାପି ମନେ ପଡ଼େ ଯୌବନର ପ୍ରାରମ୍ଭରେ ବହୁଦିନ ତଳର ମଧୁମଲ୍ଲୀର କଥା । ମଧୁମଲ୍ଲୀ ଖୋଜୁଥିଲା ପୁନର୍ଜନ୍ମ; ହୁଏତ ବ୍ୟର୍ଥ ନାରୀତ୍ୱ ଓ ମାତୃତ୍ୱର ନୂତନ ସାର୍ଥକତା ପାଇଁ । ମଧୁମଲ୍ଲୀର ସେଇ ଆକୁଳ ଜିଜ୍ଞାସା, ଏବେ ସୁଦ୍ଧା ଉପକର ମନେ ପଡ଼େ । "ଅନ୍ୟର ପାଦତଳେ କେବଳ ଅସହାୟ ଭାବରେ ନିବେଦିତ ହେବାହିଁ କ'ଣ କୁସୁମର ଭବିତବ୍ୟ ?"

ଉପକ ମଧ ଖୋଜେ ପୁନର୍ଜନ୍ମ, ଜୀବନର ନୂତନ ଉପଲବ୍ଧି ପାଇଁ ।

( ଦୁଇ )

ବିଦେହରୁ ବିଦାୟ ନେବାର ଆଜିକୁ ପ୍ରାୟ ଏକଯୁଗ ବିତି ଗଲାଣି । ମଧୁମଲ୍ଲୀର କେଳି ମନ୍ଦିରରୁ ସେ ଦିନ ବେତ୍ରାହତ ଶିଶୁ ପରି ପଳାୟନ ପରେ, ବହୁ କଠୋର ବ୍ରତ, ଉପବାସ ଓ ସାଧନାରେ ଉପକର ଦେହ ଶୀର୍ଣ୍ଣ ହୋଇଛି, ଯୌବନ ପ୍ରାୟ ଶେଷ ହୋଇଛି; ତଥାପି ବିଶୁଷ୍କ ବିଦଳିତ ବକୁଳ ପରି ସେଥିରୁ କାମନାର ସୁରଭି ଲିଭି ନାହିଁ । ଏବେ ସୁଦ୍ଧା ବେଳେ ବେଳେ, ମଧୁମଲ୍ଲୀର ସ୍ମୃତି, ପୌଢ଼ତ୍ୱ ପାଣ୍ଡୁର ହୃଦୟ ବନରେ ଅଦିନ ମଳୟ ପରି ଜାଗି ଉଠେ । ମାତ୍ର ଉପକ ଅତି କଠୋର ଭାବରେ କାମନାର ସେ ଲେଲିହାନ ଶିଖା ଦମନ କରିଛି । ତାର ସାଧନା, ସଂଯମ ଓ ନିଷ୍ଠା, ଆଜୀବକ ସମାଜରେ ଉପକକୁ ପୂଜନୀୟ ଓ ସମ୍ମାନୀୟ କରିଅଛି । ତଥାପି କେବେ କେବେ, କେତେକ ଅସତର୍କ ମୁହୂର୍ତ୍ତରେ ସଂଯମର ସମସ୍ତ ଶୃଙ୍ଖଳ ଭାଙ୍ଗି, ଶୀତକ୍ଳିଷ୍ଟ ପାଣ୍ଡୁର ଅରଣ୍ୟରେ, ମଧୁମଲ୍ଲୀ ରକ୍ତିମ ପଲାଶର ଆଗ୍ନେୟ ଉଚ୍ଛ୍ୱାସ ପରି ଜାଗି ଉଠେ । ଉପକ ନିଜର ଦୁଇ ଅର୍ଦ୍ଧଦଗ୍ଧ ହାତ ଆଡ଼େ ଚାହିଁ, ପୁଣି ଅତି କଠୋର ଭାବରେ ସେ ମାନସିକ ଚଞ୍ଚଳତା ଦମନ କରିବସେ ।

ମଧୁମଲ୍ଲୀ ଖୋଜୁଥିଲା ପୁନର୍ଜନ୍ମ···ଉପକ ଖୋଜେ ପୁନର୍ଜନ୍ମ । କିନ୍ତୁ ପୁନର୍ଜନ୍ମ ନାହିଁ ।

ପଞ୍ଚଭୂତ ପଞ୍ଚଭୂତରେ ଲୀନ ହୋଇଯାଏ ।

ପୁନର୍ଜନ୍ମ ନାହିଁ ।

ଏଇ ଜୀବନହିଁ ଏକମାତ୍ର ସତ୍ୟ ।

ତା ହେଲେ ସଂସାରର ନାଗ ଫାଶରେ ସେ ଜୀବନକୁ ଢଳେ ଢଳେ ଏପରି ଦଗ୍ଧ ଓ ନିଷ୍ପେଷିତ କରି ନିର୍ବାଣ ପାଇଁ ଏ ସାଧନାର ସାର୍ଥକତା କେଉଁଠି ?

ଚମ୍ପାର ଆଜୀବ୍ୟ ସଭାରେ ସେଦିନ ନିଗନ୍ଥନାଥ ପୁତ୍ରଙ୍କ ଜଣେ ଶିଷ୍ୟ କଶୀ ସହିତ ବହୁତ ଯୁକ୍ତିତର୍କ ହେଲା । ପଲାସପୁର ପଥରେ ଯାଉଁ ଯାଉଁ କଶୀ ଚମ୍ପାର ଆଜୀବ୍ୟ-ସଂସଦରେ କିଛି ଦିନ ବିଶ୍ରାମ ପାଇଁ ରହିଥିଲେ । ଉପକ ପହଞ୍ଚିଲା ବେଳକୁ ଆଜୀବ୍ୟ ସଭାମଣ୍ଡପ ବହୁ ଶ୍ରମଣ ତଥା ଚମ୍ପାର ଅନ୍ୟ ସାଧାରଣ ନାଗରିକଙ୍କ ଦ୍ୱାରା ଜନାକୀର୍ଣ୍ଣ ହୋଇଥିଲା । ମଣ୍ଡପ ମଝିରେ କଶୀ ଯୋଗାସନରେ ବସି ଶ୍ରୋତୃମଣ୍ଡଳୀକୁ ଶ୍ରମଣଫଳସୁତ୍ର ବୁଝାଉଥିଲେ । କଶୀ କହୁଥିଲେ, "ପୁନର୍ଜନ୍ମ ଅଛି କି ନାହିଁ ନିଗନ୍ଥ ଜାଣନ୍ତି ନାହିଁ । ଶ୍ରମଣର ସାଧନାରେ ସାର୍ଥକତା ଅଛି କି ନାହିଁ ତା ମଧ୍ୟ ନିଗନ୍ଥ ଜାଣନ୍ତି ନାହିଁ ।"

ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ପଚାରିଲେ—"ପାପ ଆଉ ପୁଣ୍ୟ ମଧ୍ୟରେ ପାର୍ଥକ୍ୟ କ'ଣ ? ଅଜିତ କେଶ କମ୍ବଳୀ କହନ୍ତି, ତପ, ଯଜ୍ଞ, ଦାନ ଧର୍ମରେ ପୁଣ୍ୟ ନାହିଁ ବା ହତ୍ୟା, ରକ୍ତପାତ ଓ ଲୁଣ୍ଠନରେ ପାପ ନାହିଁ ।"

କଶୀ କହିଲେ—"ନିଗନ୍ଥ ତାହା ମଧ୍ୟ ଜାଣନ୍ତି ନାହିଁ ।"

ଶ୍ରୋତାମାନଙ୍କ ମଧ୍ୟରୁ ଜଣେ ବ୍ରାହ୍ମଣ ପରିହାସ ମିଶ୍ରିତ କଣ୍ଠରେ ପଚାରିଲେ, "ତା ହେଲେ ନିଗନ୍ଥ କ'ଣ ଜାଣନ୍ତି ?"

କଶୀ କହିଲେ—"ନାଥପୁତ୍ର କହନ୍ତି, କାମନାର ଗ୍ରନ୍ଥି ଛିନ୍ନ କରି, "ଚତୁଃ ଯମ" ଦ୍ୱାରା ସଂବୃତ ହୋଇ ନିଗନ୍ଥ ମୋକ୍ଷ ଲାଭ କରେ ।"

ଶ୍ରୋତୃମଣ୍ଡଳୀ ମଧ୍ୟରେ, ମଣ୍ଡପ ତଳେ ଠିଆ ହୋଇ ଉପକ ପଚାରିଲେ—କେଉଁଟା ସତ୍ୟ କଶୀ ? ଜୀବନ ନା ମୋକ୍ଷ ?"

କଶୀ ଅର୍ଦ୍ଧନିମୀଳିତ ଦୁଇ ଆଖି ମେଲାଇ ପ୍ରଶ୍ନ କର୍ତ୍ତାଙ୍କ ଆଡ଼େ ଚାହିଁ ଦେଖିଲେ—ମଣ୍ଡପ ତଳେ ଅଦୂରରେ ଛିଡ଼ା ହୋଇଛନ୍ତି ସୁବିଦିତ, ଶ୍ରମଣ ଶ୍ରେଷ୍ଠ, ବେଲଥୀ ପୁତ୍ରଙ୍କ ଶିଷ୍ୟ ଏକଦଣ୍ଡୀ ଉପକ ।

କଶୀ ପରିହାସ ଜର୍ଜରିତ କଣ୍ଠରେ କହିଲେ—"ଏ ଯେ ଶ୍ରମଣ ଶ୍ରେଷ୍ଠ ଉପକ, ବିଦେହର ରୂପଜୀବ୍ୟା ମଧୁ ମଞ୍ଜରୀର କେଳିମନ୍ଦିରରେ ଏହାଙ୍କର ଦଣ୍ଡ, କମଣ୍ଡଳୁ ଓ ଚୀବର ଏବେ ଶୁଖା ପଡ଼ିଛି ।"

ସମବେତ ଶ୍ରୋତୃ ମଣ୍ଡଳୀର ଅଟ୍ଟହାସରେ ଆଜୀବ୍ୟ ସଭାପ୍ରାଙ୍ଗଣ ମୁଖରିତ ହୋଇ ଉଠିଲା ।

ଉପକ ଏଥିରେ ବିଚଳିତ ନ ହୋଇ କହିଲେ—"ଚତୁଃ ଯମ—ସମ୍ବୃତ କଶୀ ତା' ହେଲେ ବିଦେହର ରୂପଜୀବ୍ୟା ଗଣିକା ମଧୁ ମଞ୍ଜରୀର କେଳି ମନ୍ଦିର ସହିତ ଅପରିଚିତ ନୁହନ୍ତି ।"

ଉପକଙ୍କ ଏହି ଦୃଢ଼ୋକ୍ତିରେ ଶ୍ରୋତୃ ମଣ୍ଡଳୀର ଅଟ୍ଟହାସ ଦ୍ୱିଗୁଣିତ ହୋଇଗଲା । ପୌଢ଼, ମଣ୍ଡିତ, ଅକେଳକ କଣା ଉପକଙ୍କ ଏ ଉକ୍ତିରେ ଆହତ ହୋଇ, ନୀରବରେ ତଳକୁ ଚାହିଁ ରହିଲେ ।

କଣା କହିଲା—"ବହୁବର୍ଷ ତଳେ ଗୃହର୍ମାସ୍ୟା ପାଇଁ ମୁଁ ବଇଦେହର ଆଜୀବକଙ୍କ ସଙ୍ଘରେ ରହିଥିଲି । ଥରେ ରୂପଜୀବୀ ମଧୁମଞ୍ଜରୀ ଭିକ୍ଷା ଦେବା ପାଇଁ ମୋତେ ଆମନ୍ତ୍ରଣ କରି, ପୁନର୍ଜନ୍ମ ଅଛି କି ନାହିଁ ବୋଲି ପଚାରିଥିଲା । ସେତେବେଳେ ମଧୁମଞ୍ଜରୀର ଭବନରେ ଘରତ୍ୟକ୍ତ ଦଣ୍ଡ କମଣ୍ଡଳୁ ଓ ଚୀବର ଦେଖି, ତାହା କାହାର ବୋଲି ପଚାରିଥିଲି । ତାହା ସନ୍ନ୍ୟସ୍ତ ବେଲଥୀ ପୁତ୍ରଙ୍କ ଶିଷ୍ୟଶିରୋମଣି ଉପକଙ୍କର ଦଣ୍ଡ, ଚୀବର ଓ କମଣ୍ଡଳୁ ବୋଲି ସେତେବେଳେ ଶୁଣିଥିଲି ।"

ଆଜୀବକମାନଙ୍କ ପ୍ରତି ନାନା କଟୂକ୍ତି ଓ ପରିହାସ କୋଳାହଳ ମଧ୍ୟରେ ଶ୍ରୋତାମାନଙ୍କର ସଭା ଭାଙ୍ଗିଗଲା । ଆଜୀବ୍ୟ ଦଳର ଶ୍ରମଣମାନଙ୍କ ମଧ୍ୟରେ କେହି ଉପକଙ୍କ ପକ୍ଷ ଆଉ କେହି ବା କଣାଙ୍କ ପକ୍ଷ ନେଇ ନିଜ ନିଜ ମଧ୍ୟରେ କଳହ ଆରମ୍ଭ କରିଦେଲେ । କିଛି ସମୟରେ ଆଜୀବ୍ୟସଙ୍ଘ ନିର୍ଜନ ଓ ନିଃଶବ୍ଦ ହୋଇଗଲା । ଆଜୀବକମାନଙ୍କର ବିଧାନ ଅନୁସାରେ, ଦିନସାରା ରୌଦ୍ରଦଗ୍ଧ ଆକାଶ ତଳେ ସେମାନେ ବାହାରେ ଶୟନ କରନ୍ତି । ମାତ୍ର ରାତ୍ରି ହେଲେ ସେମାନଙ୍କୁ ନିଜ ନିଜ, ରୁଦ୍ଧ ଅନ୍ଧକାର ପ୍ରକୋଷ୍ଠର ପାଷାଣ ଶଯ୍ୟା ଉପରେ ଶୟନ କରିବା ପାଇଁ ପଡ଼େ । ଉପକ ଗୋଟିଏ ଶୂନ୍ୟ ପ୍ରକୋଷ୍ଠ ଦେଖି, ତା ଭିତରକୁ ଚାଲି ଗଲେ ।

ବାହାରେ ଜ୍ୟୋତ୍ସ୍ନା ପୁଲକିତା ରାତ୍ରି ପ୍ରଗଳ୍ଭମାଣା ବିଳାସିନୀ ପରି, ସୁପ୍ତିମୂର୍ଚ୍ଛିତ ଆକାଶରେ ଚନ୍ଦ୍ରମୁକୁରକୁ ଚାହିଁ ସେପରି ଶୃଙ୍ଗାର କରୁଥିଲା ।

ନିଶାର୍ଦ୍ଧ...

ଚମ୍ପାର ରାଜ ପଥରେ ପ୍ରହରୀ ରାତ୍ରିର ଦ୍ୱିତୀୟ ଯାମ ଘୋଷଣା କରିଗଲା । ଉପକଙ୍କ ଆଖିରେ ନିଦ ନାହିଁ । ଉପକ ପ୍ରକୋଷ୍ଠର ପାଷାଣ ଚତ୍ୱର ଉପରେ ବସି, କେତୋଟି ମୁହୂର୍ତ୍ତ ବାହାରେ ଜ୍ୟୋତ୍ସ୍ନାଲୋକିତ ପ୍ରାଙ୍ଗଣ ଆଡ଼େ ଚାହିଁଲେ । ତା'ପରେ ପ୍ରକୋଷ୍ଠର ଗୋଟିଏ କୋଣରୁ ନିଜ ଦଣ୍ଡ ଅଣି ହାତରେ ଧରି, ବାହାରକୁ ଚାଲି ଆସିଲେ ।

ଅଳ୍ପ ଦୂରରେ କଣାଙ୍କର ପ୍ରକୋଷ୍ଠ ।

ଉପକ କଣାଙ୍କର ପ୍ରକୋଷ୍ଠ ପାଖରେ ହୋଇ ଅନୁଚ୍ଚ କଣ୍ଠରେ କଣାଙ୍କର ନାମ ଧରି ଡାକିଲେ ।

କିଛି ସମୟ ପରେ, କଣା ନିଦ୍ରାଳୁର କଣ୍ଠରେ ପଚାରିଲେ—"କିଏ ?"

ଉପକ କହିଲେ – "ମୁଁ ଉପକ ।"

କଣା ପଚାରିଲେ "ଉପକ ! ରାତ୍ରି ବର୍ତ୍ତମାନ କେଉଁ ପ୍ରହରରେ ? ତୁମେ ଏ ନିଶାଭାଗରେ କ'ଣ କରୁଛ ?"

ଉପକ କହିଲେ—ତୁମକୁ କେତେକ କଥା ପଚାରିବା ପାଇଁ ଅଛି କଣା !

କଣା କହିଲେ—"ଭିତରକୁ ଆସ ।"

ଉପକ କହିଲେ—ବାହାରେ, ସୁନ୍ଦର ଜ୍ୟୋତ୍ସ୍ନାଲୋକିତ ରାତ୍ରି । ଏ ପାଷାଣ ଅନ୍ଧକୂପ ମଧ୍ୟରେ ନୁହେଁ; ଉଦ୍ୟାନକୁ ଆସ ।

କଣା ସମ୍ମୋହିତ ପରି ଉପକଙ୍କ ପଛେ ପଛେ ଆସିଲେ । ଉଦ୍ୟାନର ଏକ ନିଭୃତ ଅଶୋକ ବୃକ୍ଷ ତଳେ ଅକ୍ଷୋଳକ ଲଣ୍ଠିତ କଣା ଓ ଜଟାଜୁଟବୃତ କୌପୀନ ପରିହିତ ଉପକ, ଆସି ବସିଲେ । ଅପୁଷ୍ପିତ ଅଶୋକ ଯେପରି କେଉଁ ଶୋଭନାର ହାଲନ୍ତକ, ନୂପୁର ବାମ ଚରଣରୁ ପଦାଘାତର ଅତୃପ୍ତ ଦୋହଦ ଧରି ଠିଆ ହୋଇ ରହିଛି । ଉପକ କିପରି କଥା ଆରମ୍ଭ କରିବେ, ବୁଝି ନ ପାରି କିଂକର୍ତ୍ତବ୍ୟବିମୂଢ଼ ପରି ଅଶୋକ ଜ୍ୟୋତ୍ସ୍ନା ଆଡ଼େ ଚାହିଁ ରହିଲେ ।

କଣା କହିଲେ—"ମୋତେ କ୍ଷମା କରିବ ଉପକ, ମୁଁ ତୁମକୁ ଆଜି ଅଯଥା ଲାଞ୍ଛିତ କରିଅଛି ।"

ଉପକ ପଚାରିଲେ "ମଧୁମଣ୍ଡୀ ହତ୍ୟା ଭଳି ପଟ୍ଟରର କାହାଣୀ କହିବ ମୋତେ କଣା ?"

କଣା କହିଲେ—"ମଧୁମଣ୍ଡୀ ହତ୍ୟା ମୋର ଜୀବନର ଏକ ଦୁର୍ଘଟଣା । ଆଜକୁ ବହୁବର୍ଷ ତଳେ......"

କଣା ମୁହୂର୍ତ୍ତିକ ପାଇଁ ରହିଗଲେ ।

ବହୁବର୍ଷ ତଳେ......

ବୈଶାଳୀରେ ସେ ଦିନ ବସନ୍ତୋତ୍ସବ । ବୈଶାଳୀର ନାଟ୍ୟଶାଳାକୁ ସେ ଦିନ ମଧୁମଣ୍ଡୀ ଆସିଥିଲା ନୃତ୍ୟାମୋଦରେ ବସନ୍ତୋତ୍ସବର ସନ୍ଧ୍ୟାକୁ ଆମୋଦିତ କରିବା ପାଇଁ । କଣା, ରାଜପଥରେ ଠିଆ ହୋଇ ବାତାୟନ ଦ୍ୱାରରେ ସେ' ଦିନ ଦେଖିଥିଲେ, ମଦାବେଶ ବିହ୍ୱଳ ମଧୁମଣ୍ଡୀର ନୃତ୍ୟ । କାଞ୍ଚୀପୀଡ଼ିତ ଗୁରୁ ନିତମ୍ବ ଉପରେ ନ୍ୟସ୍ତ, ବାମ ହସ୍ତ ସନ୍ଧିରେ ଗ୍ରଥିତ କନକ ବଳୟ, କୁଟ୍ଟିମ ଉପରେ ଲୁଳିତ କୁସୁମ ଉପରେ ପାଦାଙ୍ଗୁଷ୍ଠିର ନମ୍ର ସଞ୍ଚାରଣ, ବିହ୍ୱଳ ଦୁଇ ଦର୍ଘାକ୍ଷିରେ ସୁନ୍ଦର ଆବେଶ...କଣାଙ୍କୁ ଆକୁଳ କରି ଦେଇଥିଲା, ସ୍ୱୀକାର ନ କଲେ କଣା ମିଥ୍ୟାଚାରୀ ହେବେ । ପୁଣି ନୃତ୍ୟ ଆରମ୍ଭ ହେବ । ମୁରଜର ମନ୍ଦ୍ର ଧ୍ୱନିରେ ନାଟ୍ୟଶାଳା ପୁଣି ମୁଖରିତ ହୋଇ ଉଠିଲା । କଣା, ବ୍ୟାଧର ଶରାଘାତରୁ ତ୍ରାଣ ରକ୍ଷା କରିବା ପାଇଁ ତ୍ରସ୍ତ ଶଶକ ପରି ସେଠୁ ପଳାୟନ କଲେ । ମାତ୍ର ସେହି ଦିନୁ ଗୃହହାସିନୀ ମଧୁମଣ୍ଡୀର ଚିନ୍ତା କଣାଙ୍କୁ ଅଧୀର ଓ ଅନବସ୍ଥିତ କରିଦେଲା । ମଧୁମଣ୍ଡୀକୁ ରୂପଜୀବୀ ନର୍ତ୍ତକୀର କାମନା କଳୁଷିତ ଜୀବନରୁ ମୁକ୍ତ ଦେଇ ନିର୍ବାଣର ଦୀକ୍ଷା ଦେବାପାଇଁ କଣା ମନେ ମନେ ବହୁ ଉପାୟ ଚିନ୍ତା କଲେ ।

କଣା କହିଲେ, "ସେ ଦିନ କୋଜାଗରୀ ପୂର୍ଣ୍ଣିମାର ସନ୍ଧ୍ୟା । ମଧୁମଣ୍ଡୀର ଭବନ ସମ୍ମୁଖରେ, ରାଜପଥର ଏକ ପାର୍ଶ୍ୱରେ ଯାଇଁ ଯାଉଁ, ଅଛ ଥରେ ମଧୁମଣ୍ଡୀକୁ ଦେଖି

ଭଙ୍ଗୀରେ ଦେଖିବା ପାଇଁ ମନ ମୋର ଆକୁଳ ହୋଇ ଉଠୁଥିଲା, ନ କହିଲେ ମିଥ୍ୟାବାଦୀ ହେବି । ମରଣଶୀଳ ଦେହ ଏତେ ସୁନ୍ଦର, କାହିଁକି ଓ କପରି ହୋଇପାରେ ଚିନ୍ତା କରି ଆସୁଥିବା ବେଳେ ଭବନ ଦ୍ୱାରରେ ମଧୁମନ୍ତ୍ରାଙ୍କୁ ଦେଖି ମୁହୂର୍ତ୍ତିକ ପାଇଁ ମୁଁ ରହିଥିଲି ।

ଉପକ ପଚାରିଲେ—"ତା' ପରେ ?"

କଣା କହିଲେ—"ତ୍ରିଭୁବନ ବିମୋହିନୀ ମଧୁମନ୍ତ୍ରାର ଦେହ ନୃତ୍ୟାଭିରାମ ଭଙ୍ଗୀ, କଙ୍କଣ ଓ ବଳୟ ଶୋଭିତ ବାମହସ୍ତ ଦେହପରି ଟେରୁ ନିତମ୍ବ ଉପରେ ନ୍ୟସ୍ତ ହୋଇଥିଲା । ଶ୍ୟାମା ଲତାପରି ଦକ୍ଷିଣ ହସ୍ତ, ତଳକୁ ଲମ୍ବି ଆସିଥିଲା । ମୁଁ ମନେ ମନେ ଭାବୁଥିଲି କିଏ ସୁନ୍ଦର—ଶରଦଚନ୍ଦ୍ରକାନ୍ତ ମଧୁମନ୍ତ୍ରା ନା କୋଜାଗରୀ ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ? ମଧୁମନ୍ତ୍ରା ମୋତେ ଆମନ୍ତ୍ରଣ କରି କହିଲା—"ଭିତରେ ପଦାର୍ପଣ କରନ୍ତୁ ଶ୍ରମଣ ।"

ଉପକ ପଚାରିଲେ—"ତା' ପରେ ?"

କଣା କହିଲେ—"ତା ପରର କାହାଣୀ ବହୁ ସଂଯମ ଓ ସାଧନା ମଧ୍ୟରେ ମୁଁ ବିସ୍ମୃତ ହେବା ପାଇଁ ଚାହିଁଛି, ମାତ୍ର ପାରି ନାହିଁ । ମଧୁମନ୍ତ୍ରାର କେଳି ମନ୍ଦିରକୁ ଯେ ଦିନ ଆସିଥିଲେ ବିଦେହର ଶ୍ରେଷ୍ଠୀ ମଲ୍ଲକେଶୀ, ଏକ ସହସ୍ର ସ୍ୱର୍ଣ୍ଣ ମୁଦ୍ରାର ମୂଲ୍ୟ ଦେଇ । ମାତ୍ର ଉପୋସଥର ଛଳନା କରି ମଧୁମନ୍ତ୍ରା ତାଙ୍କୁ ପ୍ରତ୍ୟାଖ୍ୟାନ କରିଦେଲା । ମଲ୍ଲକେଶୀ ବିଦାୟ ନେବା ପରେ, ମଧୁମନ୍ତ୍ରାର ଆମନ୍ତ୍ରଣରେ ମୁଁ ଆସିଲି କେଳିମନ୍ଦିର ଭିତରକୁ । ସେ ଦିନ ମଧୁମନ୍ତ୍ରାର କି ଯେ ବେଶ ରଚନା ! ବିରଳ ନୀଳାଂଶୁକ ତଳେ ମଧୁମନ୍ତ୍ରାର ନଗ୍ନ ଦେହରେ କି ଯେ ରୂପଶ୍ରୀ ! ଅଳକ୍ତ ସିକ୍ତ ଦୁଇ ଅଧରରେ କି ଯେ ତୃଷ୍ଣା ! ମୁଁ ସଂଯମ ହରାଇ, ଆତ୍ମବିସ୍ମୃତ ହୋଇ ପଡ଼ିଥିଲି ଉପକ ।"

ଉପକ ପଚାରିଲେ—"ତା' ପରେ ?"

କଣା କହିଲେ—"ଦଳିତ କୁସୁମଶଯ୍ୟା ଉପରେ ମଧୁମନ୍ତ୍ରା ଦେହ ନ୍ୟସ୍ତ କରି, ଅଙ୍ଗାବରଣ ଈଷତ୍ ଅନାବୃତ କରି, ସ୍ମିତ ହସି ମୋତେ କହିଲା—ଏହି ଶଯ୍ୟାରେ ଉପବେଶନ କରନ୍ତୁ ଶ୍ରମଣ ।"

ଉପକର ଆଖି ଆଗରେ ସେତେବେଳେ ଭାସି ଉଠୁଥିଲା ଗୋଟିଏ ସୁଗ ତଳର ଏକ ସନ୍ଧ୍ୟାରେ, ମଧୁମନ୍ତ୍ରାର କେଳି ମନ୍ଦିରରେ ଅନ୍ୟ ଗୋଟିଏ ଦୃଶ୍ୟ ।

କଣା କହିଲେ—"ତା ପରେ ମଧୁମନ୍ତ୍ରା କଟୀରୁ କାଞ୍ଚିଦୁକୂଳ ଧୀରେ ଧୀରେ ଶିଥିଳ କରି ପରିଚାରିକାମାନଙ୍କୁ ନାମ ଧରି ଡାକିଲା, ଆଲୋ କାମଦା, କାମନନ୍ଦିନୀ ପରଭୃତିକା କିଏ ଅଛ ? କେହି ଶୁଣିଲେ ନାହିଁ । ତା' ପରେ···"

ଉପକ ପଚାରିଲେ—"ମଧୁମନ୍ତ୍ରା ସ୍ୱ ହସ୍ତରେ ତୁମକୁ ଆସବ ଅର୍ପଣ କରିଥିଲା କଣା ?"

କଣା କହିଲେ—"ତମକୁ କହୁଛି ତ ଉପକ, ସେ ଦିନର ସନ୍ଧ୍ୟା ମୋ ଜୀବନରେ ଏକ କଳଙ୍କ । ମଧୁମତ୍ତାର ଅର୍ପିତ ଆସବ, ସେ ଦିନ ମୁଁ ଆକଣ୍ଠ ପାନ କରିଥିଲି, ମଧୁମତ୍ତାର ଲୋଭନୀୟ ରୂପଶ୍ରୀ, ସ୍ଫୁରିତ ଜବାଧର ଆଡ଼େ ଗୃଧ୍ନି ଗୃଧ୍ନି ।"

ଉପକ ପଚାରିଲେ—"ତା' ପରେ ?"

କଣା କହିଲେ—"ତା ପରେ ମୁଁ ଆତ୍ମସ୍ଥ ହୋଇ କହିଲି ଯୌବନ ପୁଷ୍ଟ ଏ ଦେହ ନାଗକନ୍ୟାର, ଏ ସବୁ କ୍ଷଣସ୍ଥାୟୀ ମଧୁମତ୍ତା ।"

ମଧୁମତ୍ତା ତହୁଁ ମୋ ଆଡ଼େ ଗୃଧ୍ନି ଈଷତ୍ ହସି କହିଲା, "କାମଦା, କାମନନ୍ଦା, ପରଭୃତକା କେହି ନାହାନ୍ତି । ମୋର ବକ୍ଷରେ ଚେଳ ଦୁକୂଳର କଠୋର ବନ୍ଧନ, କଷ୍ଟ ପୀଡ଼ା ଦେଲଣି । ଟିକଏ ଶିଥିଳ କରିଦେଇ ପାରିବ ଶ୍ରମଣ ?"

ମୁଗ୍ଧ ପରି ମୁଁ ମଧୁମତ୍ତାର ବକ୍ଷରୁ ଚେଳପାଶ ଶିଥିଳ କରୁ କରୁ ଆତ୍ମବିସ୍ମୃତ ହୋଇ ପଡ଼ିଲି । ଚେଳପାଶ ଶିଥିଳ କରୁ କରୁ, ଚେଳର ବନ୍ଧନ ଖସି ତଳେ ପଡ଼ିଗଲା । ମଧୁମତ୍ତା ବରେଲ ଅବଗୁଣ୍ଠନରେ ଉଦ୍ଭିନ୍ନ କମଳକୋରକ ପରି ବକ୍ଷୋଜକୁ ଆବୃତ କରିବାର ଉଦ୍ୟମରେ ତାହାକୁ ଅଧିକ ଅନାବୃତ କରି ପଚାରିଲେ—"ନଳକୋଣ୍ଡା ଠାରୁ ବେଶୀ ମୂଲ୍ୟ ଦେଇ ପାରିବ ଶ୍ରମଣ ?"

କିଂକର୍ତ୍ତବ୍ୟବିମୂଢ଼ ପରି ମୁଁ କହିଲି—"ଭିକ୍ଷାଜୀବୀ ଶ୍ରମଣ, ସ୍ୱର୍ଣ୍ଣମୁଦ୍ରା କେଉଁଠୁ ପାଇବ ମଧୁମତ୍ତା ?"

ମଧୁମତ୍ତା ସ୍ମିତ ହସି କହିଲା—"ସ୍ୱର୍ଣ୍ଣ ମୁଦ୍ରାରେ ମୋର ପ୍ରୟୋଜନ ନାହିଁ ଶ୍ରମଣ । ବିଦେହ ରାଜକୋଷର ଦୈନିକ ଆୟ, ମୋର ଏକ ରାତ୍ରିର ଆୟର ଅର୍ଦ୍ଧାଂଶ । ମୁଁ ଚାହେଁ ଗୋଟିଏ ପ୍ରଶ୍ନର ଉତ୍ତର ।"

ମୁଁ ବିସ୍ମୟାବିଷ୍ଟ କଣ୍ଠରେ ପଚାରିଲି—"କି ପ୍ରଶ୍ନ ମଧୁମତ୍ତା ?"

ଉପକ କହିଲେ, "ପୁନର୍ଜନ୍ମ ଅଛି କି ନାହିଁ ?"

କଣା କହିଲେ—"ତୁମକୁ ହୁଏତ ଠିକ୍ ସେହି ପ୍ରଶ୍ନ ପଚାରିଥିଲା ମଧୁମତ୍ତା ।"

ଉପକ ପଚାରିଲେ—"କିନ୍ତୁ ତୁମେ କଅଣ ଉତ୍ତର ଦେଲ କଣା ?"

କଣା କହିଲେ—"ମୁଁ କହିଲି ଜନ୍ମ ମିଥ୍ୟା, ପୁନର୍ଜନ୍ମ କଳ୍ପନା । ପୁନର୍ଜନ୍ମରେ ତୁମର କି ପ୍ରୟୋଜନ ମଧୁମତ୍ତା ?"

ମଧୁମତ୍ତା କହିଲା—"ଅନ୍ୟର ପାଦତଳେ କେବଳ ନୈବେଦ୍ୟ ହେବାହିଁ କ'ଣ କୁସୁମର ଭବିତବ୍ୟ ? ଏ ଜୀବନରେ ଯେତିକି ବ୍ୟର୍ଥ ସ୍ୱପ୍ନ, କ'ଣ ଅନ୍ୟ ଜୀବନରେ ସଫଳ ହେବ ନାହିଁ ?"

ମଧୁମତ୍ତାର ମଦବିହ୍ୱଳ ଦୁଇ ଆଖି, ବାଷ୍ପାକୁଳ ହୋଇ ଉଠିଲା ।

ମୁଁ ଅସହାୟ ପରି କହିଲି—"ପୁନର୍ଜନ୍ମ ଅଛି । ପୁନର୍ଜନ୍ମ ନାହିଁ ।'

ମଧୁମଞ୍ଜରୀ ଆକୁଳ କଣ୍ଠରେ ପଚାରିଲା…"ତା ହେଲେ ପୁନର୍ଜନ୍ମ କ'ଣ ଅଛି ଶ୍ରମଣ ?"

ମୁଁ କହିଲି—"କିନ୍ତୁ ତୁମେ ସେହି ପୁନର୍ଜନ୍ମରେ ଅମଳିନ କମଳର ଏହି ରୂପଶ୍ରୀ ଧରି ପୁଣି ଜନ୍ମ ଲଭ କରିବ ବୋଲି କି ସ୍ଥିରତା ଅଛି ମଧୁମଞ୍ଜରୀ ?"

ମଧୁମଞ୍ଜରୀ, ତା' ପରେ ଅନାବୃତ ଦେହର ସକଳ ଜଡ଼ତା ପରିହାର କରି, ମୋତେ ନିବିଡ଼ ଆଲିଙ୍ଗନ ଭିତରେ ଗ୍ରହି ଧରି, ସୁରଭିସିକ୍ତ ନିଃଶ୍ୱାସରେ ମୋର କଣ୍ଠରୋଧ କରି, ମୋତେ କହିଲା—"ମୋତେ ପୁନର୍ଜନ୍ମ ଦିଅ ଶ୍ରମଣ। ମୁଁ ଚାହେଁ ଏହି ମରଣଶୀଳ ଦେହର ରୂପଶ୍ରୀ ଧରି, ପୁଣି ଥରେ ନବ ଜନ୍ମ ପାଇବା ପାଇଁ ।"

ଶ୍ରମଣ କହିଲେ—"ତା ପରେ ମୋତେ ଆଉ କିଛି ଜିଜ୍ଞାସା କର ନାହିଁ ଉପଲ । ସେହିଦିନୁ ମୁଁ ଆଉ ବିଦେହକୁ ଫେରି ନାହିଁ, ସେ ଦିନର କଳଙ୍କର କାଳିମା ନିଭାଇବା ପାଇଁ କଠୋର ବ୍ରତ ଓ ତପ ଆଚରଣ କରୁଛି । କିନ୍ତୁ ତୁମେ କହି ପାରିବ ଉପଲ, କେଉଁ କାମନାରେ ମଧୁମଞ୍ଜରୀ ଚାହିଁଥିଲା ପୁନର୍ଜନ୍ମ ?"

ଉପଲ ଧୀରେ ଧୀରେ ମଳିନ ପଡ଼ି ଆସୁଥିବା ଜ୍ୟୋତ୍ସ୍ନାଲୋକ ଆଡ଼େ ଚାହିଁ କହିଲେ—"କିଏ ଜାଣେ ?"

ଶ୍ରମଣ କହିଲେ—"ଐଶ୍ୱର୍ଯ୍ୟ ଓ ପ୍ରବୃତ୍ତିର କାରାଗାର ମଧ୍ୟରେ ଆଜୀବନ ବନ୍ଦିନୀ ରହି ରହି ମଧୁମଞ୍ଜରୀ ହୁଏ ତ କାମନା କରୁଥିଲା କେଉଁ ଏକ ନାମହୀନ ଜନପଦର ଅଖ୍ୟାତ, ଅଜ୍ଞାତ କୋଣରେ କେଉଁ ଏକ ସାମାନ୍ୟ ଗୃହସ୍ଥଳୀର ପରିଚ୍ଛନ୍ନ, ଶୁଭ୍ର ଅଙ୍ଗନ ।"

ଉପଲ ପଚାରିଲେ—"ପୁନର୍ଜନ୍ମ ଅଛି ଶ୍ରମଣ ? ମୁଁ ମଧ୍ୟ ଚାହେଁ ପୁନର୍ଜନ୍ମ ।"

ଶ୍ରମଣ କହିଲେ—"କିନ୍ତୁ ତୁମେ କ'ଣ ନିର୍ବାଣ ଅଭିଳାଷୀ ନୁହଁ ଉପଲ ? ଶ୍ରମଣର ପୁଣି ପୁନର୍ଜନ୍ମ ପାଇଁ ଆକାଂକ୍ଷା ?"

ଉପଲ କହିଲେ—"ତୁମେ ଭ୍ରାନ୍ତ ଶ୍ରମଣ ! ଜୀବନ ଯଦି ମୋହଗ୍ରସ୍ତ ମାୟା, ନିର୍ବାଣ ବୁଦ୍ଧିଗ୍ରସ୍ତ ମନର ପରିକଳ୍ପନା ! ମୁଁ ମଧ୍ୟ ଚାହେଁ ପୁନର୍ଜନ୍ମ । … କିନ୍ତୁ ପୁନର୍ଜନ୍ମ ନାହିଁ । ପୁନର୍ଜନ୍ମ ନାହିଁ ! ଏଇ ଶିଶିରସିକ୍ତ ପ୍ରିୟଙ୍ଗୁବୀଥିକାର ପତ୍ର ଶୀର୍ଷରେ, ଏ ଯେଉଁ ରାତ୍ରି ବିଦାୟ ନେଉଛି, ସେ ଆଉ ଫେରିବ ନାହିଁ । ତୁମେ ମିଥ୍ୟାଚାରୀ ! ତୁମେ ଭଣ୍ଡ ! ମୁଗ୍‌ଧା ମଧୁମଞ୍ଜରୀକୁ ତୁମେ ମିଥ୍ୟା କହିଛ !"

ଉପଲ ଝଡ଼ ପରି ବେଗରେ ଉଠି ଚାଲିଗଲେ ।

ପଶ୍ଚିମ ଦିଗ୍‌ବଳୟରେ ଜ୍ୟୋତ୍ସ୍ନାଲୋକ ଧୀରେ ଧୀରେ ନିଭି ଆସୁଥିଲା । ଲଜ୍ୟାବତୀ ଉଷାର ରାଗରଞ୍ଜିତ କପୋଳ ତଳରେ ଧୀରେ ଧୀରେ ପଡ଼ି ଆସୁଥିଲା କୁଙ୍କୁମଟିକାର

ଅବଗୁଣ୍ଠନ । ଅଶୋକ ବୃକ୍ଷର ପତ୍ର ଗହଳିରେ ପ୍ରଭାତର ପକ୍ଷୀମାନଙ୍କର କଣ୍ଠରେ ଫୁଟି ଉଠିଥିଲା ବୈତାଳିକାର ଗାନ ।

ଜଣା ମୂର୍ତ୍ତି ପରି ଚାହିଁ ଦେଉଥିଲେ···ଉପକ କ୍ଷିପ୍ର ପଦ ଦଣ୍ଡ, କମଣ୍ଡଳୁ ଉଦ୍ୟାନରେ ଫିଙ୍ଗି ଦେଇ, ଚୀବରରେ ଦେହ ଆବରଣ କରି, ଆଜୀବ ସଂହତ ଛାଡ଼ି ବାହାରି ଯାଉଥିଲେ, ଚମ୍ପାର ରାଜପଥରେ । ※

---

[ଏହି ଗଳ୍ପଟି ପ୍ରଥମେ "ମଧୁମଞ୍ଜରୀର ଅଭିସାର" ନାମରେ ମାସିକ 'ଝଙ୍କାର' ଅଷ୍ଟମ ବର୍ଷ, ଷଷ୍ଠ ସଂଖ୍ୟା, କନ୍ୟା ୧୩୬୩, (ଇଂରାଜୀ ୧୯୫୬ ମସିହା ସେପ୍ଟେମ୍ବର)ରେ ପ୍ରକାଶିତ ହୋଇଥିଲା ।]

# ଅନ୍ଧାରୁଆ

—ସଚ୍ଚିଦାନନ୍ଦ ରାଉତରାୟ

ବେକରେ ହାଡ଼ ବାନ୍ଧିଲା । ଦାନ୍ତରେ ଚିରଣି ଦେଲା । ଜିଭ ଥାଉ ଥାଉ ଖନା ହୋଇ ପଡ଼ିଲା ପଧାନ ବାରଦୁଆର ଶୁଣ୍ଢି ପିଣ୍ଡା ତଳ ଖପରା ଫାଟିଭଳି ।

କଳା ମିଚ ମିଚ ଅନ୍ଧାର ମଝିରେ ତା'ର ଶଣ୍ଢା ଶଣ୍ଢା କାଳିଆ ବାହା ଦ'ଟାକୁ ଉପରକୁ ଟେକି ଗାଁ ମୁଣ୍ଡ ଦୋକାନ ପାଖରେ ବସି ପଡ଼ିଲା ଗଅଁ ଗଅଁ ହୋଇ ସମସ୍ତଙ୍କି ମନକଥା କହିବାକୁ ଚେଷ୍ଟା କରେ, ନାନା ଅକଲ୍ୟ କାଢ଼ି ଗହକମାନଙ୍କ ଅଣ୍ଟାରୁ ପଇସାଏ ଅଧଲାଏ ଖସେଇବ ବୋଲି ବାହାରେ । କିଏ ହସେ, କିଏ ବା ମୁହଁ ମୋଡ଼ି ଚାଲିଯାଏ । ଅଧିକାଂଶ ତା ଆଣ୍ଡିକ ଦାନ୍ତ ଦ'ଧାଡ଼ିକ ଦେଖାଇ ଖିଁ ଖିଁ ହୋଇ ହସନ୍ତି—ଖତେଇ ହୁଅନ୍ତି । ପଡ଼ିଲା ମାଟିରେ ଗଡ଼େ, ବାଳମୁକୁଳା କରି ହାତ ଠାରି କେତେ କ'ଣ କହେ । ସମସ୍ତେ କହନ୍ତି, 'ପଦ୍ଧଜ କରୁଚି ।'

ତା'ର କାଳିଆ ଦେହ, କୋତରା ଲୁଗା, ଆବୁଡ଼ା ଖାବୁଡ଼ା ଓପାଶିଆ ଚୁଟିଟା କଳା ରାତି ରଙ୍ଗରେ ମିଶିଯାଇ ଜମା ବାରି ହୁଏ ନାହିଁ ।

ଅବୁଝ ପିଲାଏ ମା'ଠୁ ଖୀର ନ ଖାଇଲେ ମା'ମାନେ ଭୟ ଦେଖାଇ କହନ୍ତି—
"ହେଇ, ହେଇ ଅନ୍ଧାରୁଆ ଆଇଲାଣି । ଗାଁଆ ମୁଣ୍ଡେ ବସି ଜିଭ ହାଲୁ ହାଲୁ କରୁଚି ।"

ପଡ଼ିଲା ପୁରସ୍ତମ ଯିବ । ବାଟରେ ସଞ୍ଜ ହୋଇଗଲେ ସେ ପାଖ ଗାଁରେ ରାତିକ ପାଇଁ ଥାକିଯାଏ । ହଅଁ ବୁଡ଼ିଯିବା ଆଗରୁ କ'ଣ ଦ'ଟା ପାଟିରେ ପକାଇ ଦେଇ କାହା ପିଣ୍ଡାରେ କୁଟା ଗୋଛାଏ ପାରି ଚଟିକୋତି ନମ୍ବେଇ ପଡ଼ିଯାଏ । ସେ ଯେଉଁ ଗାଁକୁ ଯାଏ—ସେ ଗାଁରେ ଅନ୍ଧାରୁଆ ଆଇଚି ବୋଲି ଚଉଆଡ଼େ ହୁରି ହକରା ପଡ଼ିଯାଏ । ତା' ପଛରେ ଟୋକାଏ ତାଳି ମାରି ଗୋଡ଼ାନ୍ତି—ବୁଲା କୁକୁରଗୁଡ଼ାକ ଘେଉ ଘେଉ ହୋଇ ତାକୁ ଝେଙ୍କାରମିଶନ୍ତି, ପୁଣି ଫୁଁ ଫୁଁ କରି ତା ଗୋଡ଼ ସନ୍ଧିରେ ପଶି ପରସ୍ତେ ତାକୁ ଶୁଙ୍ଘି ଯାନ୍ତି ।

ଅନ୍ଧାରୁଆ ବନପାଳ ବାଟ ଚାଲେ—ସଞ୍ଜବୁଡ଼େ ଭକ ମାରେ ।

ଅନ୍ଧାର ରାତି । ପେଟରେହେଲ ମାଇକିନିଆ ପରି କଳାମେଘର ତଳି ପେଟଟା ଓହଳି ପଡ଼ିଚି । ତା'ରି ଭିତରେ ଚାଲିଲା ଅନ୍ଧାର ପରି ବାଡ଼ି ଖଣ୍ଡିକ ଧରି ଅନ୍ଧାରୁଆ ଚାଲେ······

ବେଳେ ବେଳେ ଅନ୍ଧାରୁଆ ସ୍ୱପ୍ନ ଦେଖେ······

ପାଚିଲା ଧାନ କ୍ଷେତରେ ନହଡ଼ା ମାରୁଛି । ଭେଣ୍ଡିଆ ଭେଣ୍ଡିଆ ଧାନ ଗଛର ଅସୁମାରି ଯାକୁ ଛିଆରି ଭିତରେ ଡମ୍ପସାପ, କଙ୍କଡ଼ା ବଗୁ ଆଉ ତେଲୁଣୀ ପୋକଙ୍କ ମେଳା ବସିଛି । ଗୁଣିଆଡ଼ ଆଁଇଷିଣିଆ ଗନ୍ଧ ପାଇ ମାଛିଆ ଚିଲଗୁଡ଼ାକ ଚେକ ଚେକ ହୋଇ ଉପରେ ଉଡ଼ୁଛନ୍ତି ।

ସେଇ ମେଘ ଅନ୍ଧାର ଘଡ଼ିରେ ବିଲ ମଝିରେ ଗୋଟାଏ ଖଣ୍ଡ ଛିଆରି କରି ଅଟା ଖଣ୍ଡେ ଜାଲି ପହଲ ବିଲ ଜଗିଛି ।

ଧାନଗଛ ମୂଳରେ କୁଢ଼ା ହୋଇଛି କୁଢ଼କୁ କୁଢ଼ ଖତ । ଖତ ତ ନୁହ, ହାଡ଼ ।- ପହଲର ହାଡ଼—ତା ସ୍ତ୍ରୀ ଗେଲବୋଉର ହାଡ଼······ ।

ପହଲର ମନେ ପଡ଼େ କାଲିମରା ଜାଡ଼ଦିନେ କମିତି ବଡ଼ି ଅନ୍ଧାରୁ କେଉଟଘରର ଚୂଲ୍ହା ପାହାର ନ ଶୁଝୁଣୁ ଗେଲବୋଉ ଥୁରୁଥୁରୁ ହୋଇ ଟାଙ୍ଗି, ଟୋକରି, ତୋଟା, ପାଟ ବୁଲି ଗାଣ୍ଡୁଆକୁ ଗାଣ୍ଡୁଆ ଗୋବର ବୋହି ଆଣି ବାଡ଼ିପଟ ଖତଗଦାରେ ଜମା କରେ । ଆଉ ପହଲ ନିଜ ଦେହର ନହୁ ପାଣି କରି ସେଇ ଖତଗଦାକୁ କୁଟି ଓଦର ଓଦର କରି ନେଇ ବିଲରେ ଜମା କରିଦେଇ ଆସେ······ ।

ଖାଲି ସେତିକି ନୁହେଁ, ପଥର ପରି ଟାଣ ବିଲମାଟିରେ ନଙ୍ଗଳ କାଣ୍ଡ ଧରି ହଳ କଲାବେଳେ ଯେ କି କଷ୍ଟ, ତା ମନେ ପଡ଼ିଲାବେଳେ ପହଲର ହାଡ଼ ଭିତରେ କ'ଣ ହୋଇଯାଏ । ତାଳୁ ଉପରେ ନିଆଁ ପିଣ୍ଡୁଳା ପରି ସୂର୍ଯ୍ୟ—ତଳେ ତତଲା ମାଟି ଗୋଡ଼ ଦି'ଟା ସିଝି ଯାଇ ପରସ୍ତକୁ ପରସ୍ତ ଚମ ଉଖୁଡ଼ି ଯାଇଛି··· ।

ପହଲର ଏତେ ହାଡ଼ଭଙ୍ଗା ରକ୍ତମିଶା ମିହନ୍ତକୁ ସାର୍ଥକ କରି ଯଉଁଦିନ ପାଚିଲା କ୍ଷେତର ଅସୁମାରି ଧାନଗଛ ଗହଳରେ ମାଘ ପବନର ନୃତ୍ୟକାଳ ଖେଳ ଲାଗିଲା, ସେ ଦିନ ପହଲ ଜୀବନରେ ଏବେ ମଉଛୁବ । ସେ ସବୁ ଭୁଲି ଅନାଇଁ ରହିଲା ସେଇ ଦରପାଚିଲା କିଆରିଆଡ଼କୁ ।

ତା'ପରେ ଦିନେ—

ପହଲ ଖିବିଲା ।

କହିମିହିଅ ଅନ୍ଧାର । ମଲ୍ଲିମିର ମାଘ ହିମାଳ ପବନ କାଳିକା ଭିତର ଥରାଇ ଦେଇ ଯାଉଛି । ପହଲ ଖଡ଼ ଉପରେ ହେଁସ ଖଣ୍ଡେ ଘୋଡ଼ି ହୋଇ ପେଟେଇ ପଡ଼ି ଶୋଇ ବହୁଦୂରକୁ ଚନ୍ଦ୍ରପତ୍ର ନିଜଏ ଅଣି ନେଡ଼ିରେ ଦେଖୁଛି । ବିଲ ଭିତରେ ଗୁହୁରୁ ଗୁହୁରୁ ଶବ୍ଦ ଶୁଣାଗଲା । ପାଣି କାଦୁଅରେ ଧାନଗଛଗୁଡ଼ାକ ଚକଟି ଦେଇ ଗୋଟାଏ କିଏ ଗୁଣିଆଡ଼େ ମାଡ଼ି ଦେଇ ଯାଉଛି ଯିମିତି ଅବା । ପହଲ ଖିବିଲା ବାର୍ହା କି ଖାଲୁ ହେବ ପରା ।

ସେ ରାଗରେ ଖଣ୍ଡେ ମୂଳ ବାଉଁଶ ଧରି ଉଠିଲା ।

ଧାନଗଛର କାଳିଆ ଛୁଇ ଝର ପାଣିପିଆଗୁଡ଼ାକ ଝକ୍ ଝକ୍ ଦିଶୁଛି । ବହଳିଆ ମେଘ ଅନ୍ଧାର ଭିତରେ ପହ୍ଲାଦ ଆଖିରେ ପଡ଼ିଗଲା ଗୋଟାଏ କାଳିଆ ଜନ୍ତୁ । ନାକପୁଡ଼ାରେ ଅଣନିଃଶ୍ୱାସ ପବନ ବହୁଛି ।

ପହ୍ଲାଦ ତା ପଛେ ପଛେ ଗୋଡ଼ାଇଲା; ମାତ୍ର ସେଇ କାଳିଆ ଛୁଇଟା ଧାନଗଛ-ଗୁଡ଼ାକ କୁଦି ଚକଟି ଦୌଡ଼ି ଦୌଡ଼ି ଏଣେତେଣେ ପଳାଇଗଲା ।

ଗୋଟିଏ ଧାନଗଛ ନଷ୍ଟ ହୋଇଯିବା ସଙ୍ଗେ ସଙ୍ଗେ ପହ୍ଲାଦ ଦେହରୁ ପୋଷେ ରକ୍ତ ଶୁଖି ଯାଉଥିଲା ।

ଆଗରେ ଗୋଟାଏ ଖାଲ । ଜନ୍ତୁଟା ଆଉ ଯାଇ ପାରିଲା ନାହିଁ—ମୁହଁ ବୁଲାଇ ପଛକୁ ଫେରି ଆଇଲା । ପହ୍ଲାଦର ବାଉଁଶ ଠେଙ୍ଗା ଦୁମ୍ କରି ଯାଇ ବାଜିଲା ତା ତାଳୁରେ··· ଠିକ୍ ତା ତାଳୁ ଉପରେ ।

ପହ୍ଲାଦ ବିଜୁଳି ଆଲୁଅରେ ଦେଖି ପାରିଲା, ଦି'ଟା ବଡ଼ ବଡ଼ ମୁନିଆଁ ଶିଙ୍ଗ କେନା ମେଲାଇ ଉପରକୁ ବାହାରିଛି ।

ନାକ୍ରୁ ଫେଁକ, ଫଁ ଫଁ ନିଃଶ୍ୱାସ ଛାଡ଼ି ଜନ୍ତୁଟା ଖଳାଇଗଲା କାଉକାଛୁଆ ହୋଇ ଏକ ମୁହଁରେ—ପହ୍ଲାଦ ଶୁଣି ପାରିଲା, କିଛିଦୂର ଯାଇ ସେଇଟା ଗୋଟାଏ କଣ୍ଟାବୁଦାରେ ଲୁଷ୍କିକନା ପଡ଼ିଗଲା—ଆଉ ପଙ୍କ କାଦୁଅ ଭିତରୁ ଉଠି ପାରିଲା ନାହିଁ ଜମା ।

ପହ୍ଲାଦ ଘାଡ଼ିକି ଫେରି ଆସି ନିଶ୍ଚିନ୍ତରେ ଶୋଇଲା । ସେ ରାତିରେ ଶୋଇ ଶୋଇ ସ୍ୱପ୍ନ ଦେଖିଲା ଗୋଟାଏ ମସ୍ତବଡ଼ କାଳିଆ କଙ୍କାଳ, ସ୍ବରପଟେ ତାର କାଉ ବେଢ଼ିଛନ୍ତି । ଗୋଟାଏ ଖୋଳିଲା ଶାଗୁଣା ସେଇ ମଡ଼ାର ନାକ୍ଷମୁଣ୍ଡା ଭିତରେ ଥଣ୍ଟ ପୁରେଇଛି । ସେଇ ମଡ଼ାର ଚାରିଟାଯାକ ଖୁରାକୁ କିଏ ହାଣି ଦେଇଛି କୁରାଢ଼ିରେ ଚୋଟ ଚୋଟ କରି ।

ପୁରୋହିତେ ପୋଥି ଦେଖି କରି କହିଲେ, "ତ୍ରିନପାଦ ଦୋଷ ଲାଗିଛି । ପୁରପ୍ରଭୁ ଯାଇ ମୁକ୍ତିମଣ୍ଡପରେ ପ୍ରାୟଶ୍ଚିତ୍ତ ନ କଲେ ଏ ପାତକ ଛାଡ଼ିବ ନାହିଁ । ପ୍ରାୟଶ୍ଚିତ୍ତ ନ ହେବାଯାଏ ଦାନ୍ତରେ ଘରଣ ଦବ, କଥା କହିବ ନାହିଁ ।"

ଗାଆଁଯାକ ଫୁସ୍ ଫୁସ୍ ହେଲେ—"ପହ୍ଲାଦ ହାଡ଼ ବାନ୍ଧିବ । ଗୋରୁ ମାରିଛି ।"

ସେ ଦିନର ପହ୍ଲାଦ ଆଉ ଆଜିର ଅନ୍ଧାରୁଆ । କେତେ ତଫାତ୍ ?

ପହ୍ଲାଦ ଭାବେ, ସେ ଦିନ ପଦ୍ମପୁରାଣ ପଢ଼ି ପୁରୋହିତ ନିଧି ମିଶ୍ରେ ତାକୁ କ'ଣ କହିଥିଲେ । ଭାଗ୍ୟରେ ମୁହଁଟା ତାର ଗ୍ରେତର ପଡ଼ିଯାଏ । ତା ଆଖିଆଗରେ ନାଚିଯାଏ ଗୋଟାଏ ମସ୍ତବଡ଼ ଜଳନ୍ତା ଚୁଲି—ବଡ଼ ବଡ଼ ହଣ୍ଡାରେ ତେଲ କଡ଼ କଡ଼ ହୋଇ ଫୁଟୁଛି । ସେ ଏପଟକୁ ସେପଟ ଗୁନ୍ଥେ, ଅଟେ ଉଠେ । ପୁଣି ତା ଆଖି ଆଗରେ ନାଚିଯାନ୍ତି ଧୁଙ୍ଗିଟା ମଇଁଷିମୁହାଁ ଯମଦୂତ । ସେଦିନ ତାଙ୍କର ଚିତ୍ର ତାକୁ ପୁରୋହିତ ଆପଣେ ଦୟା କରି ପୁରାଣରୁ ବାହାରିକରି ମିଞ୍ଜି ମିଞ୍ଜି ଦୀପ ଆଲୁଅରେ ଦେଖାଇ ଦେଇଥିଲେ । ତାର ସେ ଡକରଙ୍ଗିଆ

ଚନ୍ଦ୍ରପଟ୍ଟଟା ମନେପଡ଼େ । କେଡ଼େ କେଡ଼େ ଆଖି, କମିତି ଶିଙ୍ଗ, ହାତ ଘଣ୍ଟା କମିତି ମାଙ୍କଡ଼ ହାତ ପରି ଲୁମ ଦାଲୁବାଲୁ ହେଇଚି, ନଖଗୁଡ଼ାକ କମିତି ମୁନିଆ ମୁନିଆ । ସେ ଡରୁଆ ପିଲାଙ୍କ ପରି ଘନରେ ବକବକେଇ ଉଠେ—

"ଆଇଲା, ଆଇଲା, ହେଇ ଆଇଲା !"

ଘନେ ଘନେ ବାଟି ଚାଲୁଚାଲୁ ନିଛାଟିଆ ଦ'ପହରରେ ସେ ଥକା ହୋଇ ଗୋଟାଏ ଗଛ ମୂଳରେ ବସିପଡ଼େ । ଚାରିଆଡ଼ ଶୁନଶାନ୍—ଖାଁ ଖାଁ କରୁଥାଏ । ତାର ମନେପଡ଼େ ଭଲଗାଁ ରାମା ଗଉଡ଼ର କଥା । ଗୋରୁ ମାରି ଲୁଚେଇଥେଲା; କିନ୍ତୁ ମଲାବେଳକୁ ଦେହରେ ଘା ହୋଇଗଲା, ପୋକମାଛି ହେଲା, ନାଙ୍ଗୁଡ଼ା ପୋକ ପାଟିରେ ସାଲୁବାଲୁ ହେଇ ଚାଲିଲେ । କେତେ ଗୁହମୁତ, ରକ୍ତପୂଜ ହେଇ ସେ ଘାଣ୍ଟି ଚକଟି ହେଲା । ତେବେ ହେଲେ କ'ଣ ତା'ର ପ୍ରାଣ ଗଲା ।

ଶେଷରେ ସାହି ଲୋକେ ପଚାରିଲେ—'କିରେ ରାମା, କ'ଣ କରିଚୁ କହିଦେ । ନୋହିଲେ ସ'ଜରେ କ'ଣ ପ୍ରାଣ ଯିବ ?'

ରାମା ମାନିଗଲା । ଗୋରୁ ମାରିଥିବା କଥା କହିଦେବା ମାତ୍ରକେ ତା'ର ହିକ୍କା ଉଠିଲା । ତିନଥର ଗୋରୁଙ୍କ ପରି ହମ୍ବା ଛାଡ଼ି ତା'ଠୁ ପ୍ରାଣବାୟୁ ଉଡ଼ିଗଲା ।

ପହିଲି ଆଉ ଭାବି ପାରେ ନାହିଁ । ତାକୁ ଶୁଣାଯାଏ ଗୋଟାଏ ମାରଣା ଗୋରୁ ଯିମିତି ଖୁବ୍ ଦୂରରେ ହେଣ୍ଟାରି ଛାଡ଼ୁଚି । ସେ ଭୟରେ ଗଛଟାକୁ କୁଣ୍ଢାଇ ଧରେ ।

ନିକଟରେ ହୁଏତ ଗୋଟିଏ ଦିଓଟି ଗାଇ ଚରୁଥାନ୍ତି । ଧଳା, କଳା, କପିଳା ବାଛୁରିଗୁଡ଼ିକ ଚରିମାରି ତା'ଙ୍କ ଚାରିପାଖେ ନାଚୁଚନ୍ତି । ପହିଲିର ମନେହୁଏ, ସେମାନେ ଯେମିତି ତାକୁ ଶିଙ୍ଗ ଉଚେଇ ମାରିବାକୁ ଆସୁଚନ୍ତି । ସେ ବାଡ଼ିଖଣ୍ଡିକ ଧରି ଛିଡ଼ା ହୁଏ— ଉଦ୍ଭ୍ରାନ୍ତ ଆଖିରେ ଇଆଡ଼କୁ ସିଆଡ଼କୁ ଚାହେଁ ।

ଘନେ ଘନେ ରାତିରେ ପହିଲି ସପନ ଦେଖେ—ଗୋଟାଏ ମଲା କାଳିଆ ଗୋରୁ ପେଟ ଫୁଲେଇ ତାଙ୍କ ଅଗଣାରେ ଶୋଇଚି । ତା ପେଟ ଭିତରେ ଗୋଟେ କଅଁଳ ବାଛୁରି । ଗେଲବୋଉ ଚଉରାମୂଳରେ ବସି ଭୁକୁ ହୋଇ କାନ୍ଦୁଚି । ଆଉ ତା'ର ମଲାପିଲା ଗେଲୁଟା ପୁଣି ବଞ୍ଚିଲାଣି । ସେ ବାଆ ବାଆ ବୋଲି ଚାରିଆଡ଼େ ତାକୁ ଖୋଜି ବୁଲୁଚି । ପହିଲିର ନିଦ ଚହିଁକିନା ଭାଙ୍ଗିଯାଏ । ସେ ଉଠି ବସେ । ଦୂରରେ ଜଣାଯାଏ ଯିମିତି ସଁ ସଁ ହେଇ ଗୋଟିଏ କ'ଣ ଚରୁଚି ।

ଘନେ ଘନେ ବାଟ ଚାଲୁ ଚାଲୁ ହଠାତ୍ ପହିଲି ଥକା ମାରି ଛିଡ଼ା ହୋଇଯାଏ । ତା'ର ମନେ ହୁଏ, ପଛରୁ ତାକୁ ଯିମିତି କିଏ ଡାକୁଚି ! ଗୋଜିଆ ଗୋଜିଆ ଶିଙ୍ଗ— ହାତରେ ଗୋଟାଏ ବାଘୁଆ ଫାଶପକା ଦଉଡ଼ି । ତା'ର ମନେ ପଡ଼ିଯାଏ ରାମା ଗଉଡ଼ର ମୁହଁ । ରକ୍ତ, ପୂଯ, ନାଙ୍ଗୁଡ଼ା ପୋକ ! କିନ୍ତୁ ମନକୁ ମନ ବୁଝାଇ ସେ ପୁଣି ବାଟ ଚାଲେ ।

ଶହେଥର ବଡ଼ଠାକୁରଙ୍କ ନାଁ ସୁମରଣା କରେ । ପୁଣି ବଡ଼ଦାଣ୍ଡ । ଶହ ଶହ କୃଷ୍ଣବୈରାଗୀଙ୍କ ମେଳରେ ପହଲି ବି ବସି ଖଞ୍ଜଣି ବଜାଇ ଭଜନ ଗାଉଛି । ବଡ଼ ଦେଉଳ ଉପରେ ବଡ଼ ଠାକୁରଙ୍କ ଧଳାପତୁଆ ନେତ ଉଡ଼ୁଥାଏ । ପହଲି ଏମିତି ସ୍ୱପ୍ନରେ ସେଇଆଡ଼ିକି ଅନାଇରହେ । ତା ମନରେ ପୁଣି ବଡ଼ଦାଣ୍ଡ ଛୁଇଁବା ଦିନରୁ ଟିକିଏ ସାହସ ଆସିଲାଣି । ସେ ଆଉ ପୂର୍ବପରି ବଳବଳେଇ ଉଠୁ ନାହିଁ କି ଠିଆରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ପଡୁନାହିଁ । ପାଖରେ ଶୋଇଥିବା କୃଷ୍ଣ ବୈରାଗିଣୀଟା ହୁଏତ ପଚାରେ, "ଆଉ କେତେଦିନରୁ ହାତ ବାନ୍ଧିବୁ ମଉସା ?" ପହଲି ହାତ ଆଙ୍ଗୁଠି ଗଣି ଠାରି ଦିଏ 'ଆଉ ସାତଦିନ ।'

ସାତଦିନ ପରେ ପହଲି ଗାଆଁକୁ ଫେରି ଆସିଲା । ସେ ଗେଲବୋଉର ରଙ୍ଗପଟୁ, ବାସନକୁସନ ବିକି ଟଙ୍କା ପାଞ୍ଚଟା ଅଣ୍ଟାରେ ଖୋସି ପୁରୁଷୋତ୍ତମ ଯାଇଥିଲା । ଘରଯାକର ସବୁ ଦରବ ବିକି ସେ ପୁରୁଷୋତ୍ତମରେ ପାତକ ନିଗିଡ଼ାଇ ଆସିଛି ।

ମାସେ ଏକୋଇଶ ଦିନ ପୂରିଲା ଦିନ ସେ ପଞ୍ଚଗବ୍ୟ ହୋଇ, ବାମ୍ଭଣ ଭୋଜନ କରାଇ, ମୁକ୍ତିମଣ୍ଡପର ଗୋସାଇଁ ମହାପୁରୁଷମାନଙ୍କୁ କିଛି କିଛି ଅଣ୍ଟାଖୋସା ଦେଇ, ସେମାନଙ୍କର ପାଦଧୂଳି ଆଉ ଆଶୀର୍ବାଦ ନେଇ ଘରକୁ ଫେରି ଆସିଲା । ଆସିଲାବେଳେ ଗେଲବୋଉ ପାଇଁ ମହାପ୍ରସାଦ କୋଡ଼ିଏ ଆଉ ଶୁଖିଲା ନିର୍ମାଲ୍ୟ କେତେ ମୁଠି ମଧ୍ୟ ଆଣିବାକୁ ଭୁଲି ନ ଥିଲା । ଘର ଫେରିଲାଣି ପହଲିର ପାଦ ତଳେ ଲାଗୁ ନଥିଲା । ତା'ମନଟା ଖାଲି ଖୁସିବାସିରେ ଉଚ୍ଛୁଳି ଉଠୁଥିଲା ।

ମାଇସାନ୍ତର କଅଁଳ ଅନ୍ଧାର ଗାଁ ଉପରେ ତା'ର ପତଳା ଖଣ୍ଡିଆ ଘୋଡ଼ାଇ ଦେଇଥାଏ । ଗାଁ ମୁଣ୍ଡ ମାହାଳ ଗଛ ଉପରେ ମହୁମାଛିମାନଙ୍କର ସଞ୍ଜ ସଭା ବସିଥାଏ । ଗେଲବୋଉ ତା'ର ଶୁଖିଲା ମୁହଁ ଉପରେ ନୁଆ ପଣତ ଟାଣି ଦେଇ ବୃନ୍ଦାବତୀଙ୍କ ପାଖରେ ସଞ୍ଜବତୀଟି ରଖି ଦଣ୍ଡବତ ହବା ବେଳକୁ ପଛରୁ ପହଲି ଡାକିଲା—"ଘରଦ୍ୱାର ସବୁ ଭଲ ଅଛିତ ଗେଲବୋଉ ?"

ଗେଲବୋଉ ସାଦ୍ରା ଜବାବ ଦେଲା ସେଥିରେ ପହଲିର ହାଲୁକ ଶୁଖିଗଲା । ତା'ର ଘର ଫେରନ୍ତା ଖୁସିବାସି ଆଖି ପିଛୁଳାକେ କୁଆଡ଼େ ଉଭେଇଗଲା । 'ଘରେ ପନ୍ଦର ଦିନ ହବ ଗୁହିର ନାହିଁ, ମାଣ୍ଡିଆତକ ଛେଳି ଖାଇଗଲେ, ଛନଦାନ ତଳେ ଯଉଁ ଶୀତଦିନିଆ ଅଙ୍କାର ବହୁଡ଼ି ହେଇଥିଲା ସେଥିରେ ହାଣ୍ଡିଶାଳ ଘର କାନ୍ଥଟା ଭୁସୁଡ଼ି ପଡ଼ିଛି । ଆଉ ଭାଗ ଚଷରୁ ଯଉଁ ଧାନତକ ଅମର ହୋଇଥିଲା, ତାକୁ ଜମିଦାର ସାଆନ୍ତେ ସେ ପୁରୁଷୋତ୍ତମ ଯାଇଥିବା ବେଳେ ଆଗତ ସାଲର ବାକି ଖଜଣା ବାବଦକୁ ଜବତ କରି ନେଇଛନ୍ତି । ଗତ ସାଲର ଖଜଣା ମାସକ ଭିତରେ ନ ଦେଲେ ପୁଣି ଘରଦୁଆର ବେ'ରଖ କରିବେ ବୋଲି ଧମକ ଦେଇଛନ୍ତି ।'

ମୁଣ୍ଡରେ ହାତ ଦେଇ ପହଲି ସବୁ ଶୁଣିଲା । କିଛି କହିଲା ନାହିଁ । ସେ ଗଣ୍ଠିଟା ପୁରୀରୁ ଆଣିଥିବା ମହାପ୍ରସାଦ ଝାଇ ଦୁଇ ପ୍ରାଣୀଙ୍କର ଏକରକମ କଟିଗଲା ।

ସକାଳୁ ପଦ୍ମଲ ଦେଖିଲା ଚୂଲ୍ହିକୁ ହାଣ୍ଡି ଯିବାକୁ ଚାଉଳ ନାହିଁ । ପନିପରିବା ତ ଦୂରର କଥା । ହାଣ୍ଡିଶାଳ ଘରେ କାନ୍ଥ ଭୁଷୁଡ଼ି ପଡ଼ି ମାଟି ଗଦା ହୋଇଛି । ଗୋଟାଏ କଣରେ ଗୋଟାଏ ମସ୍ତବଡ଼ ଉଇହୁଙ୍କା ମୁଣ୍ଡ ଟେକି ଛିଡ଼ା ହେଲାଣି । ହାଣ୍ଡିକୁଣ୍ଡେଇ ହୋଇ ଯାହା ଅଖଣ୍ଡ ଥିଲା, ତାହା କାନ୍ଥରୁ ମାଟି ଖସି ଚୂନ୍‌ଚୁନ୍ ହୋଇଯାଇଛି । ଘର ଭିତରେ ଝପରା ଝଣ୍ଟି ଝଣ୍ଟି ହେଉଛି । ପଦ୍ମଲ ଦୁ'ମାସ କାଳ ପଣ୍ଡିଆ ହୋଇ ପୁରସ୍ତମରେ ବସିଥିଲା—ଘରେ ଫୁଟା ପାହ୍ଲାଟାଏ ବି ନାହିଁ । ବନ୍ଧାଛନ୍ଦା ବା ବିକାକିଣା କରିବା ପାଇଁ ଯାହା ଭଙ୍ଗାଦଦରା ହୋଇ ଅଖଣ୍ଡ ଜିନିଷପତ୍ର ଥିଲା, ଯେ ସବୁ ତ ପଦ୍ମଲ ବିକି ସାରି ପୂର୍ବରୁ ଗୋହତ୍ୟା ପାତକ ଛଡ଼େଇ ଆଣିଛି ? ବାକି ଅଛି କ'ଣ ଯେ ସେଥିକି ଆଜି ସେ ହାତ ବଢ଼ାଇବ ? ମାଇପ ହାତରେ ଖାଲି ଶଙ୍ଖାପଟିଏ—ଦିନକୁ ଦିନ ବେଶି ବେଶି ହୁଗୁରି ହୋଇଯାଉଛି ।

ସକାଳୁ ପଦ୍ମଲକୁ ଦେଖି ଗାଆଁ ବାହ୍ମଣେ ଧାଇଁଲେ, ଭୋଜନ ଦବାକୁ ହେବ । ବାହ୍ମଣ ଶୁଦ୍ଧ ନ କଲେ କୁଆଡ଼େ ପାତକ ଗ୍ରାହ୍ୟ ହବ ନାହିଁ । ଜମିଦାରଙ୍କ ପିଆଦା ଆସି ଦୁଆରେ ବସିଲା । ଗତ ସାଲର ଖଜଣା ପରିଶୋଧ ନ କଲେ ସାଆନ୍ତେ ମକଦ୍ଦମା କରିବେ । ଜାତିଭାଇ ଧରି ବସିଲେ, ଜାତଭାତ ଦେଇ ଶୁଧିଅ ହେବାକୁ ପଡ଼ିବ ।

ପଦ୍ମଲ ମୂଲ ଲଗିବାକୁ ବାହାରିଲା; ମାତ୍ର ପୁଷ୍ପମାସ ଧାନକଟା ପରେ ପାଇଟି କାହୁଁ ଯୁଟିବ ? ତା ଛଡ଼ା ପଦ୍ମଲ ଲକ୍ଷ୍ୟ କଲା ଯେ, ଗାଁ ଲୋକେ ତାକୁ ଦେଖି ଆଜିକାଲି କମିଠୁ ନାକ ଟାଉଁ ଟାଉଁ କରୁଚନ୍ତି । ଜଣେ ସେଦିନ ତାକୁ ବଡ଼ପାଟି କରି ଶୁଣାଇ ଦେଲା— "ଗୋରୁମରାଟାକୁ ଛୁଇଁଲେ ଛୁଆଁ ଲାଗିବ ।" ପଦ୍ମଲ ସେଦିନଠୁ ଆଡ଼ଛଡ଼ା ହୋଇ ରହୁଛି, କାହାରି ସାଥିରେ ବସେ ଉଠେ ମିଳାମିଶା କରୁନାହିଁ ।

ଜାତଆଣ ଭାତ ଦେଇ ନ ପାରିବାରୁ ପଦ୍ମଲ ଅଜାତିଆ ହେଲା । ସବୁଆଡ଼ ବାସନ୍ଦ । ବାହ୍ମଣ ଗୋସାଇଁମାନେ ଅଡ଼ି ବସିଲେ । ଧୋବା ଭଣ୍ଡାରୀ, କୂଆଁପାଣି ସବୁ ମନା ହୋଇ ଗଲା । ପଦ୍ମଲ ଏକଘରକିଆ ହୋଇ ରହିଲା ।

ପଦ୍ମଲର ଶାଳଗଜା ପରି ଦିହଟା ଶୁଖୁଁ ଶୁଖୁଁ ଆସି କଣ୍ଟା ହୋଇ ଗଲାଣି । ଗୋଲ-ବୋଲକୁ ଫୁଙ୍କିଦେଲେ ପଡ଼ିଯିବ । ଖାଲି ହାଡ଼ ଅଖଣ୍ଡ ଦେଖା ଯାଉଛି । ସେ ସ୍ତ୍ରୀକୁ ବାପଘରକୁ ପଠାଇ ଦେଲା ।

ପଦ୍ମଲର ଦିନେ ଚୂଲି ଜଳିଲେ ଦୁ'ଦିନ ଖାଡ଼ା ଓପାସ । ଦୋକାନୀ ଧୋବ ହାତ୍ତ କାଢ଼ିଆ ଦବାକୁ ନାହିଁ କରିଦେଲାଣି । ପଦ୍ମଲକୁ କୂଳ କିଛି ଦିଶୁନାହିଁ ।

ଦୁଃଖ ଅଭାବ ଅନାଟନ ସହି ସହି ପଦ୍ମଲର ମୁଣ୍ଡ ଖରାପ ହୋଇଗଲାଣି । ସେ ପୁରସ୍ତମ ଛେତ୍ରରେ ଏତେ ଟଙ୍କା ପଇସା ଖର୍ଚ୍ଚ କରି ମନର ଯେଉଁ କଳା ଦାଗଟିକୁ ଲିଭାଇ ଦେଇ ଆସିଥିଲା, ତାହା ପୁଣି ଗାଢ଼ିଆ ହୋଇ ମନ ଉପରେ ଗାର କାଟିଲାଣି ।

ଆଗପରି ପୁଣି ସେଇ ଭୟଙ୍କର ସ୍ୱପ୍ନ ତାକୁ ବେଳେ ବେଳେ ପାଗଳ କରି ପକାଉଛି । ସେ ବେଳେ ବେଳେ ଚମକି ଉଠୁଛି । ତାର ମନ ହେଉଛି, ଗୋଟାଏ କ'ଣ

କ୍ଳାନ୍ତ ହୋଇ ଯେମିତି ସେଁ ସେଁ ହୋଇ ତା ଶୁଣୁପଟେ ଚେଁ, ବୁଲୁଛି । ସେ ରାତିରେ ସ୍ୱପ୍ନ ଦେଖୁଛି, ଗୋଟାଏ ମାରଣା ବଳଦ ତାକୁ ଯେପରି ଶିଙ୍ଗରେ ଭୁଷି ଦେବା ଲାଗି ଲାଞ୍ଜ ଠିଆ କରି ଧାଇଁ ଆସୁଛି । ସେ ସପନରେ ବାଳବଳେଇ ହେଉଛି—"ହେଇ ଆଇଲା, ଭୁଷି ଦେବ, ଭୁଷିଦେବ—ପଳାଅ, ପଳାଅ..."

ପହଲର ସବୁ ଯାଇ ବାକି ଯାହାଥିଲା, ସେଇ ଭଙ୍ଗା ଘର ଖଣ୍ଡିକ ମଧ୍ୟ ଶେଷରେ ଖଜଣା ଦେଇ ନ ପାରିବାରୁ ନିଲାମ ହୋଇଗଲା । ତାର ଏଡ଼େ ବଡ଼ ଦୁନିଆରେ ମୁଣ୍ଡ ଗୁଞ୍ଜିବାକୁ ବାଡ଼ି ଗୋବରେ ଗୋଟେ ହେଲେ ଥାନ ରହିଲା ନାହିଁ । ଘରଖଣ୍ଡିକ ନିଲାମ ହେଲାବେଳେ ପହଲ ବକ୍ ବକ୍ ହୋଇ ଅନାଇ ରହିଥିଲା । ତା ପାଟିରେ ଉଁ କି ଚୁଁ କଥା କିଛି ନ ଥିଲା । ତାକୁ ଯେତେବେଳେ ଜଣାଇ ଦିଆଗଲା ଯେ ଏଣିକି ଆଉ ସେ ଘରେ ରହି ପାରିବ ନାହିଁ, ସେତେବେଳେ ସେ ଚୁପ୍ କରି ଉଠି ଛିଡ଼ା ହେଲା । ତା ପରେ ଗୋଟିଏ ଶାବଳ ନେଇ ହାଣ୍ଡିଶାଳ ଘରୁ ତାର ଜଣାଣ ବେଦୀ ଆଉ ବାଡ଼ପଟ କାନ୍ଥରୁ ତାର ମଲାଝିଅ ଗେଲର ଷଠିଗାତଟାକୁ ତାଡ଼ି ନେଇ ଆସି ଧୀରେ ଧୀରେ ସେ ଘର ଛାଡ଼ି ପଦାକୁ ବାହାରିଗଲା । ସେଇ ଯେ ଗଲା, ଆଉଥରେ ହେଲେ ସେ ଫେରି ଆଇଲା ନାହିଁ ।

ବାପ ଅଜା ଅମଳର ଘର ଖଣ୍ଡିକ ଯିବା ପରେ ପହଲର ମନର ଅବସ୍ଥା ଆହୁରି ଖରାପ ହୋଇଗଲା । ସେ ଏ ଗଳି ସେ ଗଳି ହୋଇ କୌଣସି ପ୍ରକାରେ ରାତି କଟାଇ ଦେବାକୁ ଲାଗିଲା ।

ଘର ମଝିରେ ଥିବା ଟଙ୍କା ସଜନା ଗଛଟି ପହଲର ଖୁବ ପ୍ରିୟ । କୁଢ଼ କୁଢ଼ କରି ଗଇଁଠା ପାଉଁଶ ତା ମୂଳରେ ଓଜାଡ଼ୁଛି ସେ । ସଜନା ଗଛରେ ଝୁଲି କେତେ କେତେ ଫଳ ତଳେ ଝଡ଼ୁଛି ପଛକେ ସେଥିରୁ ଗୋଟେ ତୋଳି ଆଣି ପଖାଳ ଖାଇବା ପାଇଁ ତା ହାତ ଯାଉ ନାହିଁ ସଞ୍ଜରେ । ତାରି ଛାଇରେ ବସି କେତେ ଜହ୍ନରାତି ସେ କଟାଇ ଦେଇଛି । ଦାଣ୍ଡରେ ଠିଆ ହୋଇ ଦିନେ ଦିନେ ପହଲ ସେଇ ଗଛଟା ଆଡ଼କୁ ଚାହେଁ—ତା ମୂଳରେ ଟିକିଏ ଯାଇ ବସିବା ପାଇଁ ତାର ଖୁବ ଇଚ୍ଛା ହୁଏ; କିନ୍ତୁ ସେ ଫେରି ଆସେ । ସାଆନ୍ତ ଘରର ଜଗୁଆଳଟା ତାକୁ ଦେଖି ଥଟ୍ଟା କରି କହେ, "କିବେ, ଗୋବୁମରା ପହଲ !"

ପହଲର ମନେ ପଡ଼େ ତା ଘରର ପଛପଟ ପିଣ୍ଡାତଳେ ବୁଦା ବୁଦା ହୋଇ କାନଶିରା ଘାସ ମାଡ଼ିଥିବ । କୂଅ ମୂଳେ ସେଇ ସଦାବିହାରୀ ଅଉ ଗୋଡ଼ବାଣ ଗଛଗୁଡ଼ାକ ବୋଧହୁଏ ଫୁଲରେ ନେଳି ହୋଇ ଯାଉଥିବେ, ତାର ମନ ଡାକେ କିମିତି ଯାଇ ସେ ଏସବୁଗୁଡ଼ାକ ଥରେ ଆଖି ପୂରାଇ ଦେଖି ଆସନ୍ତା କି !

ତା ଭଙ୍ଗା ଛାତି ଭିତରେ କୋହ ଉଠେ । ତା ମନଟା ଚୂନା ଚୂନା ହୋଇ ଭାଙ୍ଗି ପଡ଼େ । ସେ ଚେଇଁ ଚେଇଁ କେତେ କ'ଣ ବିକଟାଳ ସ୍ୱପ୍ନ ଦେଖେ, ବାଉଳି ଗାଉଳି ହୁଏ । ତା'ର ମନେହୁଏ, ସେ ଯେମିତି ଇଆ ଭିତରେ କେଉଁଦିନ ମରିଗଲାଣି ।

× × × ×

ଘର ନିଲାମ ହବାର ମାସ ଗୋଟାକ ପରେ ସାହିବାଲା ଦଳେ କଥାବାର୍ତ୍ତା ହେଲେ—ପଦ୍ମଲୁ ପଧାନ ପାଗଳ ହୋଇ ଗଲାଣି । ଗୁହମୂତ ସାଲୁ ସାଲୁ ହୋଇ ଏଣେ ତେଣେ ବୁଲୁଛି, ଆଉ ମଣିଷ ଦେଖିଲେ କହୁଛି—ହେଇ, ଆଇଲା, ଅଇଲା, ଭୁଷିଦେବ, ଭୁଷିଦେବ, ହୁସିଆର !

ପାହାଡ଼କୁ ଜାଳେଣିକାଠ ଗୋଟାଇବା ଲାଗି କେତେଜଣ ବାଉରୁଣୀ ଟୋକୀ ଯାଇଥିଲେ । ସେମାନେ ଫେରିବୁଡ଼େ ଧୋବ ସାହୁ ଦୋକାନ ମୁଣ୍ଡରେ କଥାଭାଷା ହେଉଥିଲେ—ପଦ୍ମଲୁ ପାହାଡ଼ ଉପରେ ବସିଚି—ଠିକ୍ ବଳଦଙ୍କ ପରି ବୋବାଳି ଛାଡ଼ୁଚି—ଆଉ କହୁଚି—"ହେଇ ଅଇଲା, ଅଇଲା, କେଡ଼େ କେଡ଼େ ଶିଙ୍ଗ ହୋଇଚି, ଖାଲି ସଁ ସଁ ହଉଚି । ମୁଁ ମରିଗଲି, ମୁଁ ମରିଗଲି ସାଆନ୍ତେ !"

ସବୁ ଶୁଣି ଗମ୍ଭୀର ହୋଇ ନିଧି ମିଶ୍ରେ କହିଲେ—"ତା ପାପ ତାକୁ ଦେଖାଇବ ନାହିଁ ତ ଶିବ କୁଆଡ଼େ ? ଶୁଦ୍ଧ ନ ହେଲେ କି ଗୋହତ୍ୟା ପାପ ଛାଡ଼େ ? ଆମେ ସେତେ କହିଲୁଁ, ଆମ କଥା ଶୁଣିଲେନି । ଟଙ୍କା ଦଶଟା ଦେଇ ଦଶ ବ୍ରାହ୍ମଣଭୋଜନଟା କରାଇ ଶୁଦ୍ଧ ହୋଇ ଯାଇଥିଲେ ଆଜି ଘୁରୁଖୁରୁରେ ଖାଡ଼ିବୁଡ଼ି ହୋଇ ବସିଥାନ୍ତା । ଧର୍ମ କ'ଣ କୁଆଡ଼େ ଯାଇଛି ?

ପୁରୋହିତ ବ୍ରହ୍ମା କହିଲେ—ଆଜିକାଲି ଶାସ୍ତ୍ର ପୁରାଣ କଥା କିଏ କ'ଣ ମାନୁଛନ୍ତି, ମିଶ୍ରେ ? ଦେଖୁନ ମଲାବେଳେ କେମିତି ଗୋରୁପରି ବୋବାଉଛି । ତାକୁ ଆସି କାଳ ଘେରିଲାଣି । ତା ପାପ ତା ଆଗେ ଆଗେ ଯାଉଚି ନା ଲୁଚୁଚି ?"

ନାଙ୍ଗୁଟିଆ ପାହାଡ଼ ଉପରେ ପଦ୍ମଲୁର କଙ୍କାଳ । ଗୋଟାଏ ଭୟାନକ କଳ୍ପନାର ପ୍ରେତାତ୍ମା ତା ମନ ଉପରେ ଲମ୍ବ ଲମ୍ବ ଛୁଇ ପକେଇ ମାଡ଼ି ବସିଚି । ସେଥିରୁ ତାର ଉଦ୍ଧାର କାହିଁ ? ତା ଦେହରେ ଏକଜୁଟ ହୋଇଛନ୍ତି ବହୁଦିନର ଭୋକ, ଉପାସ, ଅଭାବ, ଯନ୍ତ୍ରଣା ଆଉ ଅପମାନ । ସମସ୍ତେ ମିଳି ତା ମନଟାକୁ ଚୁନା ଚୁନା କରି ପେଷି ଦବାକୁ ବସିଚନ୍ତି ।

ପଦ୍ମଲୁ ଦେଖୁଚି ତା ଆଗରେ ଘରଦ୍ୱାର, ସ୍ତ୍ରୀ-ପରିବାର, ଜ୍ଞାତି କୁଟୁମ୍ବ କେହି ନାହାନ୍ତି । ଅଛି ଖାଲି ଗୋଟାଏ ଫାଙ୍କା ଶୂନ । ଆଉ ଅଛି ଗୋଟାଏ ମସ୍ତବଡ଼ ପୋଥି—ପୃଷ୍ଠାରେ ତାର ଲେଖା ହୋଇଚି ବଡ଼ ବଡ଼ ଯମଦୂତଙ୍କ ଛବି, କଳା କଳା ଆଖି, ଗୋଜା ଗୋଜା ଶିଙ୍ଗ । ସେ ପୋଥିର ଅକ୍ଷରଗୁଡ଼ାକ ଗୋଟେ ଗୋଟେ ଡିମିରି ଯୋଗଣା ଚକ୍ର···।

ପଦ୍ମଲୁର ମନେ ହୁଏ ସେ ଗୋରୁ ମାରି ନାହିଁ ଯେ ତା ନିଜ ଦେହରେ ଛୁରୀ ବସେଇଚି ।

ପଦ୍ମଲୁର ଅଚଳ ଭାବନା ମନଟା ଆଉ ହାଲକା ହୋଇ ପାରୁନାହିଁ । ସବୁ ତାକୁ ମାଡ଼ିମାଡ଼ି ପଡ଼ୁଚି, ଚାରିଆଡ଼ ଖାଲି ତାକୁ ଖାଁ ଖାଁ ଜଣାଯାଉଚି ।

ବେତନଦୀର ପଞ୍ଚ ଅରମା ଭିତରୁ ଡାମରାକାଉ ଡାକୁଥାଏ 'କା-କା-କା' । ବଣ, ନଈଟା, ମୁଣ୍ଡିଆ ସମସ୍ତେ ସିମିତି ଜଣକ ମଣିଷ ପରି ଚିହାଇ ଚିହାଇ ତା କାନ ଭିତରେ ଡାକୁଥାନ୍ତି 'ଆ-ଆ-ଆ ।'

ପହଲ ଦେଖିଲା ତଳ ଗାଁ ସୀମା ଗହଢ଼ର ମଡ଼ା ଟା । ତା ମଲା ମୁହଁରେ ଟହ ଟହ ଉଚ୍ଛୁଳା ହସ ।

ଆଉ ଦୂରରେ ଗୋଟାଏ କ'ଣ ଧଅଁ ଧଅଁ ହେଇ ଚରୁଚି !!!

ପହଲ ଭୟରେ ଚିଲଚିଲେଇ ଉଠି ବେହୋସ ହୋଇ ତଳେ ଗୋଟାଏ ମୁନିଆ ପଥର ଉପରେ କଚ୍ଚଡ଼ି ହେଇ ପଡ଼ିଲା ।

ତହିଁଆରଦିନ ପତର ଗୋଟେଇ ଟୋକାଏ ଯାଇ ଗାଆଁରେ ଗପିଲେ—ପହଲ ସୁକୁ ସୁକୁ ହେଇ ଟକଉଚି । ଏଇନା କି ଆଉ ଟିକେ··· ।

ଛେଳି ଜଗୁଆଳି ନୋକା ଯାଇ ଦାନ୍ଦ ମଝିରେ ହାତ ଗୋଡ଼ ହଲେଇ କହିଲେ—ଦୋ'ଟା ଯମଦୂତ ପହଲକୁ ଜଗି ବଇଚନ୍ତି । ମୁହଁ ଗୁଡ଼ାକ ତାଙ୍କର ବଳଦ ପରି । ସେ ଧୋ ଧୋ କରି ଦେବାରୁ ସେମାନେ ପଳାଇଗଲେ ।

ଗାଆଁର ଦୁ' ଚାରି ଜଣ ଭେଣ୍ଡିଆ ଯାଇ ଦେଖି ଆଇଲେ ଗୋଟେ ପଥର ସନ୍ଧିରେ ମୁଣ୍ଡ ଗେଞ୍ଜି ପହଲ ପଡ଼ିଛି । ତା ଖପୁରିରୁ ଫାଲେ ଉଡ଼ିଯାଇ ଦହି ବାହାରି ପଡ଼ିଛି ।

ଖବର ପାଇ ସେଦିନ ରାତିରେ ଗେଲବୋଉ ଆଇଲା । ସେ ଗିରସ୍ତକୁ ଶୁଦ୍ଧିଆ କରି ଗୋରୁମଲା ପାତକରୁ ଉଦ୍ଧାର କରିବା ନାଗି ବାପଘରୁ କିଛି ଟଙ୍କା ଧରି ଆଇଥିଲା । ସେଦିନ ରାତିରେ ତାକୁ ଟିକିଏ ପହଲ ପାଖକୁ ନେଇଯିବା ପାଇଁ ସେ କେତେନୋକଙ୍କ ପାଖରେ ନେହୁରେହୁରି ହେଲା; ମାତ୍ର ଏଡ଼େ ବଡ଼ ଗାଆଁଟାରେ ଜଣେହେଲେ କେହି ରାତି ଅଧରେ ମୁଣ୍ଡିଆ ଉପରକୁ ଯିବାକୁ ମଙ୍ଗିଲେ ନାଇଁ ।

ବଡ଼ ସକାଳୁ ଗେଲବୋଉ ମୁଣ୍ଡିଆ ଉପରକୁ ଯାଇ ବାଉରୀଣୀ ଟୋକାଙ୍କଠାରୁ ସନ୍ଧାନ ନେଇ ଦେଖିଲା, ପହଲ ମରିଗଲାଣି । ତା ପାଟିରୁ ଫେଣ ବାହାରି ପଡ଼ିଚି, ଆଖି ଖୋସି ହୋଇ ଯାଇଚି, କାନପାଖ ଖପୁରିରୁ ଫାଲେ କେନା କେନା ହେଇ ବୁଅଡ଼େ ଉଡ଼ି ଯାଇଚି ।

ତା' ଆଖିରୁ ଲୁହ ମରି ଯାଇଥିଲା । ସେ କେବଳ କଲବଲ ହେଇ ସେ ଆଡ଼କୁ ଅନାଇ ରହିଲା ।

ଅଣଶୁଦ୍ଧିଆ ପହଲର ମୂର୍ଦ୍ଧାର କମିତି ଉଠିବ ଏ କଥା ନେଇ ଗାଆଁରେ ଝୁର ଯୁକ୍ତିତର୍କ ଚାଲିଥିଲା ।

ଗେଲବୋଉ ଗିରସ୍ତକୁ ଶୁଦ୍ଧିଆ କରିବାପାଇଁ ବାପଘରୁ ଆଣିଥିବା ଦଶଟି ଟଙ୍କା ପଣତ କାନିରୁ ଗାଆଁର ମୁରବିମାନଙ୍କ ହାତକୁ ବଢ଼ାଇ ଦେଇ ନମ୍ର ହୋଇ ସମସ୍ତଙ୍କ ଗୋଡ଼ ତଳେ ପଡ଼ିଗଲା ।

ବ୍ରାହ୍ମଣ ଗୋସାଇଁ ଆଉ କାଢ଼ଭାଇମାନେ ଖୁସି ହୋଇ ପହଲର ମୂର୍ଦ୍ଧାରକୁ ଆଶୀର୍ବାଦ କଲେ ।

# ଶୁଖିଲା ପତ୍ର

—ମନୋଜ ଦାସ

ସୂର୍ଯ୍ୟାସ୍ତର ଯଦି ଛନ୍ଦ ଥିବ, ତେବେ ତା' ସହିତ ତାଳ ରଖି ଦଳ ଦଳ ପକ୍ଷୀ ଗ୍ରାମର ପଶ୍ଚିମ ସୀମାବର୍ତ୍ତୀ ଅନତିବିସ୍ତୃତ କଳାକାଣ୍ଡି ଖାଲ ଭୂଇଁର ଗଛମାନଙ୍କୁ ଲେଉଟି ଆସନ୍ତି । ସେମାନଙ୍କର ଭିନ୍ନ ଭିନ୍ନ ଭଙ୍ଗୀର ଅନର୍ଗଳ ପ୍ରଳାପ କିଛିକାଳ ଅବ୍ୟାହତ ରହିବା ପରେ ତାକୁ ଡୁବାଇ ଦେଇ ଶୁଭେ ଯେ ଯାବତ୍ ଜୁକୁ ଜେଳର ମଣ୍ଡ, ଅଥବା ଛେଳି ଗାଈଟିକୁ ଅଡ଼ାଇ ଆଣିବାକୁ ହେଳା କରିଥିବା ଅବାଧ୍ୟ ପୁଅ ପୁତୁରା ଉଦ୍ଦେଶ୍ୟରେ କେହି କେହି ଗାର୍ଜନଙ୍କର ଆବାଜ୍ ।

ସୂର୍ଯ୍ୟ ଅସ୍ତ ଯାଇଥିବା ପର୍ଦ୍ଦାରେ ନିଃଶେଷ ହେବା ପରେ ଖାଲ ଭୂଇଁ ଅଞ୍ଚଳର ଏକାଧିକ ଲୁଚିଲୁଣ୍ଠି ଥିବା ଶୃଗାଳମାନଙ୍କର କୋଳାହଳ ଶୁଭେ । ସୂର୍ଯ୍ୟାସ୍ତ ହେଉ ସେମାନେ ଦୁଃଖିତ ନା ଆହ୍ଲାଦିତ ସ୍ପଷ୍ଟ ହୁଏନା । ହୁଏତ ମଣିଷର ସୁଖ ଦୁଃଖବୋଧ ସହିତ ନଥିବା କୌଣସି ଭାବର ଅଭିବ୍ୟକ୍ତି ସିଏ । ତଥାପି ତା'ର ପ୍ରଭାବ ଥାଏ । ମୃତ୍ୟୁ ଶଯ୍ୟାରେ ପଡ଼ି ନଡ଼ବଡ଼ ହେଉଥିବା କେତେଜଣ ବୃଦ୍ଧଙ୍କ ଆଖି ଆଗରେ ଶ୍ମଶାନର ଦୃଶ୍ୟ ଭାସି ଉଠେ; ସେମାନେ ହରିବୋଲ କରନ୍ତି । ଆଗତପ୍ରାୟ ରାତ୍ରି ଯେ ନାନାବିଧ ଭୟାବହ ସମ୍ଭାବନାରେ ଗର୍ଭବତୀ, ସେ ବିଷୟରେ ଏକ ପ୍ରକାର ଧୂଆଁଳିଆ ଚେତନା ଖେଳିଯାଏ ଶିଶୁମାନଙ୍କ ଭିତରେ ।

ତା'ପରେ, ଶୃଗାଳ ନିନାଦ ଜନିତ ଅବସନ୍ନତାର ବାତାବରଣରେ ନିଃସନ୍ଦିଗ୍ଧ ପରିବର୍ତ୍ତନ ଆଣି ଉଠେ ଶଙ୍ଖଧ୍ୱନି । ହୁଏ ଭରସାର ପ୍ରବର୍ତ୍ତନ ।

ଅବଶେଷରେ, ଏ ସମସ୍ତ ଧ୍ୱନି ସ୍ତବ୍ଧ ହେବାର ବହୁ ସମୟ ପରେ, ଗ୍ରାମ ଓ ଖାଲ ଭୂଇଁ ମଧ୍ୟବର୍ତ୍ତୀ ପରିତ୍ୟକ୍ତ ମନ୍ଦିରର ଏକ ଗହ୍ୱର ଭିତରୁ ଶୁଭେ ପେଚକର ରାବ । କେଉଁ ରଜନୀରେ ସେ ରାବ କାହାର କର୍ଣ୍ଣଗୋଚର ହେବ, ତାହା ନିର୍ଭର କରେ ପବନର ଗତି ତଥା ଗ୍ରାମବାସୀମାନଙ୍କର ନିଦ୍ରା ବା ସୁପ୍ତିର ସ୍ତର ଉପରେ । ତେବେ ପ୍ରାପ୍ତବୟସ୍କ ନରନାରୀ ପ୍ରତ୍ୟେକଙ୍କର ସେ ରାବ ସହିତ ଘନିଷ୍ଠ ପରିଚୟ ଥାଏ ।

ଭାରତର ପୂର୍ବ ଉପକୂଳବର୍ତ୍ତୀ ମୁଲକ ଭିତରେ ସେଇଟି ଥିଲା ସବୁଠୁ ବଳିଷ୍ଠ ବ୍ୟକ୍ତିତ୍ୱ ସମ୍ପନ୍ନ ପେଚା । ଗ୍ରାମର ସମସ୍ତ ବାସିନ୍ଦାଙ୍କ ଭିତରେ ସେ ଥିଲା ବୟୋବୃଦ୍ଧ ମଧ୍ୟ ।

ଦେଢ଼ଶହ ବର୍ଷ ତଳେ ମନ୍ଦିର ପ୍ରତିଷ୍ଠା କରିଥିଲେ ପୁରୁଣା ଜମିଦାର । କ୍ରମେ ସେ ପରିବାର ଗରିବ ହୋଇ ଯାଇଛନ୍ତି । ଜମିଦାରୀର ଏ ଅଂଶ ହସ୍ତାନ୍ତରିତ ହୋଇଛି । ମାତ୍ର ତିନି ପୁରୁଷର ନୂଆ ଜମିଦାର ମନ୍ଦିର ମରାମତି କରିବା ଦିଗରେ ଆଗ୍ରହ ପ୍ରକାଶ କରି ନାହାନ୍ତି । ମନ୍ଦିର ଧ୍ୱଂସମାନ ଅବସ୍ଥାକୁ ଆସିବା ବେଳକୁ ପୂଜାରୀ ଦିଅଁଙ୍କୁ କୋଳ କରି ନେଇ ଯାଇ ନିଜ ଘରେ ଆଶ୍ରୟ ଦେଇଛନ୍ତି । ତାହା ବି ହେଲାଣି ଆସି ଦୁଇ ପୁରୁଷର କଥା । ଚାନ୍ଦା କରି ମନ୍ଦିର ମରାମତି ବା ପୁନଃନିର୍ମାଣ କରିବାର ପ୍ରସ୍ତାବ ପ୍ରାୟ ପାଞ୍ଚ ଦଶ ବର୍ଷରେ ଥରେ ଲେଖାଏଁ ଉତ୍ଥାପିତ ହୋଇଛି । କିନ୍ତୁ ସେ ଚାନ୍ଦାର ପରିମାଣ ବିପୁଳ ହେବାର ପ୍ରୟୋଜନ ଦୃଷ୍ଟିରୁ ଏବଂ "ମୁଁ ତୋ ଘରେ ବରଂ ସୁଖରେ ଅଛି" ବୋଲି ମଝେ ମଝେ ଦିଅଁ ପୂଜାରୀଙ୍କ ନିଦ୍ରାବସ୍ଥାରେ ସ୍ୱୀକାରୋକ୍ତି କରି ନିଜର ମନ୍ଦିର ବିମୁଖତା ପ୍ରକାଶ କରୁଥିବା ଦୃଷ୍ଟିରୁ ସେଭଳି ପ୍ରସ୍ତାବ କାର୍ଯ୍ୟକାରୀ କରିବା ଦିଗରେ କୌଣସି ପଦକ୍ଷେପ ନିଆଯାଇ ନାହିଁ ।

କ୍ରମେ ପରିତ୍ୟକ୍ତ ମନ୍ଦିରକୁ ଆଶ୍ରୟ କରିଛି ପେଚା । (ମତାନ୍ତରରେ; ଦିଅଁଙ୍କ ଅବସ୍ଥାନ କାଳରେ ବି ପେଚା ବିଦ୍ୟମାନ ଥିଲା ) ପଚିଶ ବର୍ଷ ତଳେ ଗ୍ରାମର ଜଣେ ଜ୍ଞାନୀ ବୃଦ୍ଧ ସେଇ ପେଚାର ରାବରୁ ମରୁଡ଼ି, ମଡ଼କ ଅଥବା କାହାର ଅକାଳ ମୃତ୍ୟୁର ଚେତାବନୀ ଠଉରାଇ ପାରୁଥିଲେ, ଆଜିର ପେଚା ସେଇ ଗୋଟିକ ନା ତା'ର ଉତ୍ତରାଧିକାରୀ, ପେଚାମାନଙ୍କ ଆୟୁ ସମ୍ପର୍କରେ ବହୁ ମତ ଥିବା ଦୃଷ୍ଟିରୁ ଗ୍ରାମବାସୀମାନେ ସେକଥା ନିରୂପଣ କରି ନଥିଲେ । ସ୍ଥିର କରିବାର ପ୍ରୟୋଜନ ନଥିଲା । ସେ ପ୍ରସିଦ୍ଧ ହୋଇଥିଲା ମେଖାଏ ଆଧିଭୌତିକ ଉପସ୍ଥିତି ରୂପେ । ଅଧିଭୌତିକତାର ବୟସ ବା ଆୟୁ ମାନବିକ ମାପକାଠିରେ ମାପିବାର କିଛି ମାନେ ହୁଏନା ।

ସେହିଦିନ ରାତିରେ ବି ଯଥାବିଧି ପେଚା ରାବିବାକୁ ଆରମ୍ଭ କରିଥିଲା । ଆକାଶ ଥିଲା ମେଘଲା, ତେବେ ଜହ୍ନକୁ ନିଶ୍ଚିହ୍ନ କରି ଦେଇ ପାରିବା ମାତ୍ରାରେ ନୁହେଁ । ଫଳରେ ଗଛଲତା ଉର୍ଦ୍ଧ୍ୱରେ ବ୍ୟାପିଥିଲା ଅଳ୍ପ ଅନ୍ଧାରର ପ୍ରହେଳିକା । ଜହ୍ନ ସମ୍ବଳିତ ଆକାଶ ହୋଇଥିଲା ବେଶ୍ ଅଦ୍ଭୁତ ।

ପେଚା ଦୁଇଥର ମାତ୍ର ହୁଂହ୍ ହୁଂହ୍ କରିଥିଲା । ସେଇ ମୁହୂର୍ତ୍ତରେ ତା'ର ଚୂଡ଼ାନ୍ତ ରାବ ଶୁଭିବାର କଥା, ସେତିକିବେଳେ ଶୁଭିଥିଲା ଗୁଡ଼ୁମ୍ କରି ବନ୍ଧୁକର ଆବାଜ୍ । ସେ ଆବାଜ୍‌କୁ ଅନୁସରଣ କରିଥିଲା ପେଚାର ଆର୍ତ୍ତନାଦ ଜାତୀୟ କିଛି ଶବ୍ଦ । ତା'ପରେ ବିରାଜ କଲା ଦାରୁଣ ନିସ୍ତବ୍ଧତା—ଏକ ମିନିଟର ପରେ ମନ୍ଦିରର ଅଦୂରବର୍ତ୍ତୀ କୁଡ଼ିଆରୁ ଏକ ସଦ୍ୟୋଜାତ କନ୍ୟାର ଉତଳା କ୍ରନ୍ଦନ ଶୁଭିବା ପର୍ଯ୍ୟନ୍ତ ।

ଆଠ ମାଇଲ ଦୂରବର୍ତ୍ତୀ ହାଟରୁ ଲଣ୍ଠନର ବତୀକୁ ଯଥା ସମ୍ଭବ ନିମ୍ନ ଅବସ୍ଥାରେ ରଖି ଫେରୁଥିବା ଦଳେ ଗ୍ରାମବାସୀ ଚକିତ ହୋଇ ଠିଆହୋଇ ରହି ଯାଉଥିଲେ । କେବେ କେମିତି ଜମିଦାର ସ୍ଥାନୀୟ କଚେରୀରେ ଆସି ଡେରା ପକାଇଲେ ଗ୍ରାମ ସୀମାନ୍ତର ଜଙ୍ଗଲକୁ

ଅଞ୍ଚଳରୁ ବନ୍ଧୁକ ଆବାଜ୍ ଶୁଣାଯାଉଥାଏ, କଟେଶ୍ୱ କୋଠିରୁ ମାଂସ ରନ୍ଧନର ହାବୁକା ହାବୁକା ବାସନା ବୈଷ୍ଣବ ସଂସ୍କାର ଅଧ୍ୟୁଷିତ ଗ୍ରାମର ବିଭିନ୍ନ ସ୍ତରରେ ପଶିଯାଇ ଉପଦ୍ରବ କରୁଥାଏ । କିନ୍ତୁ ଗ୍ରାମ ଭିତରେ ବନ୍ଧୁକ ଫୁଟିବା ଏଇ ପ୍ରଥମ ।

ସନ୍ଧ୍ୟା ପ୍ରାୟ ଜମିଦାରଙ୍କ ଶାନ୍ତିକାନ୍ତ ତରୁଣ ଦାସ୍ୱାଦ ସେଦିନ ସକାଳେ ଆସି ଗ୍ରାମରେ ପହଞ୍ଚିବା କଥା ସମସ୍ତେ ଜାଣିଥିଲେ । ତେଣୁ ମନ୍ଦିର ପାଖରେ ବନ୍ଧୁକ ଧରିଥିବା ତାଙ୍କୁ ଦେଖି ହାଟ-ପ୍ରତ୍ୟାଗତ ଦଳ ଚମକି ଗଲେ ନାହିଁ । କିନ୍ତୁ ମୁହଁ ଖୋଲିବାକୁ ସମୟ ଲାଗିଲା । ବାହାରାଗତ ବ୍ୟକ୍ତିଙ୍କ ସହ ଗ୍ରାମବାସୀଙ୍କର ଯେତେ କଥାବାର୍ତ୍ତା ହୁଏ ତନ୍ମଧ୍ୟରୁ ଶତକଡ଼ା ନବେଭାଗ ତୁଲାଉଥିବା ବଳଭଦ୍ର ଦାସ ମଧ୍ୟସ୍ଥ ହୋଇ ରହିଲେ ।

ଭାରତରୁ ଇଂରେଜମାନେ ବିଦାୟ ନେଇଥିବାର ଏବଂ ଭାରତ ସ୍ୱାଧୀନ ହେବାର ସମ୍ବାଦ ଗ୍ରାମରେ ପହଞ୍ଚିବାର ପ୍ରାୟ ଏକବର୍ଷ ବିତି ଯାଇଥାଏ । ଲୋକେ ଆଉ ସେ ବିଷୟ ଅବିଶ୍ୱାସ କରୁନଥିଲେ । କେତେକ ବିଷୟରେ ନିଜନିଜର ଦୃଷ୍ଟିକୋଣ ବଳେ ବଦଳି ଯାଇଥିବା ସମ୍ପର୍କରେ ଖୋଦ ଗ୍ରାମବାସୀମାନେ ବି ସଚେତନ ଥିଲେ । ସେମାନେ ତରୁଣ ଜମିଦାରଙ୍କୁ ପ୍ରଣାମ କରିବାର ଆବଶ୍ୟକତା ଅନୁଭବ କଲେ ନାହିଁ ।

ବଳଭଦ୍ର ଦାସ ଶ୍ରେଷ୍ଠ ନମସ୍କାରଟିଏ ଛୁଆଡ଼ି ଦେଇ ପଚାରିଲେ, "ଆପଣ ମନ୍ଦିରର ପେଚାକୁ ଗୁଳିକରି ମାରିଦେଲେ ?"

ତାଙ୍କ କଣ୍ଠସ୍ୱର ଶୁଭିଲା ଅସମ, ଅସ୍ୱାଭାବିକ ।

"କାହିଁକି ? କ'ଣ ହୋଇଗଲା ?" ତରୁଣ ଜମିଦାରଙ୍କ ଉତ୍ତର ବି କମ୍ ଅସ୍ୱାଭାବିକ ନଥିଲା ।

ଗ୍ରାମବାସୀମାନେ ଦୁଇ ସ୍କରମିନିଟ କାଳ ନୀରବରେ ତାଙ୍କର ଅନୁସରଣ କଲେ ।

"ପେଚାକୁ ମାରିଦେଲେ ? ଆପଣ ଏ କଲେ କ'ଣ ?" ବଳଭଦ୍ର କମ୍ପିତ କଣ୍ଠରେ ପୁନର୍ବାର ପଚାରିଲେ । ସେଥିରେ ଏଥର ଅସ୍ୱାଭାବିକତା ନଥିଲା, ଥିଲା ଉଗ୍ରତା ଓ ଆତଙ୍କ ।

"ମୁଁ ପଚାରୁଛି, ହୋଇଗଲା କ'ଣ ?" ଜମିଦାର ରୁକ୍ଷତାର ଆଭାସ ଦେବାକୁ ଚେଷ୍ଟା କଲେ ।

"କ'ଣ ନ ହେଲା ଆଜ୍ଞା, ଆପଣ ମନ୍ଦିରର ପେଚାକୁ ଗୁଳି କରି ମାରିଦେଲେ ।"

"ମୁଁ ଯାହାକୁ ଗୁଳିକରେ, ସିଏ ମରେ । ପଶୁ, ପକ୍ଷୀ, ଦୈତ୍ୟ, ଦାନବ କେହି ବାଦ୍ ଯାଆନ୍ତି ନାହିଁ ! ହେଃ ହେଃ ।" ତରୁଣ କହିଲେ । କିନ୍ତୁ ତାଙ୍କ ଚେହେରା, ଅଙ୍ଗଭଙ୍ଗୀ ଓ କଣ୍ଠସ୍ୱର ସହ ଏ ଘୋଷଣା ଯେତିକି ଅସାମଞ୍ଜସ୍ୟ ଶୁଭିଲା, ଘୋଷଣା ସହ ଅଟ୍ଟହାସର ପ୍ରୟାସ ଶୁଭିଲା ତତୋଧିକ ଅସାମଞ୍ଜସ୍ୟ ।

ଗ୍ରାମବାସୀମାନେ ତାଙ୍କ ଘୋଷଣାର ପ୍ରତିବାଦ କରିବା ତ ଦୂରର କଥା, ସେଥିରେ ଅବିଶ୍ୱାସ କଲାଭଳି ଆଗ୍ରହ ବି ଦେଖାଇଲେ ନାହିଁ । ସେମାନେ ବିଚଳ ସ୍ୱରରେ କହିଲେ, "ଦୈତ୍ୟ ଦାନବ କଥା ଅଲଗା ଆଜ୍ଞା, ଏ ପେଚା କଥା ଅଲଗା ।"

"କିନ୍ତୁ କାହିଁକି ?" ପଚାରିଲେ ତରୁଣ । କଣ୍ଠରେ ଥିଲା ଅସହାୟ ଅଧୀରତା ।

"ଅଲଗା, ଆଜ୍ଞା, ଅଲଗା ।"

"ଓଃ, ଏମାନେ ମୋ ମୁଣ୍ଡ ଖରାପ କରିଦେବେ । କାହିଁକି ମୋ ପଛେ ପଛେ ବୁଲୁଛନ୍ତି ?" ଜମିଦାର କଟେଜ୍ ପିଣ୍ଡାକୁ ଉଠିବାକୁ ଉଦ୍ୟତ ହୋଇ ହଠାତ୍ ସେ ତାଙ୍କ ନୈଶ ବିହାରରେ ଅନୁଗମନ କରିଥିବା ନବାବ ଗୁମାସ୍ତାଙ୍କୁ ଲକ୍ଷ୍ୟ କରି କ୍ରୁଦ୍ଧ କଣ୍ଠରେ ପଚାରିଲେ ।

ବଳଭଦ୍ର ଓ ତାଙ୍କ ଦଳ ସେତେବେଳେ ଯାଇ ସଚେତନ ହେଲେ ଯେ ସେମାନେ ସ୍ୱ ସ୍ୱ ଚୌହଦ୍ଦି ଛାଡ଼ି ଜମିଦାରଙ୍କ ଅନୁଧାବନ କରି ଚାଲିଛନ୍ତି । ଦିନ ଥିଲା, ଯେତେବେଳେ ଜମିଦାର ବିଜେ ହୋଇଥିବା ବେଳେ କଟେଜ୍ ପାଖ ରାସ୍ତା ଦେଇ ଯିବାକୁ ହେଲେ ଦୁଇଥର ଭାବିବାକୁ ପଡ଼ୁଥିଲା । ସମୟ ବଦଳି ଗଲାଣି ବୋଲି ଆଉ ଥରେ ଅନୁଭବ କରି ଗ୍ରାମବାସୀମାନେ ଫେରିଲେ ।

"ହେ ଭଦ୍ରଲୋକମାନେ ଟିକିଏ ଶୁଣ ।" ଜମିଦାର ପଛରୁ ଡାକିଲେ ଓ ସେମାନେ ବୁଲିପଡ଼ିବାରୁ ବାରଣ୍ଡାକୁ ଦେଖାଇଦେଲେ । ଜମିଦାର ଆସିଲେ କଟେଜରେ ଡେ-ଲାଇଟ ଜଳିବା ବିଧି । ମଧ୍ୟେ ମଧ୍ୟେ ନିଷ୍ପ୍ରମାଣ ହୋଇପଡ଼ି ବଷ୍ଟୁବୃଷ୍ଟଗର୍ଜନ ସହକାରେ ତାହା ଆଜି ବି ଜଳୁଥିଲା ।

ନିଜ ନିଜ ସହଦାପତ୍ର ତଳେ ଥୋଇ ଗ୍ରାମବାସୀମାନେ ବସିଲେ ।

"ପେଚାକୁ ମାରିଦେଲେ କ'ଣ ହେବ ?" ଜମିଦାର ପଚାରିଲେ ।

"ସେଇ କଥା ତ ଆମେ କହୁଥିଲୁ । କ'ଣ ନ ହେବ ଆଜ୍ଞା ?"

"ଚୁପ୍ କର !" ଜମିଦାର ଆର୍ତ୍ତନାଦ କଲାଭଳି କହିଲେ, "ମୋତେ ସ୍ପଷ୍ଟ ଭାବରେ ଉତ୍ତର ଦିଅ—କ'ଣ ହେବ ?"

"ସର୍ବନାଶ ହେବ ।" ବଳଭଦ୍ର କହିଲେ ।

"ପୁଣି ଢଙ୍ଗଡ଼ମାଳ ଭାଷାରେ କଥା କହୁଛ ! ଭୁଲି ଯାଅନା, ମୁଁ ତମ ଜମିଦାରଙ୍କ ପୁଅ, ଏକମାତ୍ର ପୁଅ—ଉତ୍ତରାଧିକାରୀ । ବାପା ବେମାର ପଡ଼ି ନ ଥିଲେ ଆଉ ବର୍ଷ ଗୋଟିକରେ ଆଇନ୍ ପଢ଼ା ପୂରା ଶେଷ କରି ଗାଁକୁ ଫେରିଥାନ୍ତି । ମୋତେ ମୂର୍ଖ ଠଉରାଇ କଥା କହୁଛ କେଉଁ ସାହସରେ ? ମୁଁ ପଚାରୁଛି, ପେଚାକୁ ମାରିଲେ ହେବ କ'ଣ ?"

ଡେ-ଲାଇଟ୍ ଆଡ଼କୁ ବାରମ୍ବାର ଝପଟି ଯାଉଥିବା ଗୋଟାଏ ପ୍ରଜାପତିକୁ ରକ୍ଷା କରିବାର ଉଦ୍ୟମ କରୁଁ କରୁଁ ବଳଭଦ୍ର ତାଙ୍କ ପଛରେ ବସିଥିବା ଜଣକୁ ଲକ୍ଷ୍ୟ କରି କହିଲେ, "କି ହୋ ମାଷ୍ଟ୍ରେ, କହୁନ ?"

ହଠାତ୍ ମାଷ୍ଟ୍ରେ ବେଶ ଜୋରରେ କାନ୍ଦି ଉଠିଲେ । ତାଙ୍କ ହାତରେ ତାଙ୍କ ମୁହଁର୍ତ୍ତ୍ୟାଦାନର ଛୁରି ଦୁଇଗୁଣ ଭୟଙ୍କର ଦିଶୁଥିଲା । ଏବଂ ସେ ଛୁରି ଉପରେ ଆଖି ପଡ଼ିଯିବାରୁ ଶିହରି ଉଠ ପଚାରିଲେ ତରୁଣ ଜମିଦାର, “କ’ଣ ହେଲା ?”

ମାଷ୍ଟ୍ରେ ରକ୍ତ ସମ୍ବରଣ କରି ଅଣ୍ଟୁ ଉପରେ ମୁହଁ ପୋତି ବସିଲେ ।

“ଅଜ୍ଞ ! ମାଷ୍ଟ୍ରଙ୍କ ପୁଅ ବି ଥିଲା ଆପଣଙ୍କ ଭଳି ଏକୋଇର୍ ବାଲା । ଯେବେ ପୂର୍ଣ୍ଣିମା ରାତିରେ ପେଚା ଯେମିତି ହୁଟ୍ ଛୁଟ୍ କରୁଛି, ମନ୍ଦିର ପାଖରେ ଠିଆ ହୋଇ ତାକୁ ଫେଡ଼ିଭ ହୋଇ ମିଳିଥିଲା ଯେମିତି ଶବ୍ଦ କରିଥିଲା ମାତ୍ର । ବାସ୍ !” ବଳଭଦ୍ର କହିଲେ ।

“ବାସ୍ ମାନେ ?”

“ହଜିଗଲା ଆଜ୍ଞା; ହାତକୁ ଯାଇ ଆଉ ବାହୁଡ଼ିଲା ନାହିଁ । ନିରୁଦ୍ଦିଷ୍ଟ ।”

ମାଷ୍ଟ୍ରେ ମୁହଁ ଉଠାଇ ପୁଣି ରକ୍ତ କଲେ । ମନ୍ଦିର ପଶ୍ଚାଦ୍ଦେଶରୁ ପ୍ରତିଧ୍ୱନି ଭଳି ଶୁଭିଲା ନଦୀର ହୁଦ୍‌କେହୋ । ହାଲୁକାଏ ପବନରେ ଲିଭିଗଲା ଡେ ଲାଇଟ୍ । ତଥାପି ଅନ୍ଧାରରେ ସେ ଆହତ ସାପ ଭଳି ଶବ୍ଦ କରୁଥାଏ ।

“ଅଜ୍ଞ ଅପଣ ତ ପେଚାକୁ ମାରିଦେଲେ, ହତ୍ୟା କଲେ କୌଣସି ତୃଷ୍ଣାଳୁ ଗ୍ରାମବାସୀ କହିଲେ ।

ସେମାନେ ଏଥର ଉଠିଲେ । ଯୋଡ଼ାଏ ଚେମଣିଆ ଜମିଦାରଙ୍କ ମୁଣ୍ଡକୁ ପ୍ରାୟ ଛୁଇଁ ଦେଇ ଦୁଇ ଚାରିଥର କଳା ବିଦ୍ୟୁତ୍ ଭଳି ଏପଟ ସେପଟ ହୋଇ ଅଦୃଶ୍ୟ ହୋଇଗଲେ ।

“ତମେମାନେ କହିବାକୁ ଚାହୁଁଛ, ମୁଁ ମରିଯିବି ;” ତରୁଣ ଜମିଦାର ଏହା କହୁଁ କହୁଁ ସେହି ବାରନ୍ଦା ଉପରେ ବସି ପଡ଼ିବାରୁ ଗ୍ରାମବାସୀମାନେ ପଛକୁ ଫେରି ଚାହିଁ ଦେଖିଥିଲେ । ସେମାନେ କିଛି କହିବେ କହିବେ ବୋଲି କହିଲେ ନାହିଁ । ମେଘାବୃତ ଆକାଶ ତଳେ ଆକସ୍ମିକ ପବନରେ କଥା କହି ଉଠିଥିଲେ କେତେଗୁଡ଼ା ସମ୍ପ୍ରଦାୟୀ ବରଗଛମାନେ ଏବଂ ତାର ଉତ୍ତର ଦେଇଥିଲେ ପଶ୍ଚାତ୍ ଭାଗର ବାଉଁଶ ବଣ । ଦୂରାନ୍ତରରୁ ଶୁଭୁଥିଲା ଘଡ଼ଘଡ଼ି ମଧ୍ୟ । କିଶୋରରେ ପ୍ରକୃତିର କଥାବାର୍ତ୍ତା ଆଗରେ ଗ୍ରାମବାସୀମାନେ ନିଜ ଉପରର ସାମାନ୍ୟତା ଅନୁଭବ କରି ନୀରବରେ ଚାଲି ଯାଇଥିଲେ ।

ଅନେକ୍ର ଶୁଖିଲା ବରପତ୍ର ଝପଟି ଆସିଥିଲେ କେତେଗୁଡ଼ା ବାରନ୍ଦା ଉପରକୁ । ମ୍ଳାନ ଜହ୍ନ ଆଲୁଅରେ ସେମାନେ ଜୀବନ୍ତ ଓ ଭୟାବହ ମନେ ହୋଇଥିଲେ । ତରୁଣ ଜମିଦାର ସେମାନଙ୍କ କବଳରୁ ନିସ୍ତାର ପାଇବା ମାନସରେ ଚଟାପଟ କୋଠି ଭିତରକୁ ପଳାଇ ଯାଇଥିଲେ ।

ସେତେବେଳ ପବନ ରହିଥିଲା ବେଗମାନ ।

ଏବଂ ପରଦିନ ବି ପବନର ଗତି ରହିଥିଲା ଅବ୍ୟାହତ । ନଳାକୂଳରେ ବିପର୍ଯ୍ୟସ୍ତ ଉପକୂଳ ବାଲୁଚର ବ୍ୟାପି ନାନାଦି ପରିବର୍ତ୍ତନ ସାଧିତ ହୋଇଗଲା । କେତେ ବାଲୁଦ୍ୱୀପ ବିଲୁପ୍ତ ହେଲେ; ନୂତନ ଦ୍ୱୀପ ଗଠିତ ହେଲେ ।

ସେ ପବନରେ ଉପଦ୍ରୁତ ହୋଇ ଦିନ ଦଶଟା ମୁଣ୍ଡା ଚଦର ଓଣ୍ଟି କି ସମ୍ଭାଳି ବଳଭଦ୍ର ଦାସ କୋଠି ଝରକା ପାଖରେ ଉଭା ହୋଇଥିଲେ । ତାଙ୍କ ପଛରେ ରହି ଉଙ୍କି ମାରୁଥିଲେ ମାଷ୍ଟ୍ରେ ଏବଂ ଅନ୍ୟମାନେ ।

"ମୁଁ ମଲିଣି କି ନାହିଁ ଦେଖିବାକୁ ଆସିଛ ?" ଶେଯ ଉପରୁ ଧମକ ଦେଇ କହିଥିଲେ ଜମିଦାର ! ତାଙ୍କ ସ୍ୱର ଯେପରି ଅନ୍ୟ ଜଗତରୁ ଆସୁଥିଲା । ଗ୍ରାମବାସୀମାନେ କିଛି କହି ନଥିଲେ । ସେମାନଙ୍କ ଦୃଷ୍ଟିରେ ବିରକ୍ତିର ବା ପ୍ରତିବାଦର ସାମାନ୍ୟ ଲକ୍ଷଣ ମଧ୍ୟ ନଥିଲା । ଥିଲା କେବଳ ଏକ ଦୁର୍ନିବାର ଭବିତବ୍ୟକୁ ଲକ୍ଷ୍ୟ କରିବାର ଦୁଃଖଦାୟକ ଦାୟିତ୍ୱବୋଧ । ନଗାର୍ଦ୍ଧରେ ହଠାତ୍ ଅଜସ୍ର ଶୁଖିଲା ପତ୍ରଙ୍କ ଆକ୍ରମଣରେ ଚମକି ପଡ଼ି ସେ ଯେ ଜ୍ୱରଗ୍ରସ୍ତ ହୋଇ ପଡ଼ିବେ ଏବଂ କ୍ରମେ ଜ୍ୱର ବଢ଼ି ଚାଲିବ, ସେଥିରେ ଯେପରି ଗ୍ରାମବାସୀମାନଙ୍କର ବିସ୍ମିତ ହେବାର କୌଣସି ହେତୁ ନଥିଲା । ଏପରି କିଛି ହୋଇ ନଥିଲେ ହିଁ ଯେପରି ସେମାନେ ବିସ୍ମୟ ଅନୁଭବ କରିଥାନ୍ତେ !

ସେମାନେ ପୁଣି ଆସି ଉଙ୍କି ମାରିଥିଲେ ଦ୍ୱିପ୍ରହର ବେଳେ । ସେମାନଙ୍କୁ ଦେଖି ଜମିଦାର ଭୟାର୍ତ୍ତ ବୋବାଳି ଛାଡ଼ିଥିଲେ ।

ସେମାନେ ପୁନର୍ବାର ଆସିଥିଲେ ସନ୍ଧ୍ୟାରେ । ଶେଯ ଉପରେ ଛଟପିଟି ହୋଇ ଜମିଦାର ଡେଡେବେଳେ ଅର୍ଦ୍ଧଜ୍ଞାନ ଅବସ୍ଥାରେ କବିରାଜଙ୍କୁ କହୁଥିଲେ, "ମୁଁ ମା' ପାଖକୁ ଯିବି !"

"ଛି, ହଜୁର ! ସେପରି ଅମଙ୍ଗଳ କଥା କହନ୍ତୁ ? ଆପଣଙ୍କ ମା' ପରା ଦଶବର୍ଷ ହେଲା ଗତ ହେଲେଣି ।" କବିରାଜ କହିଥିଲେ । ତାଙ୍କ ଉକ୍ତିର ନା ବୁଝିବା ଭଳି ଅବସ୍ଥାରେ ତରୁଣ ନଥିଲେ ।

ଜମିଦାରଙ୍କ ଗଡ଼ରୁ ରାତି ଦୁଇ ପହରବେଳକୁ ପାଲିଙ୍କି ପହଞ୍ଚିଲା । ଅଧିକା ଯୋଡ଼ିଏ ତେଲ ଲଣ୍ଠନ ବି ଆସିଥିଲା । କିନ୍ତୁ ପ୍ରବଳ ପବନରେ ସେମାନେ ବାରମ୍ବାର ଲିଭିଯାଇ ଫଁ ଫଁ ହେଉଥିଲେ ।

ଆସିଥିଲେ ଡାକ୍ତର । ସେ ରୋଗୀର ଅବସ୍ଥା ପରୀକ୍ଷା କରି ଭୋର ଯାଏ ଅପେକ୍ଷା କରିବାକୁ କହିଲେ । ଆସିଥିଲା ଜଣେ ବୁଢ଼ା ପୋଇଲା । କୋଠି ଭିତରୁ କାଚର ଭଙ୍ଗା ଅଂଶମାନଙ୍କ ଦେଇ ତା'ର କରୁଣ କରୁଣ କାନ୍ଦଣା ଝରି ଆସୁଥିଲା ।

କାନ୍ଦଣାର ସେ ମୃଦୁତା ଅପରିବର୍ତ୍ତିତ ରହିଥିଲା ପରବର୍ତ୍ତୀ ଦିନ ବ୍ୟାପି ଏବଂ ଅନେକ ରାତି ଯାଏ । ତା' ପରେ ତାହା ହୃଦଫଟା ଚିତ୍କାରରେ ପରିଣତ ହୋଇଥିଲା ।

ସେ ରାତିରେ ମେଘ ନ ଥିଲା । ଅତଏବ ତରୁଣ ଜମିଦାରଙ୍କ ଶୀର୍ଣ୍ଣ ମୃତଦେହ ଚିତ୍ୟବେଳେ ଦର୍ବାର ଭିତରକୁ ବୋହି ନେବାବେଳକୁ ଗ୍ରାମବାସୀମାନେ ତାଙ୍କୁ ସ୍ପଷ୍ଟ ଦେଖି ପାରୁଥିଲେ । ସେ ବୃହତ୍ ଦେବାଙ୍ଗରେ ପଦ୍ମଫୁଲ ଧରିଥିବା ପରୀମାନଙ୍କ ରଙ୍ଗୀନ୍ ଚିତ୍ର ଲିଭି ଲିଭି ଆସି-ଥାଏ । ମୃତ ତରୁଣଙ୍କ ଜେଜେବାପା ନୂଆ କରି ଜମିଦାର ହେବାବେଳେ ଏଥିରେ ସୁନାର

ତାରକସି କାମ ଖଞ୍ଜା ହୋଇଥିବାର ଜନଶ୍ରୁତି ରହିଥିଲା । କଣ୍ଠଦେଶ ତଳଯାଏ ଏହା ବିବିଧ ରଙ୍ଗର କାଚମାଳା ଦ୍ୱାରା ଶୋଭିତ ଥିବାର ଲୋକେ ଦେଖିଥିଲେ ।

ସବାରୀ ପଛେ ପଛେ ଦୌଡ଼ୁଥିଲା ଯୋଇଲା । ଡାକ୍ତର କଦବା ସାଇକେଲ ଚଢ଼ି କଦବା ଗଡ଼ାଇ ତା'ର ଅନୁସରଣ କରୁଥିଲେ । କାନ୍ଧରେ ଛତା ଧାରି, ଟର୍ଚ୍ଚ ହସ୍ତେ ଦୌଡ଼ୁଥିଲେ ଗୁମସ୍ତା । ଡେ-ଲାଇଟମାନ ଜାଳିବାର ପ୍ରୟୋଜ ଆଉ ବୁଝାଯାଇ ନଥିଲା ।

ଗ୍ରାମବାସୀମାନେ ଗ୍ରାମ ସୀମାନ୍ତ ଯାଏ ସବାରୀର ଅନୁସରଣ କରି ଫେରି ପଡ଼ୁଥିଲେ ।

ଦୀର୍ଘ ସମୟ ସେମାନେ ସ୍ତବ୍ଧ ରହିଥିଲେ । ଜହ୍ନ କ୍ରମେ ଅବସନ୍ନ ଦିଶୁଥିଲା ।

"ହୁଇ୍ ହୁଇ୍ ।"

"ଏଁ ! ସେ କ'ଣ ! ପେଚୁ ମରି ନାହିଁ ?" ଚମକିପଡ଼ି ଥର ଥର କଣ୍ଠରେ କହୁଥିଲେ ବଳଭଦ୍ର ଦାସ । ତା'ପରେ ଅଧିକାଂଶ ଲୋକେ ଆଁ କରି ସ୍ୱର ଗୋଟି ଜଗୁଆଳ ଭଳି ତାଳଗଛ ପଛରେ ଥିବା ମନ୍ଦିର ଆଡ଼କୁ ଅନାଇ ବସିଥିଲେ । କିନ୍ତୁ କାହାରି ମୁହଁରୁ କଥା ବାହାରି ନଥିଲା ।

ପାଞ୍ଚମିନିଟ୍ କାଳ ରାବ କରି ପେଚୁ ଚୁପ୍ ହେଲା । ମାତ୍ରେ ମନ୍ଦିରେ ଥରେ ଧକେଇବାର ବନ୍ଦ ହେଲା ।

ଦୀର୍ଘ ସମୟ ପରେ ପୂର୍ବଦିଗରେ କଷ୍ଟିତ ଆଲୋକର ଆଭାସ ଦେଖାଗଲା । ପକ୍ଷୀମାନେ ଧରଣୀର ଜାଗରଣ ବୋଲି ଜଣାଇବାର ପ୍ରଥମ କଳରବ ଆରମ୍ଭ କରୁଥିଲେ ।

"ଶୁଣାଯାଏ, ଜମିଦାରୀ କୁଆଡ଼େ ଉଠିଯିବ ?" ଜଣେ କେହି ପ୍ରଶ୍ନ କଲେ ।

କେହି ଉତ୍ତର ଦେଲେ ନାହିଁ । ବାତାବରଣ ଗାମ୍ଭୀର୍ଯ୍ୟ ତୁଳନାରେ ଏ ପ୍ରଶ୍ନ ଶୁଣିଥିଲା ହାଲୁକା ଓ ଅପ୍ରାସଙ୍ଗିକ ।

---

['ନବରବି' ପୂଜାସଂଖ୍ୟା, ସପ୍ତମ ବର୍ଷ, ସେପ୍ଟେମ୍ବର ୧୯୬୨ ।]

# ଚିଡ଼ିଆଖାନା

—ଅଚ୍ୟୁତାନନ୍ଦ ପଂଡ

ସମସ୍ତେ ହସୁଥିଲେ । ନରନାରାୟଣ ସିଂହ ଅପମାନ ଓ ଯନ୍ତ୍ରଣାର ଜଳନ୍ତା ଚୁଲି ନିଆଁ ଉପରେ ଯନ୍ତ୍ର ହୋଇ ନିଜ ଭିତରେ ନିଜେ ପିଣ୍ଡୁଳା ଧରି ଯାଉଥିଲା । ତା ଚନ୍ଦ୍ରାର ନିସ୍ପୃହ ଶଙ୍ଖୁଆ ଖାଇ ଆପଣାକୁ ସଙ୍କୁଚିତ କରି ନିଜର ଗାତ ଭିତରେ ମୁହଁମାଡ଼ି ମୁଣ୍ଡ କୋଡ଼ୁଥିଲା । ନିଜର ଦାନ୍ତ ଦାଢ଼ରେ ନିଜକୁ ଖଣ୍ଡିଆଖାବରା କରି ନିଜ ଉପରେ ନିଜର ରାଗକୁ ଖଲାସ କରିବା ଛଡ଼ା ତା'ର ଅନ୍ୟ ବାଟ ନ ଥିଲା । ସମସ୍ତେ ଗୁହାଁଗୁହିଁ ହୋଇ ଉଠାଣି ମେଘର ଦୁମ୍‌ଦୁମ୍‌ ବର୍ଷା ପରି ମଝିରେ ମଝିରେ ହଠାତ୍ ହସର ପେଣ୍ଡାଳି ଫୁଟୁ-ଥିଲେ । ସେମାନଙ୍କ ଉପୁମୁକୁଳିଆ ହସ ଓ ମିଠା ମିଠା ଟିଟିକାରି ତା' ମନ ଉପରେ ଗ୍ଲାନମନ୍ୟତାର ଢିଙ୍କି ପାହାର ପକାଉଥିଲା ।

ଘଟଣାଟା ଏଇମିତି ଥିଲା । ନରନାରାୟଣ ଶୋଇବା ଆଗରୁ କବାଟକୁ ଆଣ୍ଠିକଣ୍ଠି କରି ଦେଇଥିଲା । ସ୍ଥିର ପାଞ୍ଚ ଥର କବାଟକୁ ଝିଙ୍କି କବାଟ କିଲା ହୋଇଛି ବୋଲି ନିଶ୍ଚିତ ହେଲେ ବି, ବିଛଣାରେ ଶୋଇବା ଆଗରୁ ପୁଣି ଥରେ ଉଠି କବାଟକୁ ଟାଣି ପରୀକ୍ଷା କରିଥିଲା । ଲଣ୍ଠନ ତେଜି ଦେଇ ଖଟତଳ, ଆଲମିରା ସନ୍ଧି ସବୁଆଡ଼ ତଲାସି ନେଇଥିଲା । ଆଜିକାଲି ଏକୁଟିଆ ଶୋଇବା ତା' ପକ୍ଷରେ ମୋଟେ ସମ୍ଭବ ହୋଇପାରୁ ନ ଥିଲା । ନିର୍ଜନତାର ଭୂତ ବେଳକୁବେଳ ତା' ଉପରେ ସବାର ହୋଇ ବେଶି ବେଶି ଉତ୍ପାତ କରୁଥିଲା । ସେ ଏକୁଟିଆ ରହିଲେ ତା' ମନ ଉପରେ ଅସ୍ତେ ଆସ୍ତେ କଟିକଟିଆ ଅନ୍ଧାର ଢାଙ୍କି ହୋଇ ଆସୁଥିଲା । ଆଉ ସେ ଅନ୍ଧାରର ଦାଣ୍ଡି ଉପରେ ପଞ୍ଝା ପଞ୍ଝା ବାଘ, ଭାଲୁ, ଶିଆଳ, କୁକୁର, ସାପ, ବେଙ୍ଗ, ମୂଷା, ଚୂଚୁନ୍ଦ୍ରା ଦାନ୍ତ କାଢ଼ିଲେଇ ଭୋଜିଭାତର ନୃତ୍ୟ ଆରମ୍ଭ କରି ଦେଉଥିଲେ । ସେ ଶୋଇବା ଆଗରୁ ହୁସିଆର ହୋଇ ତା' ମାଉସୀପୁଅ ଭାଇ ଅବନୀ ଉପରେ ହାତ ପକେଇ ଆଖି ବୁଜିଥିଲା । ହଠାତ୍ ତା' ନିଦ ଭାଙ୍ଗିଗଲା । ସେ ଦେଖିଲା ଝରକାଟା ମେଲା ହୋଇଛି । ବନ୍ଦ ଝରକାଟା ଖୋଲା ହୋଇଛି ଦେଖି ସେ ହଠାତ୍ ଘାବରେଇ ଗଲା । ଝରକା ଆଡ଼କୁ ସେ ଡରି ଡରି ଚାହିଁଲା । ଝରକା ସେପାଖର ଜହ୍ନପଟକୁ ମେଞ୍ଚାଏ ଆକାଶ ବାଦୁଡ଼ି ଭଳି ଝୁଲିପଡ଼ିଛି । ପୁଳାଏ ମେଘର କଳା କଟିକଟି ଆଁ ଭିତରେ ଖଣ୍ଡିଆ ଜହ୍ନଟା ଅଇଁଠିଆ ବିମ ଭଳି ମିଳାଇ ଯାଉଛି । ଗଛକେନାର ଗୁମ୍ଫା ଭିତରୁ ଅନ୍ଧାରର ମହାବଳମାନେ ହୁଗା ମାରି ତା' ଉପରେ ଦୁଲୁଦାଲୁ ପଡ଼ୁଛନ୍ତି । ଆଉ ତା ଡାହାଣକୁ ଚାପି

ଦେଇ ତା' ଗ୍ରୀବ ଉପରେ ନର୍ଧୂମ ଗିଷ୍ଟ କରୁଛନ୍ତି । ନରନାରାୟଣ ଝରକାଆଡ଼ୁ ଉପରେ ମୁହଁ ଫେରାଇ ଘର ଭିତରେ ଆଖି ବୁଲାଇଲା । ଖଟତଳେ ଲଣ୍ଠନଟା ମିଇଁ ମିଇଁ ହୋଇ ଜଳୁଥିଲା । ଦକ୍ ଦକ୍ ଲଣ୍ଠନର ଫିକା ଫିକା ଅଲୁଅର ଧାସ ଅଲ୍ପ ଯଫା ଧୋଉ ପର କାନ୍ଥ ଉପରେ ଝଟା ହୋଇଥିଲା । ତା' ମଶୁର ବାଡ଼ାରେ ଫୋପଡ଼ା ହୋଇଥିବା ଲୁଗାର ଅଗମାନେ ଭୂହା ଭୂହା ପବନରେ ଅଗପଛ ପଶୁଥିଲେ ହେଉଥିଲେ । ଆଉ ସେମାନଙ୍କର ଛାଇ କାନ୍ଥ ଉପରେ ତାଆଁଣୀ ଅଲୁଅର ପରଦା ଉପରେ ମେଜିସିଏନ୍ ବ୍ଲାକ ଆର୍ଟର ଭୂତପଲ ଧାଁ ଦୌଡ଼ କରୁଥିଲେ । ନରନାରାୟଣ ଭୟରେ ହେମାଲ ଯାଇ ଆଖି ବନ୍ଦ କରିଦେଲା । ମଝିରେ ମଝିରେ ଅଜ୍ଞ ଭୟରେ ସେ ଆଖି ଖୋଲିବାକୁ ବାଧ୍ୟ ହେଉଥିଲା । ଇସ୍, ତା'ପରେ ଝରକାଆଡ଼ୁ କାନ୍ଥ ଉପରେ ଗୋଟାଏ ବିକଟାଳ କଳାବାଘର ଛାଇ ଡ଼ାଆଁ ମାରି ଝପଟି ଆସିଲା । ନରନାରାୟଣର ପାଟି ଆଫା ଆଫା ହୋଇଗଲା । ସେ ଗଁ ଗଁ ହୋଇ ହାଉଳିଖାଇ ଅବନୀକୁ ପ୍ରାଣପଣେ କୁଣ୍ଢାଇ ଧରିଲା । ତା'ପରେ ଅବନୀ ନିଦ ବାଉଳାଟରେ ପାଟିକରି ଉଠିଲା । ଅବନୀ ଦେହରେ ତା' ହାତ ଜାବ ପଡ଼ିଯାଇଥିଲା । ଘରେ ସମସ୍ତେ ଜମା ହେଲେ । କବାଟ ଖୋଲିଗଲା । ପଡ଼ିଶାଘରୁ ଲୋକ ବି ଉଠିଆସିଲେ । ନରନାରାୟଣର ହାତକୁ ଝିଙ୍କି ଝିଙ୍କି ଅବନୀ ଦେହରୁ କଷ୍ଟରେ ମୁକୁଳେଇବାକୁ ପଡ଼ିଲା । ଅବନୀ ବୟାନ କଲା ଯେ, ଏ ଛେଉଁଆ ନରଭାଇ ତାକୁ ଜଏ ଖାଇଯିବ ବୋଲି ଲଣ୍ଠନକୁ ଟେକ ଦେଇ କବାଟ ଝରକା କିଳ ଶୋଇ ପଡ଼ିଥିଲା । ତା' ମୁହଁରେ ଅଲୁଅ ଧାସ ପଡ଼ିବାରୁ ସେ ଲଣ୍ଠନ କମାଇ ଖଟତଳେ ରଖିଲା । ଗରମ ହେବାରୁ ଝରକାଟା ଖୋଲିଦେଲା । ତା'ପରେ ତାକୁ ନିଦ ଅସି ଯାଇଥିଲା । କିନ୍ତୁ କ'ଣ ହେଲା କେଜାଣି ନରଭାଇ ତାକୁ କୁଣ୍ଢେଇ ମୁଣ୍ଡେଇ ବୋଧହୁଏ ବାଘ ବାଘ ବୋଲି ହାଉଳି ଖାଇଲା । ସେ 'ବାଘ' ତ କହିପାରୁ ନ ଥିଲା । ଖାଲି ଗଁ ଗଁ ହୋଇ ବା, ବା, ହେଉଥିଲା । ଏତକବେଳେ କାଳିଆଭୁଆ ବରିତ୍ତଟା ଅତର୍ଚ୍ଛିରେ ଲୋକଙ୍କ ଗୋଡ଼ସନ୍ଧ ଭିତରେ ଗଳି ଗଳି ଉଡ଼ନ୍ କୁ ମାରିଲା । ତା'ପରେ ହୋଇ ବାଘ ପଳେଇଲା, ବାଘ ପଳେଇଲା ବୋଲି ଅଟ୍ଟା ତାମଦାର ନର୍ଘାତ ହସରେ ଘରର କାନ୍ଥବାଡ଼ ଦୁଲୁକି ଉଠିଲା । ନରନାରାୟଣ ଅନୁଭବ କଲା ଯେ ସେମାନଙ୍କ ହସର ଶାବଳ ମାଡ଼ରେ ଘରର କାନ୍ଥ ଶୁଳା ଶୁଳା ହୋଇ ଦୁଲ୍ ଦାଲ୍ ତା' ଉପରେ ଖସିପଡ଼ୁଛି ।

ସମସ୍ତେ ହସି ହସି ଥକ୍କା ହୋଇ ଶୋଇପଡ଼ିଲେ । ଅଳ୍ପସମୟ ପରେ ଅବନୀ ବି ତା' ପାଖରେ ଘୁଙ୍ଗୁଡ଼ି ମାରିଲେ । ଅବନୀ ଗ୍ରହିଁଥିବାଯାକେ ନରନାରାୟଣ ତା' ଆଡ଼ୁ ମୁଲାଜାରେ ମୁହଁ ବୁଲାଇ ଆଖିବୁଜି ମିଛରେ ନିଦ ହେଇଛୁ ବୋଲି ଘାଲେଇ ପଡ଼ିଥିଲା । ହାତ ଗ୍ରୀହାରେ ଗଣ୍ଠି ପଡ଼ିଥିବା ତମ୍ବାର ତେଉଁରିଆଟାକୁ ଜଲଦ ଜଲଦ ରଗଡ଼ୁଥିଲା । ସେଦିନ ବଜାରରୁ ଫେରୁ ଫେରୁ ବଜାରମୁଣ୍ଡ ମୋଡ ଦୋକାନ ପାଖ ଠାକୁରାଣୀ ଗଛ ମୂଳରେ ଲୋକ ଆଠ ଦଶ ହେବେ ଘେରିକ ଠିଆ ହୋଇଥିଲେ । ଗ୍ରମବେଶଧାରୀ ଜଣେ ଜଙ୍ଗଲୀ ସାଧୁ ହାତ ଦେଖି ଆଗତ-ଭବିଷ୍ୟ କହୁଥିଲେ ଓ ମୁଣିରୁ ଗ୍ରମଙ୍କ ନାମଧର ଜଡ଼ିବୁଟି

କାନ୍ଧି ଲୋକଙ୍କୁ ବାଣ୍ଟୁଥିଲେ । ନରନାରାୟଣ ସେଠାରେ କିଛି ସମୟ ଅଟକି ଯାଇଥିଲା । ନିରୁତିଆ ହୋଇଯିବାରୁ ସେ ଏକାନ୍ତରେ ନିଜର ହାତ ଦେଖାଇ ଏବଂ ସେ ସବୁବେଳେ ଭୟ ପାଉଛି ବୋଲି ସବୁକଥା କହି ଭୟ ଖଣ୍ଡନର ବ୍ୟବସ୍ଥା ଲୋଡ଼ିଥିଲା । ରାମଭକ୍ତ ଜଙ୍ଗଲୀ ବାବା ନରନାରାୟଣର ହାତ ପାପୁଲିର ଗାରଗୁଡ଼ାକ ଉପରେ କିଛି ସମୟ ସ୍ଥିର ଦୃଷ୍ଟି ଦେଇ ପରେ ଭୁଇଁରେ ଗାର କାଟି କାଟି ମିଶାଣ ଫେଡ଼ାଣର ଅଙ୍କ କଷିଲେ । ତା'ପରେ ଅଳ୍ପ ମୁଣ୍ଡ ହଲାଇ ଅତି ଗମ୍ଭୀର ଭାବରେ ଯାହା ବଖାଣ କଲେ ତା'ର ସାରମର୍ମ ହେଉଛି ନର-ନାରାୟଣକୁ ଜନ୍ତୁପ୍ରେତ ଗ୍ରାସ କରିଛି । ଗୋଟିଏ ଜାଗାରେ ତେରଟା ବାଘ, ତେଇଶି ଘର ହାତୀ, ତେତିଶଟା ଭାଲୁ, ତେସ୍ତାଳିଶ ଘୋଡ଼ା ନାଗ, ତେପନ କୋଡ଼ି ବିଲୁଆ ଆଉ ଅନ୍ୟ ଜୀବଜନ୍ତୁ ଗୋଟିଏ ମୋଟ ତେଷଠି ପଣ ଛନ ଗଣ୍ଡା ମଲେ ସେଠି ଜନ୍ତୁପ୍ରେତ ଜନ୍ମନିଏ । ଏ ପ୍ରେତ ସାଧାରଣତଃ ଗଛ ଉପରେ ଥାଏ । ଲମ୍ବା ଚଉଡ଼ା ମରଦ ଦେଖିଲେ ତା' କାନ୍ଧ ଉପରକୁ ଓହ୍ଲାଇ ଆସେ । ଏ ପ୍ରେତ ଜୀବଜନ୍ତୁର ଭୟ ଦେଖାଇ ମଣିଷର ରକ୍ତ ଶୋଷି-ନିଏ । ନରନାରାୟଣ ଉଆଁପୁରା ମଣିଷ ହୋଇଥିବାରୁ ତା' ଉପରେ ଜନ୍ତୁପ୍ରେତ ଆକ୍ରା କରି ଯାଇଛି । ତା'ପରେ ସାଧୁବାବା ମୁଣି ଭିତରୁ ତେଉଁରିଆଟେ କାଢ଼ି ମନେ ମନେ କ'ଣ ଗୁଣୁ ଗୁଣୁ ହୋଇ ନରନାରାୟଣ ହାତକୁ ବଢ଼ାଇ ଦେଲେ ଶନିବାର ଅଧିଆ' ମୁହଁରେ ନାଲି ସୂତାରେ ଏଗାର ଗଣ୍ଠି ପକାଇ ତେଉଁରିଆକୁ ହାତବାହାରେ ବାନ୍ଧି ବିପଦ ବେଳେ ରାମନାମ ଜପିବାକୁ ନିର୍ଦ୍ଦେଶ ଦେଇଥିଲେ । ଅବନୀ ଶୋଇ ପଡ଼ିଥିଲା । ନରନାରାୟଣ ରାମନାମ ଜପି ତେଉଁରିଆକୁ ଟିପରେ ଚିପି ଧରିଥିଲା ।

ସେ ବୁଝିପାରୁ ନଥିଲା, ସେ କାହିଁକି ଏମିତି ଅହେତୁକ ଭୟରେ ସବୁବେଳେ ଜଡ଼-ସଡ଼ ହୋଇ ପଡ଼ୁଛି । କେବଳ ଡର ଡର ପବଣିଆ ଦେହଟା ତା'ର ଦିନକୁ ଦିନ ଲୁଣ ହାଣ୍ଡି ପରି ମିଳେଇ ଯାଉଛି । ସେ ଏକୁଟିଆ କିଛି ସମୟ ରହିଲେ ହଠାତ୍ ତା ମନ କେମିତି କାଳୁଆ ଧରି ଯାଉଥିଲା । ତା'ପରେ ଦେହ ଶୀତେଇ ଉଠି ଫୁଲି ଫୁଲି ପଡ଼ୁଥିଲା । ଅବସାଦର ଏକ ଉତ୍କଟ ନିଶାରେ ତା' ମଗଜ ଭିତରେ ଭାବନାର ଖିଅସବୁ ଗୁଡ଼େଇ ମୁଡ଼େଇ ହେଇ ଅଡ଼ୁଆ ହୋଇ ଯାଉଥିଲା ଏବଂ ନିଜର ଧାରାବାହିକ ଚିନ୍ତାରୁ ସେ ଓହରି ଆସି ଏକ ଶୂନଶାନ ଅବସ୍ଥାରେ ପହଞ୍ଚି ଯାଉଥିଲା । ତା'ପରେ କିଛି ବୁଝିପାରୁ ନଥିଲା । ଠିକ୍ ତା' ପରେ ପରେ ଭୁଣ୍ଡା ଭୁଣ୍ଡା ବାଘ, ଭାଲୁ, ସାପ, ଶିଆଳମାନେ ଦାନ୍ତ କଡ଼ମଡ଼ କରି ତା ଦେହରୁ ସବୁ ମାଂସକୁ ଛଡ଼ାଇ ନେବାକୁ ଚେଷ୍ଟା ବଢ଼ାଉଥିଲେ । ସେ ଅତିରିକ୍ତ ଭୟରେ ଚିତ୍କାର କରି ଉଠୁଥିଲା ଏବଂ ବେଳେବେଳେ ବେହୋସ ହୋଇ ଯାଉଥିଲା । ଲୋକବାକ ଆସିଗଲେ ସେ ସବୁ ମିଛ ବୋଲି ଜାଣୁଥିଲା । ତା'ର ଏମିତିକା ଚଙ୍ଗ୍ଲାଙ୍ଗ ଦେଖି ଦାଣ୍ଡ ଘାଟରେ ଛୁଆ ପିଲାଏ ମଧ୍ୟ ତାକୁ ଦେଖିଲେ 'ହେଇ ସାପ, ହେଇ ବେଙ୍ଗ' ବୋଲି ଟାହିଲି କରିବାକୁ ଲାଗିଲେ । ସର୍ବସାଧାରଣରେ ନରନାରାୟଣ ସିଂହ ନାଁ ତା'ର ବଦଳା ପାଇଁ ଏଣିକି ତା ଡାକ ନାଁ ଛେରୁଆ ସିଂହ ହୋଇଗଲା । ବୟସ୍କ ଲୋକେ ଗାଁରେ

ହସୁବ, ମୂହୁର୍ତ୍ତ ଡାକ ନାଁ ସବୁ ଧରି ନିର୍ବିକାରରେ ଡାକିଲା ପରି ତାକୁ ଛେରୁଆ ବୋଲି ବିନା ଦ୍ୱିଧାରେ ଡାକିଲେ । ନରନାରାୟଣର ପୁଅ ବିଜୟେ ବି ଗେହ୍ଲେଇ ହେଇ ଦାଣ୍ଡ ଘାଟରେ ତାକୁ 'ଛେରୁଆ ବାବା' ବୋଲି ହୁରି ପକାଇଲା । ଛେରୁଅ, ଛେରୁଆ, ଉକ୍ତ ସମ୍ବୋଧନର ଲଙ୍କାଧୂଆଁ ଭିତରେ ଅସୁସ୍ଥ ମନ ତା'ର କାଶି କାଶି ବେଦମ ହୋଇ ଉଠୁଥିଲା । ସେ ନିଜ ଉପରେ ନିଜେ ଖୁବ୍ ରାଗୁଥିଲା; କିନ୍ତୁ ସେ ନାଚାର ଥିଲା । ଉଦ୍ବେଗ ବିକଟାଳ ଭ୍ରୂଙ୍କର ଭୂତ ସବୁବେଳେ ଛାଇପରି ତା'ର ପିଚ୍ଛା ଧରିଥିଲା । ଏକୁଟିଆ ଏପରିକି ପାଇଖାନାରେ କିଛି ସମୟ ବସିବାକୁ ତା'ର ଭରସା ପାଉ ନ ଥିଲା । ବନ୍ଧୁବାନ୍ଧବଙ୍କ ଘରକୁ ଯାଇ ଦିନେ ଅଧେ କଟାଇବା ତା ପକ୍ଷରେ ଏଣିକି ଅସମ୍ଭବ ହୋଇ ପଡ଼ିଲା । ଲାଜରେ ସେ ପାଞ୍ଚଜଣଙ୍କ ପାଖରେ ମିଶିପାରୁ ନ ଥିଲା । ଏଣେ ଏକୁଟିଆ ବି ରହିପାରୁ ନ ଥିଲା । ଘରର ଲୋକେ ତାକୁ କଅଁଳା ପିଲାପରି ଗୋଡ଼େ ଗୋଡ଼େ ଜଗିବାକୁ ଚଢ଼ିଚଢ଼ି ହେଉଥିଲେ । ସେ ଦିନକୁ ଦିନ ନିଜକୁ ଅତି ଅସହାୟ ମଣିଲା । ନିଜର ଏପରି ଏକ ଅପଦସ୍ତ ଓ ଅଦରକାରି ଜୀବନ ଉପରେ ସେ ଆସ୍ତେ ଆସ୍ତେ ବୀତସ୍ପୃହ ହୋଇ ପଡ଼ିଲା । ମରିଯିବାର ଇଚ୍ଛା ତା ଭିତରେ ପ୍ରବଳ ହୋଇ ଉଠୁଥିଲା । ନିଜକୁ ଶେଷ କରି ଦେବାପାଇଁ ସେ କେତେଥର ପ୍ରସ୍ତୁତି ନେଇଥିଲା, କିନ୍ତୁ ଅସଲ ବେଳଟାରେ ସେ ଏତେ ଡରି ଯାଉଥିଲା ଯେ, ମରିପାରୁ ନ ଥିଲା, କେବଳ ଧରାପଡ଼ି ଅପଦସ୍ତ ହେଉଥିଲା ।

ପ୍ରଥମେ ପ୍ରଥମେ ଘରେ ତାକୁ ନେଇ ହାସ୍ୟମଜଲିସ କରୁଥିଲେ । ତା ପାଖରେ ଥଟ୍ଟା ନ ହେବା ଲୋକ ବି ଲୋଭ ସମ୍ଭାଳି ନପାରି ପଦେ ଅଧେ କହି ଅନ୍ୟମାନଙ୍କୁ ହସୁକାଇ ଦେଉଥିଲେ ଏବଂ ସେ ସମସ୍ତଙ୍କର ଶରବ୍ୟ ହୋଇ ଯନ୍ତ୍ରଣାରେ କେବଳ ଛଟପଟ ହେଉଥିଲା । ତା ମନ ଭିତରର ପୋକଟରା ଘାଆକୁ ସେ ରାମ୍ପି ରାମ୍ପି ରକ୍ତ କାଢ଼ୁଥିଲା ଏବଂ ତାପରେ ଘାଆର ଜଳାପୋଡ଼ାରେ ବିହ୍ୱଳ ବିକଳ ହୋଇ ନିର୍ଧୂମ କାନ୍ଦୁଥିଲା । ଯିଏ ଯା କହିଲା ଏଣିକି ସେସବୁ ଥଟ୍ଟା ବୋଲି ଭାବିଲା ଏବଂ ଟିକିଏ କଥାରେ ଫୁଁଉ ଫୁଁଉ ହୋଇ ସକେଇବାକୁ ବସିଲା । ସେ ନିଧାର୍ଯ୍ୟରୂପେ ଧରି ନେଲା ଯେ ଉଦ୍ବେଗ ଭୂତ ତାକୁ ଖାଇବାକୁ ଆରମ୍ଭ କରିଛି ଏବଂ ଖୁବ୍ ଜଲଦି ତାକୁ ଚୋଇଦେଇ ଚାଲିଯିବ । ସେ ନିଶ୍ଚୟ ଶୀଘ୍ର ମରିଯିବ, ଏ ଚିନ୍ତା ତାକୁ ଅଧିକ ଉଦ୍ବାଉର କଲା ଏବଂ ଅଧିକାଂଶ ବେଳେ ସେ ଭାବି ଭାବି ଅଚେତ ହୋଇ ପଡ଼ିବାକୁ ଲାଗିଲା । ବର୍ତ୍ତମାନ ଘରେ ବାପ, ମା ଓ ଅନ୍ୟମାନେ ତା ପାଇଁ ପ୍ରମାଦ ଗଣିଲେ । ତାକୁ ଭୂତ ଗ୍ରାସ କରିଛି ବୋଲି ସାବ୍ୟସ୍ତ କରି ଭୂତ-ପତିଙ୍କୁ ସନ୍ତୁଷ୍ଟ କରିବା ଲାଗି ମହାଦେବଙ୍କ ଅଭିଷେକ କରାଗଲା, ତାଙ୍କ ଉପରେ ବେଲପତ୍ର ଚଢ଼ାଗଲା, ତାଙ୍କ ମୁଣ୍ଡରେ ପାଚିଲା କଦଳୀ ଚପା ଗଲା ଏବଂ ତାଙ୍କର ପ୍ରଦୋଷ ପୂଜାର ବ୍ୟବସ୍ଥା ବି କରାଗଲା, ପେତନୀମାନଙ୍କୁ ଆୟତ୍ତ କରିବା ଲାଗି ମହାକାଳୀଙ୍କୁ ପଞ୍ଚମକାର ପୂଜା ଦିଆଗଲା । ତା ପରେ ନାମଜାଦା ଗୁଣିଆମାନେ ଆସି ବେଶ୍ ଟଙ୍କା ପଇସା ନେଇ ଭୂତ ନିଷ୍କାସନର ଅଦ୍ଭୁତ ଦୃଶ୍ୟସବୁ ଦେଖାଇଲେ । ପ୍ରାୟ ପ୍ରତିଦିନ ନୂଆ ନୂଆ ସାଧକମାନେ ଆସିଲେ । ଯାନିଯାତ୍ରାରେ ଲୋକଙ୍କ ଭିଡ଼ ଜମିଲାପରି ଛୁଡହରଣ

ପାଲି ଦେଖିବେ ବୋଲି ତାଙ୍କ ଘରେ ଲୋକ ଅସି ଗଦେଇ ହେଲେ । ତାଙ୍କ ଦାଣ୍ଡ ଅଗରେ ଚନାବାଦାମ ଓ ପାନଦୋକାନ ବସିଲା । କେଉଁ ଗୁଣିଆ ଆସି ଚନ୍ଦ୍ରଗ୍ରହଣ ରାତିରେ ଭୂତ ଛାଡ଼ିଯିବ ବୋଲି ତାକୁ ଲଙ୍ଗଳା କରି ଅରୁଠ ବାଟେ ପର୍ଯ୍ୟ ଗଡ଼ିଆ ପାଣିରେ ବୁଡ଼୍ ଉଠ କରି ଅଣନିଶ୍ୱାସୀ କଲା ତ ଆଉ କେଉଁ ଗୁଣିଆ ଭୂତ ବମୁର୍ଚ୍ଛିଆ ହୋଇ ପଳାଇଯିବ ବୋଲି ତା ପାଟିରେ କଞ୍ଚା ବେଙ୍ଗ କାଟି ପୁରାଇଲା । କିଏ ତା ଦେହରେ ଲୁହାକଣ୍ଟା ନିଆଁରେ ପୋଡ଼ି ଦାଗିଲା ତ, କିଏ ତାକୁ ପାଣିଗାଧୁ କାମୁଡ଼ାଇ ଗାଁମୁଣ୍ଡ ଲଣ୍ଡା ଓସ୍ତଗଛମୂଳେ ନେଇ ଛାଡ଼ିଲା । ନରନାରାୟଣ ବୁଝୁଥିଲା ଯେ, ତା ଉପରେ ଏମାନେ ଗାଢ଼ମତ ଅତ୍ୟାଚାର କରୁଛନ୍ତି । ଏସବୁ କରିବାକୁ ତାର ବିଲକୁଲ ଇଚ୍ଛା ନ ଥିଲେ ବି କାଳେ କିଛି ଫଳ ମିଳିବ ବୋଲି ସେ ସବୁ କରି ଯାଉଥିଲା ।

ଜଡ଼ିବୁଟି, ଝଡ଼ାଫୁଙ୍କା, ପୂଜାପାଠ ପ୍ରଭୃତି ସବୁ ଉପଚାର ସରିଗଲା ପରେ ତା' ବାପା ତାଙ୍କର ଜଣେ ପୁରାତନ ଡାକ୍ତର ବନ୍ଧୁଙ୍କ ପାଖରେ ତାକୁ ନେଇ ଛାଡ଼ିଲେ । ଡାକ୍ତର ବନ୍ଧୁ ନରନାରାୟଣର ଭାର ନେଲେ ଓ ରାଜିହୋଇ ନିଜ ପାଖରେ ରଖିଲେ । ଡାକ୍ତର କିଛିଦିନ କେବଳ ନୀରବରେ ନରନାରାୟଣକୁ ଅନୁଧ୍ୟାନ କରିବାକୁ ଲାଗିଲେ । ଥରେ ରାତିରେ ନରନାରାୟଣକୁ ହଠାତ୍ ଡାକି ଉଠାଇଲେ । ସେ ଉଠି ଦେଖିଲା ତା ଶୋଇବା ଘରର ଗୋଟାଏ କୋଣରେ ସାପ ସିମେଣ୍ଟ ଚଟାଣ ଉପରେ ଘୁଞ୍ଚୁରି ଘୁଞ୍ଚୁରି ବୁଲୁଛି । ଡାକ୍ତର ନରନାରାୟଣକୁ ଗୋଟାଏ ବାଡ଼ି ଚଞ୍ଚଳ ଆଣିବାକୁ ନିର୍ଦ୍ଦେଶ ଦେଲେ । ନରନାରାୟଣ ସେତେବେଳେ ଭୟରେ ଗୋଟିପଣ କେବଳ ଥରୁଥିଲା, କିନ୍ତୁ ଡାକ୍ତର ରାଗରେ ଚିତ୍କାର କରିବାରୁ ସେ ଡରି ଡରି ବାଡ଼ି ଖଣ୍ଡେ ଆଣିଲା । ଡାକ୍ତର ହଠାତ୍ ସାପର ଫଣାଟାକୁ ଜୋତାରେ ମାଡ଼ି ବସି ନରନାରାୟଣକୁ ସାପକୁ ମାରିବାକୁ ପିଟିବାକୁ ବାଧ୍ୟ କଲେ । ତା' ହାତ କାଲୁଆ ମାରିଗଲା ଏବଂ ହାତ ଢ଼ିଲା ହୋଇଯିବାରୁ ବାଡ଼ିଟା ଖସି ପଡ଼ିଲା ।

ଡାକ୍ତର ବାଡ଼ିଟାକୁ ଉଠାଇ ନେଇ ସାପର ପିଠିକୁ ଖୁବ୍ ଜୋରରେ ଆଘାତ କଲେ ଏବଂ ଅଳ୍ପ ସମୟ ପରେ ସାପଟା ମରିଗଲା । ଡାକ୍ତର ସାପଟାକୁ ନେଇ ବାହାରକୁ ଗଲେ । ତାଙ୍କୁ ସାପ ଧରିକରି ଥିବା କେଲାଟାକୁ ମଲାସାପଟା ଏବଂ ତା' ପୋଷା ସାପର ମୂଲ୍ୟ ବାବଦକୁ ଟଙ୍କା ଚୁକ୍ତି କରିଦେଇ ଚୁପ୍‌ଚାପ୍ ଫେରି ଆସିଲେ ।

ଡାକ୍ତର ଘର ଭିତରକୁ ଆସି ଦେଖିଲେ ନରନାରାୟଣ ସେଇମିତି ଅପଲକ ଆଖିରେ ସାପ ମରିଥିବା ଜାଗାଟାକୁ ବଲ ବଲ କରି ଚାହିଁ ରହିଛି । ଡାକ୍ତର ଆସି କିଛି ସମୟ ତୀକ୍ଷ୍ଣ ଦୃଷ୍ଟିରେ ନରନାରାୟଣକୁ ଦେଖିବାକୁ ଲାଗିଲେ । ନରନାରାୟଣ ତାଙ୍କର ଉପସ୍ଥିତିକୁ ଖିଆଲ କରି ପାରୁ ନଥିଲା । ଡାକ୍ତର ତାକୁ ହଲାଇ ଦେଇ ତାଙ୍କ ଆଡ଼କୁ ତା' ମୁହଁକୁ ବୁଲାଇ ଦେଲେ ।

ତା'ପରେ ଡାକ୍ତର ପ୍ରଶ୍ନ କଲେ—

'କ'ଣ ଦେଖିଲ ?'

ହଠାତ୍ ଉତ୍ତର ମିଳିଲ 'ସାପ' ।

'ଆଉ କ'ଣ ଦେଖିଲ ?'

'ଗୋଖର ସାପ ।'

'ତା' ଛଡ଼ା ଅଧିକ କ'ଣ ଦେଖିଲ ?

'ଗୋଖର ସାପର ଫଣାଟା ଚଉଗୁଣ ହୋଇ ଉପରକୁ ଉଠିଥିଲା ।'

'ହଁ ଯେ, ଆଉ କିଛି କ'ଣ ଦେଖିନ ?'

'ସେ ଫଣା ଭିତରେ ତା'ର ବିଷଦାନ୍ତ ଓ ବିଷମୁଣା ଥିଲା ।'

ସେ ସବୁ ଦେଖିଲ ଯେ, ତା'ପରେ କ'ଣ ଦେଖିଲ ?'

'ଗୋଖର ସାପ ମତେ ମାରିବାକୁ ଆସୁଥିଲା ।'

ଡାକ୍ତର ନରନାରାୟଣ ପିଠିରେ ହାତ ଥାପୁଡ଼ାଇ କହିଲେ—'ତମେ ଅସଲ କଥାଟାକୁ ଦେଖି ଭୁଲି ଯାଇଛ । ଗୋଖର ସାପକୁ ତମେ ଆଉ ମୁଁ ମିଶିକି ମାରିଦେଲେ । ଡାକ୍ତର ପୁଣି ପଚାରିଲେ—'ଆମେ କିଏ ?'

ନରନାରାୟଣ ଟିକିଏ ଭାବି ଅଟକି ଅଟକି ହୋଇ କହିଲା—'ତୁମେ ଡାକ୍ତର, ମୁଁ ରୋଗୀ । ଡାକ୍ତର ତାଙ୍କର ଆବଶ୍ୟକୀୟ ଉତ୍ତର ପାଇବା ପାଇଁ ପୁଣି ପ୍ରଶ୍ନ କରିବା ବାଧ୍ୟ ହେଲେ—

'ଆମେ ଦୁଇଜଣ କ'ଣ ?

ସେ ଉତ୍ତର ଦେଲା—'ଆମେ ଦୁଇଜଣ ମଣିଷ ।'

ଡାକ୍ତର ଖୁବ୍ ଖୁସିରେ ନରନାରାୟଣର କଥାକୁ ଦୋହରାଇ କହିଲେ—'ହଁ, ଅମେ ଦୁଇଜଣ ମଣିଷ । ତା ପରେ ସେ ନରନାରାୟଣ ଆଖି ଆଗରେ ନିଜର ଆଖିକୁ ସିଧା କରି ରଖି ଅତି ଦୃଢ଼ ଭାବରେ କହିଲେ—'ଆମେ ଦୁଇଜଣ ମଣିଷ । ଆମେ ମଣିଷ ଦୁଇଜଣ ମିଶି ଭୟଙ୍କର ଗୋଖର ସାପଟାକୁ ପିଟି ପିଟି ମାରିଦେଲେ । ଏମିତି ଯେତେ ସାପ ଆମେ ସମସ୍ତଙ୍କୁ ବାଡ଼େଇ ବାଡ଼େଇ ମାରି ଦେଇ ପାରିବା । କ'ଣ କହୁଛ ?

ନରନାରାୟଣ ଡାକ୍ତରଙ୍କ ଆଖିକୁ ଗ୍ରହି କିଛି ସାହସ ସଞ୍ଚୟ କରି କହିଲା—'ହଁ ।'

ତା ଦୁଇଦିନ ପରେ ଡାକ୍ତର ନରନାରାୟଣକୁ ଧରି ସକାଯ୍ ଦେଖିବାକୁ ବାହାରିଲେ ।

ପ୍ରଥମେ ପ୍ରଥମେ ନରନାରାୟଣ ଯିବାକୁ ଭାରି ଅମଙ୍ଗ ହେଲା । ଡାକ୍ତର ତାକୁ ଡରେଇଲେ ଯେ ଯଦି ସେ ତାଙ୍କ କଥା ନ ମାନିବ ଯେ ତାକୁ ଘରକୁ ଫେରାଇ ଦେବେ

ଏବଂ ଗୁଣିଆ ଆସି ପୁଣି ଲୁହାକଣ୍ଟା ନାଆଁରେ ପଶୁଇ ତାକୁ ଲୁଚେଇବେ । ଗୁଣିଆମାନଙ୍କ ଅତ୍ୟାଚାର କଥା ଭାବି ନରନାରାୟଣ ହଠାତ୍ ଦବିଗଲା । ଶେଷରେ ସେ ଯିବାକୁ ରାଜି ନ ହେଲେ ବି ନ ଯିବାକୁ ଜିଦ୍ ଧଇଲା । ଡାକ୍ତର ଆଗ ସିଟରେ ତାକୁ ପାଖରେ ବସାଇ ସର୍କାସ୍ ଦେଖି ବସିଲେ । ଭାଲୁ ଆସିଲା । ନରନାରାୟଣର ସାରା ଦେହଟା ଜରରେ କମ୍ପି ଉଠିଲାପରି ଥରୁକିବାକୁ ଲାଗିଲା । ସେ ଡାକ୍ତରଙ୍କ ହାତକୁ ଜାବୁଡ଼ି ଧରି ତାଙ୍କ ଆଡ଼କୁ ଢଳି ପଡ଼ିବାକୁ ବସିଲା । ଡାକ୍ତର ତାକୁ ଖୁବ୍ ଜୋରରେ ହଲାଇ ଦେଇ ତା ମୁଣ୍ଡକୁ ଆଗକୁ ଠେଲି ଦେଲେ—'ହେଇ ଦେଖ, ଜଣେ ମଣିଷ ଭାଲୁଟାକୁ ଚାବୁକ ମାରି କେମିତି ତାକୁ ଗୁରୁବଳ କାମ କରାଉଛି । ଭାଲୁ ରିଙ୍ଗ୍ ମାଷ୍ଟରକୁ ଶକ୍‌ହାରେ ବସାଇ ଟାଣୁଥିଲା । ଟିକିଏ ଉଲମ ବାଲମ କଲେ ପିଠିରେ ତା'ର ଫଟ୍‌ଫାଟ୍ ଚାବୁକ ବସୁଥିଲା । ନରନାରାୟଣ ମଟ ମଟ ଆଖିରେ ଚାହିଁ ରହିଲା । ତା ପରେ ବାଘ, ସିଂହ ଏକାଠି ଗୁଡ଼ାଏ ବାହାରିଲେ । ରିଙ୍ଗ୍‌ମାଷ୍ଟରର ଲାଠି ଠେଙ୍ଗା ଖାଇ ସେମାନେ ମଝିରେ ମଝିରେ ଦାନ୍ତ ଦେଖାଇ ବାଡ଼ିଟାକୁ ନିଜ ଆଡ଼କୁ ଛଡ଼ାଇ ନେବାକୁ ଚେଷ୍ଟା କରୁଥିଲେ । ନରନାରାୟଣର ଛାତି ଭିତରଟା ହଠାତ୍ ହେମାଳ ହେମାଳ ଲାଗିଲା, ସେ ଦେଖିଲା ଯେମିତି ସବୁ ବାଘ, ସିଂହମାନେ ତା ଉପରେ ଆଖି ବୁଲାଉଛନ୍ତି । ଡାକ୍ତର ପୁଣି ତାକୁ ଝୁଙ୍କାଇ ଦେଇ ଦେଖାଇଦେଲେ ମଣିଷଠୁଁ ମାଡ଼ ଖାଇ ବାଘ ସିଂହଗୁଡ଼ାକ ନିଆଁ ଭିତରେ ଗଲିଲେ । ଶେଷରେ ରିଙ୍ଗ୍‌ମାଷ୍ଟର ଗୋଟାଏ ସିଂହ ଉପରେ ବସିଲା । ଅନ୍ୟ ବାଘ ସିଂହମାନେ ତା ଆଗରେ ତାଙ୍କର ଆଗପଞ୍ଝା ଦୁଇଟାକୁ ଯୋଡ଼ି ହେବାକାରି ଭୃତ୍ୟ ଭଳି ତାକୁ ଅଭିବାଦନ ଦେଲେ । ସର୍କସର ଝିଅମାନେ ରିଙ୍ଗମାଷ୍ଟରକୁ ବାଘରଜା ବୋଲି ଗୀତବୋଲି ଧୂପ ବୁଲାଇ ବନ୍ଦାପନା କଲେ ।

ସର୍କସ୍‌ରୁ ଫେରିଲେ ବେଳେ ନରନାରାୟଣ ମଝିରେ ମଝିରେ ଅନ୍ୟମନସ୍କ ରହୁଥିଲା । ଡାକ୍ତର ତା ସଙ୍ଗରେ ଗପସପ ଆରମ୍ଭ କଲେ । ଡାକ୍ତର କହୁଥିଲେ—'ଆଚ୍ଛା, ତମେ ବୋଧହୁଏ ଜର୍ମାନ ମଣିଷଖିଆ ହିଟଲର୍ ର ନାଁ ଶୁଣିଥିବ । ତା'ର ଆଉ ଜଣେ ଇକ୍‌ମେନ୍ ବୋଲି ସୈନ୍ୟାନ ସାଙ୍ଗ ଥିଲା । ସେ ଜାନୁଆରି କେଇଜଣ ହଜାର ହଜାର ନିରୀହ ଲୋକଙ୍କୁ ତାଙ୍କ କଂସେଇ ଖାନାକୁ ଠେଲିଆଣି ପୋକ ମାଛି ପରି ମାରି ପକେଇ ଦେଇଥିଲେ । ବିଚରା ଲୋକମାନଙ୍କର କିଛି କସୁର ନଥିଲା । କେବଳ ଏଟା ବଦମାସଙ୍କ ଖିଆଲ ପାଇଁ ଗୋଟାଏ ଜାତିକୁ ସେମାନେ ଶୂନ୍ୟ କରିଦେବେ ବୋଲି ବସିଥିଲେ । କେବଳ ହିଟଲରର ସଉକ ପାଇଁ ହିଟଲରର ଗୋଳାବାରୁଦ ଆଗରେ କେତେ ଦେଶରେ ଲକ୍ଷ ଲକ୍ଷ ଲୋକ ମାଟି କାମୁଡ଼ି ମରି ଶୋଇଲେ । ୟାହ୍ୟା ଖାଁ ବଙ୍ଗଳା ଦେଶରେ କ'ଣ ନକଲା ? ତିରିଶଲକ୍ଷ ଲୋକଙ୍କୁ ଶୁଖିଲା ପତ୍ର ପରି ସଙ୍ଗୀନ ମୁନରେ ଉଡ଼ାଇ ଦେଲା । ତା'ର ଦୁର୍ଦ୍ଦାନ୍ତ ସୈନ୍ୟ-ସାମନ୍ତମାନେ ନଈରୁ ଜାଲରେ ମାଛ ଛୁଣିଲା ପରି ହଜାର ହଜାର ସୁବତୀ ଝିଅଙ୍କୁ ଜବରଦସ୍ତ ଧରିଆଣି ତାଙ୍କ ଦେହର ମିଠା ମିଠା ମାଂସକୁ ରାକ୍ଷସ ଭଳି ଝୁଣିଖାଇ ସାରି

ମାଛକଣ୍ଟା ପରି ଅମୁହାଁ କୂଅ ଭିତରକୁ ଫିଙ୍ଗିଦେଲେ । ବାଘ ଭାଲୁଙ୍କଠାରୁ ମଣିଷ କ'ଣ ଆହୁରି ଭୟଙ୍କର ନୁହେଁ ?

ଡାକ୍ତରଙ୍କ କଥାକୁ ନରନାରାୟଣ ଶୁଣୁ ଶୁଣୁ ସର୍କସ ବାଘ ସିଂହଙ୍କ ବିକଟାଳ ମୁହଁ ତାକୁ ବିଲକୁଲ ଭୁଲି ଯାଇଥିଲା । 'ବାଘ ଭାଲୁଠାରୁ ମଣିଷ କ'ଣ ଅଧିକ ଭୟଙ୍କର ନୁହେଁ' – ଡାକ୍ତରଙ୍କ ଶେଷ କଥାପଦକ ନରନାରାୟଣ ମନ ଭିତରେ ମହୁମାଛି ପରି ଗୁଣୁ ଗୁଣୁ ହେଉଥିଲା ।

କିଛିଦିନ ପରେ ଡାକ୍ତର ନରନାରାୟଣକୁ ଧରି କଲିକତା ଚାଲି ଯାଇଥିଲେ । ଡାକ୍ତର ତାକୁ କେତେଥର କହିଛନ୍ତି ଯେ ସେ ଯେମିତି ପାଞ୍ଚହାତିଆ ଜୁଆଁ ମରଦ ନା, ସେ ଯଦି ନିଜକୁ ଟିକିଏ ସଜାଡ଼ି ନିଅନ୍ତା, ସେ ଜଣେ ନାମଜାଦା ରିଙ୍ଗମାଷ୍ଟର ହୋଇ ବାଘରାଜା କ'ଣ ସିଂହାଧିପତିର ଉପାଧିଟା ନିଶ୍ଚୟ ମାରି ନିଅନ୍ତା । ଡାକ୍ତର ବି ତାକୁ ସେଦିନଠାରୁ ରିଙ୍ଗମାଷ୍ଟର ବୋଲି ଡାକୁଥିଲେ । ରିଙ୍ଗମାଷ୍ଟର ଓ ଡାକ୍ତର କଲିକତା ଯାଇ ଚିଡ଼ିଆଖାନା ପାଖରେ ଘରଭଡ଼ା ନେଇ ରହିଲେ । ପ୍ରତିଦିନ ଡାକ୍ତର ତାକୁ ନେଇ ସାପ ବାଘ, ଭାଲୁ, ସିଂହଙ୍କ ପିଞ୍ଜରା ପାଖରେ ଠିଆ କରାନ୍ତି ।

ସେମାନେ ମହା ହିଂସ୍ର ଓ ବଡ଼ ଶକ୍ତିଶାଳୀ ହେଲେ ବି ମଣିଷର ଦାସ ହୋଇ କିପରି କାକୁସ୍ଥ ଜୀବନ କଟାଉଛନ୍ତି ସେ ବିଷୟରେ ଏଣୁ ତେଣୁ ଯୋଡ଼ି ଯାଡ଼ି ଡାକ୍ତର ରିଙ୍ଗମାଷ୍ଟରକୁ କିଛି କିଛି ଟାଣୁଆ ଭାଷଣ ଶୁଣାନ୍ତି । ଡାକ୍ତରଙ୍କ ରିଙ୍ଗମାଷ୍ଟର ପ୍ରଥମଦିନ ସେମାନଙ୍କୁ ଦେଖି ଦେଖି ହଠାତ୍‌କିନା ହଡ଼ବଡ଼ ହୋଇ ପଡ଼ିଲା ଏବଂ ପୁରୁଣା ଡର ବେମାରର ପ୍ରାରମ୍ଭିକ ଉପସର୍ଗରୂପେ ଅଖି ବୁଜି ପଳାଇ ଯିବାକୁ ବସିଲା । ଡାକ୍ତର ତାଙ୍କ ରିଙ୍ଗମାଷ୍ଟରକୁ ଅଟକାଇ ଧରି ତା ଲମ୍ବା ଲମ୍ବା ବାହାକୁ ଚିପିଚିପି ତା ଚେହେରାକୁ କେବଳ ପସନ୍ଦ ନୁହେଁ, ହିଂସା କରୁଛନ୍ତି ବୋଲି କିଛି ଖୁସାମତି ଶୁଣାଇଲେ ଏବଂ ଭବିଷ୍ୟତ ସିଂହାଧିପତି ହେବାର ସ୍ୱପ୍ନକୁ ତା ଭିତରେ ଚେତାଇ ଦେଇ ତାକୁ ଟାଇଗନର କୋଠରୀ ଆଡ଼କୁ ଭିଡ଼ିନେଲେ । ସିଂହ ବାଘର ସମ୍ମିଶ୍ରଣରେ ଟାଇଗନ ଏକ ମହାଶକ୍ତିଶାଳୀ ଅଲଭ୍ୟ ପଶୁ ବୋଲି କହିବା ଢଙ୍ଗେ ଢଙ୍ଗେ ତା ସୃଷ୍ଟିରୁ ତା ଶେଷ ପର୍ଯ୍ୟନ୍ତ ସେ ମଣିଷର ଗୋଲାମ ହୋଇ ରହିବ ବୋଲି ରିଙ୍ଗମାଷ୍ଟରକୁ ଭଲ ଭାବରେ ବୁଝେଇ ଦେଇଥିଲେ । ନରନାରାୟଣ ଡାକ୍ତରଙ୍କ କଥାଗୁଡ଼ାକ ଭଲକରି ଶୁଣୁଥିଲା ଏବଂ ଯଥେଷ୍ଟ କ'ଣ ବୁଝୁଥିଲା ।

ଥରେ ନରନାରାୟଣ ହଠାତ୍ ଏକୁଟିଆ ଉଠି ଟାଇଗନର ପିଞ୍ଜରା ଆଡ଼କୁ ଆଗେଇ ଗଲା । ଟାଇଗନ ନାରାୟଣକୁ ଦେଖି ତା ବାଘର ଲାଙ୍ଗୁଳ ପିଟି ସିଂହ ଭଳି ଗର୍ଜି ଉଠିଲା । ନରନାରାୟଣ ନିଜ ମୁଣ୍ଡ ଉପରେ ହାତରଖି ତଳପାରୁ ତାଳୁ ପର୍ଯ୍ୟନ୍ତ ନିଜକୁ ମନେ ମନେ ମାପି ନେଲା । ସେ ଅସାଧାରଣ ଭାବରେ ବହୁତ ଉଞ୍ଚା । ସେ ତା ବାହାକୁ ଦେଖିଲା । ହାତର ପବଗୁଡ଼ାକ ବିଶେଷ ମୋଟା ନ ହେଲେ ବି ଯଥେଷ୍ଟ ଲମ୍ବା । ସିଂହାଧିପତି ହେବାର

ଉପାଦାନ ତା ଦେହରେ ଯଥେଷ୍ଟ ମହଜୁଦ ଅଛି । ନରନାରାୟଣ ଆଖିକୁ ଟିମା ଟିମା କରି କଟମଟ କରି ଟାଇଗର ଆଖିରେ ଆଖି ମିଳାଇ ଚାହିଁଲା । ଟାଇଗର ଗର୍ଜି ଉଠିଲା । ନରନାରାୟଣ ତା ଦନ୍ତ ତାଳ ପକାଇ ତା ଗର୍ଜନର ପ୍ରତିଧ୍ୱନି ପରି ନିଜେ ବି ଭୟଙ୍କର ଚିତ୍କାର କଲା । ଟାଇଗର ଆହୁରି ଜୋରରେ ନିଶ ଫୁଲାଇ ଲାଙ୍ଗୁଡ଼ ବାଡ଼େଇ ପୁଣି ଏକ ଗର୍ଜନ ଦେଲା । ନରନାରାୟଣ ନିଜର ସବୁ ତାକତକୁ ଖଟାଇ ପରେ ପରେ ଆସ୍ଫାଳନ ଦେଇ ଏକ ବିକଟାଳ ଭୀମ ରଡ଼ି ଛାଡ଼ିଲା । ହଠାତ୍ ନରନାରାୟଣର ମୁଣ୍ଡ ଘୁରିଗଲା । ସେ ଅନୁଭବ କଲା ଯେ ସେ ଡେଙ୍ଗା ହୋଇ ହୋଇ ମୁଣ୍ଡ ତା'ର ସୂର୍ଯ୍ୟଲୋକଯାଏଁ ଲମ୍ବି ଲମ୍ବି ଯାଇଛି । ସେ ଦେଖୁଥିଲା ସେ ହିଟଲର, ଇକ୍ମେନ୍ ପରି ହଜାର ହଜାର ମଣିଷର ବେକପଶିକୁ ରଡ଼ ରଡ଼ ମୋଡ଼ିଦେଇ ଚଅଁ ଚଅଁ ରକ୍ତ ପିଇ ଯାଉଛି । ପୁଣି ହିରୋହିଆ ଖାଁ ହୋଇ ସଙ୍ଗୀନ୍ ଭୂଷି ଲକ୍ଷ ଲକ୍ଷ ଲୋକଙ୍କ ଫୁଲ-କଲିଜାକୁ ଓଟାରି ଆଣି ଚୁକୁ ଚୁକୁ କରି ଚୋବେଇ ଖାଉଛି । ଶହ ଶହ ଯୁବତୀ ଝିଅଙ୍କ ଉଷ୍ଣ ଉଷ୍ଣ ଛନ ଛନ ସ୍ତନକୁ ତା ଗୋଞ୍ଜିଆ ଗୋଞ୍ଜିଆ ନଖରେ ଛିଣ୍ଡେଇ ଆଣି କଲ କଲ କରି ଚୋବୁଲେଇ ଯାଉଛି । ସେ ଟାଇଗର ଆଡ଼େ ଚାହିଁଲା । ଗୋଟାଏ କଅଁଳ ଶେଯଛୁଆ ଭଳି ସେ ତା ଆଡ଼କୁ ଜୁଳୁଜୁଳୁ କରି ଅନେଇ ରହିଛି । ତା'ର ବିକଟାଳ ବିଶ୍ୱରୂପକୁ ଦେଖୁଁ ଦେଖୁଁ ଟାଇଗରକୁ ଝୋଲ ମାରିଗଲା ଏବଂ ସେ ହଠାତ୍ ଟଳି ପଡ଼ିଲା । ନିରୀହ, ନିର୍ଦ୍ଦୋଷ ଏକ ଶିଶୁ ସନ୍ତାନର ଉତ୍ପୀଡ଼ିତ ମୃତ୍ୟୁ ଦେଖି ଅନ୍ତର ତା'ର ହାହାକାର କରି ଉଠିଲା । ସେ ହାତରେ ପିଞ୍ଜରାର ଲୁହା ରେଲିଂ ଉପରେ ଏକ ଶକ୍ତ ଧକ୍କା ଦେଲା । ସେ ଭାବିଲା ଯେ ସେ ସମୁଦାୟ ପୃଥିବୀଟାକୁ ଗୁହିଁ ଗୁହିଁ ଗିଳି ପକାଇବ । ଏତେବଡ଼ ପୃଥିବୀ, ଏତେ ବେଶୀ ମଣିଷ, ଏତେ ବହୁତ ସମ୍ପତ୍ତି ସେ ଏକୁଟିଆ ଖାଇଯିବ ? ତା'ର ଏତେବଡ଼ ହିଂସ୍ରତାକୁ ସେ ବରଦାସ୍ତ କରି ପାରିଲାନି । ପୃଥିବୀକୁ ରକ୍ଷା କରିବାକୁ ହେଲେ ତାକୁ ସେ ନିଜେ ବନ୍ଦୀ କରିବ । ହଁ, ଏ ନିରୀହ ପୃଥିବୀକୁ ଏ ଅସୁର-ମୁହଁରୁ ବଞ୍ଚେଇବାକୁ ହେଲେ ତା ଗୋଡ଼ରେ ସେ ନିଜେ ଜଞ୍ଜିର ବାନ୍ଧିବ । ସେ ଦେଖିଲା ଟାଇଗରର ପାଖ ପଞ୍ଜରାଟା ଖାଲି ପଡ଼ିଛି । ହଠାତ୍ ସେ ନିଜେ ପିଞ୍ଜରା ଭିତରକୁ ପଶିଗଲା ଏବଂ ଦରଜାଟାକୁ ଭିତର ପାଖରୁ ଖୁବ୍ ଶକ୍ତ କରି ଠେଲି ଧରିଲା ।

ପରେ ନରନାରାୟଣକୁ ନ ଦେଖି ଡାକ୍ତର ଦୌଡ଼ ଦୌଡ଼ ଆସି ଟାଇଗରର ପିଞ୍ଜରା ପାଖରେ ପହଞ୍ଚିଲେ । ନରନାରାୟଣ ଭୟଙ୍କର ଭାବରେ ଚିତ୍କାର କରି ଉଠିଲା—'ଡାକ୍ତର, ଶୀଘ୍ର ମୋ ପିଞ୍ଜରାର ସେ ପାଖରୁ ପାଞ୍ଚଦଶଟା ଶକ୍ତ ଶକ୍ତ ତାଲା ଆଣି ପକେଇ ଦିଅ । ନ ହେଲେ ଏ ପୃଥିବୀ ଧ୍ୱଂସ ହୋଇଯିବ ।'

ଡାକ୍ତର କେବଳ ବଲବଲ କରି ନରନାରାୟଣର ମୁହଁଆଡ଼େ ସନ୍ଦେହୀ ଆଖିରେ ଚାହିଁ ରହିଥିଲେ ।

---

[ଲେଖକଙ୍କର 'ଅଶୁଭ ପୁରୁଷର କାହାଣୀ' ଗଳ୍ପ ସଙ୍କଳନରୁ ସଂଗୃହୀତ ।]

# ଗାଳ୍ପିକ ପରିଚିତି

## ଫକୀରମୋହନ ସେନାପତି

ଓଡ଼ିଆ ସାହିତ୍ୟର ଦିଗ୍‌ବଳୟରେ ଫକୀରମୋହନଙ୍କ ଅଭ୍ୟୁଦୟ ଏକ ଐତିହାସିକ ଘଟଣା । ସାହିତ୍ୟର ବିଭିନ୍ନ ବିଭାଗରେ ସଫଳତାର ସହିତ ଲେଖନୀ ଚାଳନା କରିଥିଲେହେଁ ମୁଖ୍ୟତଃ ତାଙ୍କର କଥା-ସାହିତ୍ୟ ହିଁ ତାଙ୍କୁ ଓଡ଼ିଆ ସାହିତ୍ୟରେ ଅମର କରିପାରିଛି । ୧୮୪୩ ମସିହା ଜାନୁଆରୀ ୧୭ ତାରିଖରେ ଏହି ବରେଣ୍ୟ ପ୍ରତିଭା ବାଲେଶ୍ୱରର ମଲ୍ଲିକାଶପୁରରେ ଭୂମିଷ୍ଠ ହୋଇଥିଲେ । ୧୯୧୮ ମସିହା ଜୁନ ୧୪ ତାରିଖରେ ତାଙ୍କର ତିରୋଭାବ ହୋଇଥିଲା ।

ଫକୀରମୋହନ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ ଓ ଓଡ଼ିଆ ଉପନ୍ୟାସର ଆଦ୍ୟପର୍ବର ଗର୍ବ ଓ ଗୌରବ । ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକ ଗଳ୍ପସ୍ୱଳ୍ପ ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗରେ ସନ୍ନିବିଷ୍ଟ ହୋଇଛି । 'ସଭ୍ୟ ଜମିଦାର' କ୍ଷୁଦ୍ରଗଳ୍ପଟି ଗଳ୍ପସ୍ୱଳ୍ପ ପ୍ରଥମ ଭାଗରୁ ସଂଗୃହୀତ ।

## ଦୟାନିଧି ମିଶ୍ର

କବିତା, କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନାରେ ଦୟାନିଧି ମିଶ୍ର ଏକଦା ଓଡ଼ିଆ ସାହିତ୍ୟରେ ନୂତନ ଆଶାର ପ୍ରତୀକ ରୂପେ ପ୍ରତିଭାତ ହୋଇଥିଲେ । ଐତିହାସିକ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ରଚନାରେ ତାଙ୍କର ଅସାଧାରଣ କୃତିତ୍ୱ ଦେଖିବାକୁ ମିଳେ । ତାଙ୍କ 'କଥା କଦମ୍ବ' (କ୍ଷୁଦ୍ରଗଳ୍ପ ସଞ୍ଚୟନ) ଏବଂ 'ନନ୍ଦନତାରା' ଉପନ୍ୟାସ ଏହି ସତ୍ୟର ସଙ୍କେତ । 'ଅରୁଣା' କ୍ଷୁଦ୍ରଗଳ୍ପଟି ତାଙ୍କର 'କଥା କଦମ୍ବ' କ୍ଷୁଦ୍ରଗଳ୍ପ ସଞ୍ଚୟନରୁ ସଂଗୃହୀତ ହୋଇଅଛି ।

## ଉପେନ୍ଦ୍ର କିଶୋର ଦାସ

'ବାରୁଣୀ' ପତ୍ରିକାରେ ଉପେନ୍ଦ୍ର କିଶୋରଙ୍କ କ୍ଷୁଦ୍ରଗଳ୍ପ ପ୍ରକାଶିତ ହୋଇ ତାଙ୍କୁ ସେ ସମୟରେ ବହୁ ପ୍ରଶଂସିତ କରିଥିଲା । 'ମଲାଜହ୍ନ' ଉପନ୍ୟାସର ରଚୟିତାରୂପେ ଓଡ଼ିଆ ସାହିତ୍ୟରେ ସେ ସୁଖ୍ୟାତ । ଉପନ୍ୟାସ ପରି କ୍ଷୁଦ୍ରଗଳ୍ପରେ ମଧ୍ୟ ତାଙ୍କର ନିଜସ୍ୱ ଭଙ୍ଗୀ ପ୍ରକଟିତ ହୋଇଛି । 'ଡାହାଣୀ ଅଲୂଅ' କ୍ଷୁଦ୍ରଗଳ୍ପ ଏହାର ପ୍ରମାଣ । ବିଷୟ ଉପସ୍ଥାପନା ଓ ପରିସମାପ୍ତିରେ ନାଟକୀୟତା ସହିତ ଭାଷା ବିନ୍ୟାସ ଚାତୁରୀ ଓ ପ୍ରକାଶଭଙ୍ଗୀର ନିଜସ୍ୱତା ତାଙ୍କ କ୍ଷୁଦ୍ରଗଳ୍ପକୁ ଆଦରଣୀୟ କରିପାରିଛି ।

## ଭଗବତୀ ଚରଣ ପାଣିଗ୍ରାହୀ

ସାହିତ୍ୟ ଯୁଗେ ଯୁଗେ ନୂତନ ଧାମାଜକ ଚେତନାର ସଙ୍କେତ ଦେଇଥାଏ । ଏହି ସଙ୍କେତ ଭଗବତୀ ଚରଣ ପାଣିଗ୍ରାହିଙ୍କ କ୍ଷୁଦ୍ରଗଳ୍ପରେ ପ୍ରତିଫଳିତ ହୋଇଛି । ତାଙ୍କର 'ଶିକାର ଓ ଅନ୍ୟାନ୍ୟ କ୍ଷୁଦ୍ରଗଳ୍ପ' ଏକ ନୂତନ ଚେତନାର ବାର୍ତ୍ତାବହ ରୂପେ ଐତିହାସିକ ପ୍ରସିଦ୍ଧି ଲାଭ କରିଛି ।

## କାଳନ୍ଦୀ ଚରଣ ପାଣିଗ୍ରାହୀ

ଆଧୁନିକ ଓଡ଼ିଆ ସାହିତ୍ୟର ଏହି ସବ୍ୟସାଚୀଙ୍କ ଅବିର୍ଭାବ କାଳ ୧୯୦୧ ମସିହା । ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ସେ ଗର୍ବ ଓ ଗୌରବ । ଦୀର୍ଘ ନିରବଚ୍ଛିନ୍ନ ସାଧନାରେ ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି । ଜୀବନର ଅପରାହ୍ଣରେ ମଧ୍ୟ ଏବେ ବି ତାଙ୍କର ଲେଖନୀରୁ ଅମୃତ ଝରୁଅଛି । 'ମାଟିର ମଣିଷ' ଉପନ୍ୟାସର ରଚୟିତା ରୂପେ ତାଙ୍କ ନାମ ସମଗ୍ର ଭାରତବର୍ଷରେ ପ୍ରଖ୍ୟାତ । ତାଙ୍କର ବହୁ କବିତା ସଙ୍କଳନ (ମନେ ନାହିଁ, କ୍ଷଣିକ ସତ୍ୟ, ମହାପାପ, କୁରିଟିଏ ଲେଖା, ମୋ କବିତା); ଉପନ୍ୟାସ, (ମାଟିର ମଣିଷ), ଲୁହାର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମର ଚିତା, ଆଜିର ମଣିଷ), କ୍ଷୁଦ୍ରଗଳ୍ପ ସଙ୍କଳନ, (ସାଗରିକା, ଗ୍ରନ୍ଥିଫଳ, ଶେଷ ରଶ୍ମି, ମୋ କଥାଟି ସରିନାହିଁ), ପ୍ରବନ୍ଧ ସଙ୍କଳନ, (ସାହିତ୍ୟ ସମାଚାର, ସାହିତ୍ୟିକ, ନେତୃତ୍ୱ ଓ ନେତୃତ୍ୱ) ପ୍ରକାଶିତ ହୋଇଛି ।

## ରାଜକିଶୋର ରାୟ

୧୯୧୪ରେ ଏହି ପ୍ରତିଭାଶାଳୀ ଗାଳ୍ପିକଙ୍କ ଜନ୍ମ । ତାଙ୍କର କ୍ଷୁଦ୍ରଗଳ୍ପର ସ୍ଥାପତ୍ୟ ଅନବଦ୍ୟ । ପ୍ରତ୍ୟେକଟି ଗଳ୍ପରେ ତାଙ୍କ ନିଜସ୍ୱଭଙ୍ଗୀ ଭାସ୍ୱର । କାବ୍ୟଧର୍ମୀ ଭାଷା ତାଙ୍କ ବହୁ ଗଳ୍ପକୁ ସୁଖପାଠ୍ୟ କରିଛି । ସେପରି ପରିବେଷଣରେ ଚମତ୍କାରିତା ଓ ଭାବ ସଂପଦ ଦୃଷ୍ଟିରୁ ତାଙ୍କ କ୍ଷୁଦ୍ରଗଳ୍ପଗୁଡ଼ିକ ସ୍ୱତନ୍ତ୍ର ମର୍ଯ୍ୟାଦା ଲାଭ କରିପାରିଛି । ତାଙ୍କର 'ନୀଳ ଲହରୀ', 'ବନ ଜ୍ୟୋସ୍ନା', 'ରକ୍ତ ଶତଦଳ', 'ଶୋଣିତ', 'ପଙ୍କ ଚନ୍ଦନ', 'ମନର ମୃଣାଳ', 'ମଧ୍ୟାହ୍ନର ମରୁପଥେ' ପ୍ରଭୃତି ବହୁ କ୍ଷୁଦ୍ରଗଳ୍ପ ସଙ୍କଳନ ପ୍ରକାଶିତ ହୋଇଛି । ଏକାଙ୍କିକା ଓ ପ୍ରବନ୍ଧ ରଚନାରେ ମଧ୍ୟ ସେ କୃତିତ୍ୱର ପରିଚୟ ଦେଇଛନ୍ତି ।

## ନିତ୍ୟାନନ୍ଦ ମହାପାତ୍ର

ଉପଯୁକ୍ତ ପିତା (କାନ୍ତକବି ଲକ୍ଷ୍ମୀକାନ୍ତ)ଙ୍କ ଉପଯୁକ୍ତ ସନ୍ତାନ ନିତ୍ୟାନନ୍ଦ ମହାପାତ୍ରଙ୍କ ଜନ୍ମ ୧୯୧୨ ମସିହାରେ ବାଲେଶ୍ୱର ଜିଲ୍ଲାର ଭଣ୍ଡାରୀପୋଖରୀରେ । ସାମ୍ବାଦିକ, ସମାଜସେବୀ ଓ ସାହିତ୍ୟିକରୂପେ ଉତ୍କଳରେ ସେ ସୁପରିଚିତ । ସାହିତ୍ୟର ବିଭିନ୍ନ ବିଭାଗରେ ସେ ସଫଳତାର

ସମ୍ପୃକ୍ତ ଲେଖନୀ ସୃଜନା କରି ଓଡ଼ିଆ ସାହିତ୍ୟକୁ ବହୁ ମଣିମାଣିକ୍ୟରେ ସମୃଦ୍ଧ କରିଛନ୍ତି । ତାଙ୍କ 'ହିଡ଼ମାଟି', 'ଜୀବନର ଲକ୍ଷ୍ୟ' ଓ 'ଶାଶ୍ୱତ ମଣିଷ' ବହୁ ପ୍ରଶଂସିତ ଉପନ୍ୟାସ । ଏତଦ୍‌ବ୍ୟତୀତ 'ପୀରତ ପଥ ଖଇଡ଼ା', 'ଭଙ୍ଗାହାଡ଼', 'ଝୁଲ' ଉପନ୍ୟାସ ମଧ୍ୟ ତାଙ୍କର କାଳଜୟୀ ସୃଷ୍ଟି । ତାଙ୍କର କବିତା ଗଳ୍ପ ଓ ରମ୍ୟରଚନା ଅତି ଉଚ୍ଚକୋଟୀର । ତାଙ୍କ ଗଳ୍ପ ସଂକଳନ ଗୁଡ଼ିକ ହେଉଛି—'ଧଳାଗାର କଳାଗାର', 'କ୍ଷଣିକା', 'ଏଗାରଟା' ।

## ରାଜକିଶୋର ପଟ୍ଟନାୟକ

ଆଧୁନିକ ଓଡ଼ିଆ ସାହିତ୍ୟର ଗର୍ବ ଓ ଗୌରବ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କର ଜନ୍ମ ୧୯୧୬ ମସିହାରେ । ଓଡ଼ିଆ ସାହିତ୍ୟରେ ଯେଉଁ ମୁଷ୍ଟିମେୟ ସ୍ରଷ୍ଟା ନିରବଚ୍ଛିନ୍ନ ସାଧନାରେ ସାହିତ୍ୟକୁ ବିଭବଶାଳୀ କରିଛନ୍ତି ସେମାନଙ୍କ ମଧ୍ୟରେ ଶ୍ରୀ ପଟ୍ଟନାୟକଙ୍କ ନାମ ଉଲ୍ଲେଖଯୋଗ୍ୟ । ଶୈଳୀ, ସ୍ଥାପତ୍ୟ, ବୈଷୟିକ ବିଭବ ଦୃଷ୍ଟିରୁ ତାଙ୍କର କ୍ଷୁଦ୍ରଗଳ୍ପ ଗୁଡ଼ିକ ଏକକ ଓ ଅନନ୍ୟ ସାଧାରଣ । ଉପନ୍ୟାସ ପରି ତାଙ୍କର କ୍ଷୁଦ୍ରଗଳ୍ପ ସଂକଳନ ଗୁଡ଼ିକ ମଧ୍ୟ ସ୍ୱକୀୟତାର ଦୀପ୍ତିରେ ଭାସ୍ୱର । 'ପଥୁକ୍ତି', 'ରୁଠପଥରେ', 'ହୃଦୟର ବନ୍ଧନ', 'କଳ୍ପନାର ଫଳ', 'ଶାଳଗ୍ରାମ', 'ନିଶାଣ ଖଣ୍ଡ' ପ୍ରଭୃତି ତାର ପ୍ରମାଣ ।

## ସୁରେନ୍ଦ୍ର ମହାନ୍ତି

୧୯୨୦ରେ ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତିଙ୍କର ଜନ୍ମ । ଜଣେ ଔପନ୍ୟାସିକ, ଗାଳ୍ପିକ ଓ ସାହିତ୍ୟ ସମାଲୋଚକ ରୂପେ ସେ ଓଡ଼ିଆ ସାହିତ୍ୟରେ ବହୁ ପ୍ରଶଂସିତ । ତାଙ୍କ ସାହିତ୍ୟ; ସାଧନାର, ତପସ୍ୟାର । ତାଙ୍କ 'ନୀଳ ଶୈଳ' କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ତାଙ୍କ ପ୍ରକାଶିତ କ୍ଷୁଦ୍ରଗଳ୍ପ ସଂକଳନଗୁଡ଼ିକ ହେଉଛି—'କୃଷ୍ଣଚୂଡ଼ା', 'ରୁଟି ଓ ଚନ୍ଦ୍ର', 'ମହାନଗରୀରେ ରାତ୍ରି', 'ଶେଷ କବିତା', 'ଦୂର ସୀମାନ୍ତ', 'ମହାନିର୍ବାଣ', 'ମରାଳର ମୃତ୍ୟୁ' ଓ ଅନ୍ୟାନ୍ୟ ଗଳ୍ପ 'ସବୁଜ ପତ୍ର' ଓ 'ଧୂସରଗୋଲପ' । ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକ ଏଭଳି ସୁନ୍ଦର ଭାବରେ, ସୁପରିକଳ୍ପିତ ଯୋଜନାରେ ଲିଖିତ ହୋଇଛି ଯେ ଥରେ ପଢ଼ିବାକୁ ଆରମ୍ଭ କଲେ ଶେଷ ନ କରି ରହି ହୁଏ ନାହିଁ । ଯେତେ ଥର ପଢ଼ିଲେ ମଧ୍ୟ ପୁଣି ଥରେ ପଢ଼ିବାକୁ ଇଚ୍ଛାହୁଏ ।

## ସଚ୍ଚିଦାନନ୍ଦ ରାଉତରାୟ

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟର ଗୌରବ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର ଜନ୍ମ ୧୯୧୬ ଖ୍ରୀଷ୍ଟାବ୍ଦରେ । ଏହି ପ୍ରତିଭାଶାଳୀ ସ୍ରଷ୍ଟା ଗଳ୍ପ ଓ ଉପନ୍ୟାସ ରଚନାରେ ମଧ୍ୟ ଅସାଧାରଣ କୃତିତ୍ୱ ପ୍ରଦର୍ଶନ କରିପାରିଛନ୍ତି । 'ଚିତ୍ରଗ୍ରୀବ', 'ମାଟିର ତାଜ', 'ମଶାଣିର ଫୁଲ' ଓ 'ଛୁଇ'ରେ ଏହାର ପ୍ରମାଣ ଭାସ୍ୱର । ସାମ୍ପ୍ରତିକ ସାହିତ୍ୟରେ ତାଙ୍କର ସାହିତ୍ୟ ସମାଲୋଚନା

ମଧ୍ୟ ବିଶେଷ ଆଦୃତ ଲାଭ କରିଛି । ଦୀର୍ଘ ନିରଳସ ନିରବଚ୍ଛିନ୍ନ ସାଧନାରେ ସେ ଆଜି ନିଜ ପାଇଁ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ଉଲ୍ଲେଖଯୋଗ୍ୟ ସ୍ଥାନ ସୃଷ୍ଟି କରି ପାରିଛନ୍ତି ।

**ମନୋଜ ଦାସ**

'ଆରଣ୍ୟକ', 'ଇଣ୍ଡୋନେସିଆର ଅନୁଭୂତି', 'ଦୂର ଦୁରନ୍ତ', 'ନନ୍ଦାବନ୍ତାର ମାଟି' 'ସମୁଦ୍ରର କ୍ଷୁଧା', 'ଶତାବ୍ଦୀର ଆର୍ତ୍ତନାଦ', 'ମନୋଜ ଦାସଙ୍କ କଥା ଓ କାହାଣୀ' ସାମ୍ପ୍ରତିକ ଯୁଗର ବରେଣ୍ୟ ପ୍ରତିଭା ମନୋଜ ଦାସଙ୍କୁ ସାହିତ୍ୟପ୍ରେମୀଙ୍କ ନିକଟରେ ସୁପରିଚିତ ଓ ପ୍ରଶଂସିତ କରିଛି ।

ଚରିତ୍ର ଚିତ୍ରଣରେ ଅସାଧାରଣ କୃତିତ୍ୱ, ପ୍ରକାଶଭଙ୍ଗୀରେ ନିତ୍ୟ ନୂତନତା, ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ଅସାଧାରଣ କୃତିତ୍ୱ ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକୁ ପ୍ରଶଂସିତ କରିଛି ।

**ଅଚ୍ୟୁତାନନ୍ଦ ପତି**

ଆଧୁନିକ କ୍ଷୁଦ୍ରଗଳ୍ପ ସାହିତ୍ୟରେ ଶ୍ରୀ ଅଚ୍ୟୁତାନନ୍ଦ ପତି ଅନ୍ୟତମ ବହୁପ୍ରଶଂସିତ ପ୍ରତିଭା । ତାଙ୍କ କ୍ଷୁଦ୍ରଗଳ୍ପ ଗୁଡ଼ିକରେ ନିଜସ୍ୱ ଭଙ୍ଗୀ ପ୍ରତିଫଳିତ ହୋଇଛି । 'ଅଶୁଭ ପୁତ୍ରର କାହାଣୀ' ତାଙ୍କର ଏକ ବିଶିଷ୍ଟ ଅବଦାନ । କ୍ଷୁଦ୍ରଗଳ୍ପରେ ସେ ନୂତନତାର ବର୍ତ୍ତୀ ଫୁଟାଇ ପାରିଛନ୍ତି ।

---